1984 ( ଶକାବ୍ଦ 1906 )



Original Title : Choonven Punjabe Ekanki (Punjabi)
Oriya Translation : Punjabi Ekankika

Rs. 7.75

ଡାଇରେକ୍ଟର, ନ୍ୟାସ୍‌ନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, A-5, ଗ୍ରୀନ୍ ପାର୍କ, ନୂଆଦିଲ୍ଲୀ-110016
କର୍ତ୍ତୃକ ପ୍ରକାଶିତ ଏବଂ ଗ୍ରନ୍ଥପ୍ରକାଶିକା, ସୁତାହାଟ, କଟକ-1 ଦ୍ୱାରା ମୁଦ୍ରିତ ।

# ଭୂମିକା

ପଞ୍ଜାବୀ ନାଟକ ତଥା ରଙ୍ଗମଞ୍ଚ ପଞ୍ଜାବର ସାଂସ୍କୃତିକ ପୁନର୍ଜାଗୃତିର ଦ୍ୱିତୀୟ ଚରଣର ଦାନ । ପଞ୍ଜାବ ଉପରେ ବ୍ରିଟିଶ ସାମ୍ରାଜ୍ୟର ବିଜୟ ଏବଂ ତାହାର ପରିଣାମ ସ୍ୱରୂପ ପଶ୍ଚିମୀ ସଭ୍ୟତା ତଥା ସଂସ୍କୃତିର ସଂପର୍କଦ୍ୱାରା ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ପଞ୍ଜାବରେ ପୁନର୍ଜାଗୃତିର ଅଙ୍କୁରୋଦ୍‌ଗମ ଘଟିଲା । ପଞ୍ଜାବର ସଂସ୍କୃତ ପୁନର୍ଜାଗରଣର ପ୍ରଥମ ପର୍ଯ୍ୟାୟ ମଧ୍ୟକାଳରେ ରହସ୍ୟବାଦୀ ଇସ୍‌ଲାମର ପ୍ରବେଶ ଓ ଶିଖଧର୍ମର ଉଦୟ ସଙ୍ଗେ ସଙ୍ଗେ ହିଁ ଆରମ୍ଭ ହେଲା । ଏହି ପର୍ଯ୍ୟାୟରେ ପଞ୍ଜାବରେ ଧର୍ମ, ଦର୍ଶନ, କାବ୍ୟ, ସଙ୍ଗୀତ, ଚିତ୍ରକଳା ତଥା ସ୍ଥାପତ୍ୟ-କଳା କ୍ଷେତ୍ରରେ ତ ସ୍ମରଣୀୟ ତଥା ଶକ୍ତିଶାଳୀ ଆନ୍ଦୋଳନ ପ୍ରକଟିତ ହେଲା ଏବଂ ତାହାର ବିକାଶ ମଧ୍ୟ ହେଲା । କିନ୍ତୁ ନୃତ୍ୟ ଏବଂ ନାଟକ ଭଳି ଦୃଶ୍ୟ-ଶିଳ୍ପ ଉପେକ୍ଷିତ ହୋଇ ରହିଗଲା । ଦର୍ଶନ, କାବ୍ୟ, ସଙ୍ଗୀତ, ଚିତ୍ରକଳା ଓ ସ୍ଥାପତ୍ୟ-କଳାରେ ମଧ୍ୟ ଧର୍ମହିଁ ପ୍ରେରଣାର ସ୍ରୋତ ହୋଇ ରହିଲା—ରାଜ୍ୟ ନୁହେଁ । ସେଥିପାଇଁ ମଧ୍ୟକାଳୀନ ପଞ୍ଜାବରେ ଏ ସବୁର ବିକାଶ ଉପରେ ଧର୍ମର ପ୍ରଭାବ ବ୍ୟାପକ ଥିଲା । ପଞ୍ଜାବ ଇତିହାସର ମଧ୍ୟକାଳରେ ଇସ୍‌ଲାମଙ୍କର ନାଟ୍ୟକଳାରେ ବିଶେଷ ରୁଚି ନ ଥିଲା କିମ୍ବା ଶିଖ୍‌ଧର୍ମର ଏ ଦିଗରେ କୌଣସି ଆଗ୍ରହ ନ ଥିଲା । ବାସ୍ତବ ସ୍ଥିତି ଏହାହିଁ ଥିଲା ଯେ ଶିଖ୍ ଗୁରୁମାନେ ନାଟତାମସା (ନାଟକ-ଚେଟକ)କୁ କୁ-କାର୍ଯ୍ୟ ମନେକରୁଥିଲେ ।

ସଂସ୍କୃତ ନାଟ୍ୟ-ପରଂପରାର ପତନ ପରେ ଦୀର୍ଘକାଳ ପର୍ଯ୍ୟନ୍ତ ପଞ୍ଜାବରେ ଲୋକନାଟ୍ୟ-ରୂପ—ଯଥା ସ୍ୱାଙ୍ଗ, ନକଲ, ରାସଲୀଳା ଆଦି ପ୍ରମୁଖ ହୋଇପଡ଼ିଥିଲେ । ଗୁରୁଶିଷ୍ୟ ସ୍ୱାଙ୍ଗ ଅଥବା କୃଷ୍ଣ ଏବଂ ରାମ ଲୀଳା ପ୍ରଚଳନର ସାକ୍ଷୀ ତ ଗୁରୁ ନାନକ ଦେବଜୀ ମଧ୍ୟ ଦିଅନ୍ତି—

"ବାଇନ ଚେଲେ ନଚନ୍ନି ଗୁରୁ
ପୈର ହଲାଇନ ଫେରନ୍ନି ସିର
ଉଡ଼ି ଉଡ଼ି ରାବା ଝାଟେ ପାଏ ।
ବେଖେ ଲୋକ ହସେ ଘର ଜାଏ ।
ରୋଟିୟାଂ କାରଣି ପୂରହି ତାଲ ।
ଆପ ପଛାଡ଼ହି ଧରତୀ ନାଲି ।
ଗାବନ ଗୋପିୟାଂ ଗାବନି କାହ୍ନ ।
ଗାବନ ସୀତା ରାଜେ ରାମ ।

ନଚନ କୁଦନ ମନ କା ଗୃଓ
ନାନକ ଜନ ମନ ଭଉ ଚନହାଂ ମନ ଗୃଓ ।''

ରାଜ୍ୟାଶ୍ରୟରୁ ବଂଚିତ ଧାର୍ମିକମଣ୍ଡଳୀମାନଙ୍କରୁ ବାହାରେ ଲୋକନାଟକର ରୂପ ପଞ୍ଜାବରେ ଯେମିତି-ସେମିତି ବଞ୍ଚିରହିଲା ସିନା; କିନ୍ତୁ ଏକ କଳା-ପରଂପରା ରୂପରେ ଏଗୁଡ଼ିକରେ କୌଣସି ବିକାଶ ହେଲନାହିଁ । ନତୁବା ସମକାଳୀନ ସାହିତ୍ୟିକ ପରଂପରା ସହିତ ଏଗୁଡ଼ିକର କୌଣସି ସମ୍ବନ୍ଧ ନ ଥିଲା, କିମ୍ବା ଏ ଭଳି କୌଣସି ସମ୍ବନ୍ଧ ସ୍ଥାପନ କରିବାର ପ୍ରଯତ୍ନ ମଧ୍ୟ କେହି କରିନଥିଲେ । ଏହି କଳାପଦ୍ଧତିଗୁଡ଼ିକର ସାମାଜିକ ମାନ୍ୟତା ପ୍ରାୟତଃ ସମାପ୍ତ ହୋଇ ନଥିଲା; ମାତ୍ର ଏହି କଳାକାରମାନଙ୍କର ସ୍ଥାନ ଭଣ୍ଡ, ଭଟ, ନାଟୂଆ କେଲା ଏବଂ ରାସକାରୀଙ୍କ ନିମ୍ନସ୍ତରରେ ପହଞ୍ଚିଗଲା । ପଞ୍ଜାବରେ ବ୍ରିଟିଶ ଶାସନର ପ୍ରଭୁତ୍ୱ ସ୍ଥାପିତ ହେବା ଏବଂ ପାଶ୍ଚାତ୍ୟର ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ପ୍ରଭାବ ଯୋଗୁଁ ପଞ୍ଜାବର ସାଂସ୍କୃତିକ ପୁନର୍ଜାଗୃତିର ଦ୍ୱିତୀୟ ପାଦ ପ୍ରାରମ୍ଭ ହେବା ପର୍ଯ୍ୟନ୍ତ ଏହି ସ୍ଥିତି ବଜାୟ ରହିଥିଲା ।

ଊନବିଂଶ ଶତାବ୍ଦୀର ମଧ୍ୟକାଳରେ ସୃଷ୍ଟିହୋଇଥିବା ନବଜାଗୃତିର ଲହରି ଦ୍ୱିମୁଖୀ ଥିଲା । ଏହାର ଗୋଟିଏ ଦିଗ ଆଧୁନିକୀକରଣ ଥିଲା ତ ଅନ୍ୟ ଦିଗ ଥିଲା ପୁନର୍ସ୍ଥାପନ **(revival)** । ପଞ୍ଜାବକୁ ବ୍ରିଟିଶ-ଭାରତରେ ସାମିଲ କରାଗଲାବେଳକୁ ଇଂରେଜମାନେ ଭାରତକୁ ଆସିବା ପ୍ରାୟ ଦୁଇ ଶତାବ୍ଦୀ ଏବଂ ଭାରତରେ ନିଜ ଶାସନ ସ୍ଥାପନ କରିବା ପ୍ରାୟ ଏକଶତ ବର୍ଷ ବିତି-ସାରିଥିଲା । ସେଥିପାଇଁ ଗୋଟାଏ ଦିଗରେ ପଶ୍ଚିମା ସଂସ୍କୃତିକୁ ଭାରତରେ ଗ୍ରହଣ କରିବାର ପ୍ରକ୍ରିୟା ଆରମ୍ଭ ହୋଇସାରିଥିଲା ଏବଂ ଅନ୍ୟ ଦିଗରେ ଏହି ସଂସ୍କୃତି ବିରୁଦ୍ଧରେ ନିଜ ପ୍ରାଚୀନ ସଂସ୍କୃତିର ମହତ୍ତ୍ୱକୁ ଚିହ୍ନିବା ଏବଂ ସଂଜୀବିତ କରିବାର ଆବେଗ ଗତିଶୀଳ ହୋଇ ସାରିଥିଲା । ପ୍ରଥମ ରୁଚି ଥିଲା ଆଧୁନିକୀକରଣର ଏବଂ ଦ୍ୱିତୀୟ ଥିଲା ପୁନର୍ସ୍ଥାପନାବାଦର ।

ପୁନର୍ସ୍ଥାପନାବାଦୀ ପ୍ରବୃତ୍ତି ସର୍ବପ୍ରଥମେ ପଞ୍ଜାବରେ ସଂସ୍କୃତ ନାଟକମାନଙ୍କର ଅନୁବାଦ କଲା ଏବଂ ପୁଣି ସଂସ୍କୃତ ନାଟ୍ୟ-ପରମ୍ପରା ଅନୁସାରେ ମୌଳିକ ନାଟକ ରଚନାର ଶ୍ରୀଗଣେଶ ହେଲା । ଅନୁବାଦକମାନଙ୍କ ମଧ୍ୟରୁ ଡଃ ଚରଣ ସିଂହ (କାଳିଦାସରଚିତ 'ଶାକୁନ୍ତଳ') ଓ ମାନସିଂହ (ବିକ୍ରମୋର୍ବଶୀ)ଙ୍କର ନାମ ଉଲ୍ଲେଖନୀୟ । ଭାଇ ବୀରସିଂହ **(1872-1957),** ବାବା ବୁଦ୍ଧ ସିଂହ **(1881-1931),** ବ୍ରଜଲାଲ ଶାସ୍ତ୍ରୀ (ଜନ୍ମ **1891**) ଓ ଲାଲା କୃପା ସାଗର **(1875-1939)** ଆଦି ସଂସ୍କୃତ ନାଟକର ଅନୁସରଣରେ ମୌଳିକ ନାଟକମାନ ରଚନା କଲେ; ପରନ୍ତୁ ଏମାନଙ୍କ ମଧ୍ୟରୁ କୌଣସି ନାଟକକାର ନିଜ କୃତିମାନଙ୍କୁ ରଙ୍ଗମଞ୍ଚରେ ଉପସ୍ଥାପନା କରିବାର ଚେଷ୍ଟା କରି ନ ଥିଲେ ।

ସଂସ୍କୃତ ସାହିତ୍ୟର ପ୍ରାଚୀନ କାଳରେ ଏକାଙ୍କି ନାଟକମାନ ରଚିତ ହେଉଥିଲା । ଭାସଙ୍କ ଦ୍ୱାରା ରଚିତ ଏକାଂକିକା 'ଦୂତବାକ୍ୟ' ତଥା 'ଉରୁଭଂଗ' ଓ ରାଜା ମହେନ୍ଦ୍ର ବିକ୍ରମ ବର୍ମନ୍‌ଙ୍କର ଏକାଂକିକା 'ଭଗବଜ୍ଜୁ ଅଜ୍ଜୁକେ' ଓ 'ମତ୍ତ ବିଳାସ' ଆଦିରୁ ଏହାର ସଂକେତ

ମିଳିଥିଲା । କିନ୍ତୁ ସଂସ୍କୃତ ନାଟକର ପଞ୍ଜାବୀ ଅନୁବାଦକଗଣ ଏବଂ ସେହି ପରମ୍ପରାର ଅନୁସରଣ କରୁଥିବା ପଞ୍ଜାବୀ ନାଟ୍ୟକାରମାନେ ନାଟ୍ୟରଚନାର ଏହି ଦିଗରେ କୌଣସି ଆଗ୍ରହ ପ୍ରକାଶ କରିନାହାନ୍ତି ।

ମାତ୍ର ପ୍ରକୃତ କଥା ହେଉଛି, ଲୋକନାଟକର ରୂଢ଼ିକୁ ପରିତ୍ୟାଗ କରି ସାହିତ୍ୟିକ ନାଟ୍ୟ କୃତିମାନଙ୍କୁ ରଙ୍ଗମଞ୍ଚରେ ଉପସ୍ଥାପନା କରିବା ଏକାଂକିକା ନାଟକଦ୍ୱାରାହିଁ ପ୍ରାରମ୍ଭ ହେଲା ଏବଂ ପଞ୍ଜାବୀରେ ପଶ୍ଚିମୀ ନାଟ୍ୟରୂପର ପ୍ରବେଶ ମଧ୍ୟ ଏକାଂକିକା ମାଧ୍ୟମରେହିଁ ହୋଇଥିଲା । ପଞ୍ଜାବୀର ପ୍ରଥମ ନାଟକ 'ଦୁଲହନ' (ସୁହାଗ), ଯାହା 1933ରେ ପଶ୍ଚିମୀ ପଦ୍ଧତି ଅନୁସାରେ ଲିଖିତ ଓ ଅଭିନୀତ ହେଲା, ତାହା ଏକ ଏକାଂକିକା । ଏହାର ରଚୟିତା ଥିଲେ ଲାହୋରସ୍ଥିତ ଦୟାଲ ସିଂହ କଲେଜର ଇଂରାଜୀ ସାହିତ୍ୟର ବିଦ୍ୟାର୍ଥୀ ଈଶ୍ୱର ଚନ୍ଦ୍ରର ନନ୍ଦା । ଏହାକୁ ନାଟକ ଲେଖିବା, ମଞ୍ଚରେ ଉପସ୍ଥାପନା କରିବା ତଥା ତହିଁରେ ଅଭିନୟ କରିବାର ପ୍ରେରଣା କଲେଜର ଇଂରେଜ ପ୍ରିନ୍‌ସିପାଲ ସି. ଆଇ. ରିଚ୍ଚାର୍ଡ୍‌ସଙ୍କ ପତ୍ନୀ ଶ୍ରୀମତୀ ନୋରାହ୍ ରିଚ୍ଚାର୍ଡ୍‌ସଙ୍କଠାରୁ ମିଳିଥିଲା । ବଳବନ୍ତ ଗାର୍ଗୀ ସ୍ୱର୍ଗୀୟା ଶ୍ରୀମତୀ ନୋରାହ୍ ରିଚ୍ଚାର୍ଡ୍‌ସଙ୍କୁ 'ପଞ୍ଜାବୀ ନାଟକର ବୁଢ଼ୀମା' କହିଛନ୍ତି ଏବଂ ଏ କଥା ମଧ୍ୟ ଠିକ୍ । ଏହି ଶତାବ୍ଦୀର ଦ୍ୱିତୀୟ ଦଶକର ପ୍ରାରମ୍ଭିକ ବର୍ଷମାନଙ୍କରେ ଶ୍ରୀମତୀ ନୋରାହ୍ ରିଚ୍ଚାର୍ଡ୍‌ସଙ୍କ ପ୍ରେରଣାପ୍ରଦ ନିର୍ଦ୍ଦେଶନାରେ ସ୍ଥାନୀୟ ପୃଷ୍ଠଭୂମିରେ ଆଧୁନିକ ଶିଳ୍ପ ତଥା ଶୈଳୀର ଏକାଂକିକା ଲିଖିତ ଓ ପ୍ରସ୍ତୁତ କରିବାର ଗମ୍ଭୀର ପ୍ରଯତ୍ନ କରାଯାଇଥିଲା । ମଜାର କଥା ଏହି ଯେ, ଏହି ପ୍ରାରମ୍ଭିକ ତଥା ସଫଳ ପ୍ରଯତ୍ନକୁ ପଞ୍ଜାବୀ ଦର୍ଶକମାନଙ୍କ ତରଫରୁ ଯେଉଁ ହାର୍ଦ୍ଦିକ ସ୍ୱୀକୃତି ପ୍ରାପ୍ତ ହେଲା, ତଦ୍ୱାରା ପଶ୍ଚିମୀ ଶୈଳୀର ବହୁମୁଖୀ ନାଟକମାନଙ୍କୁ ପ୍ରୋତ୍ସାହନ ମିଳିଲା । ବିଂଶ ଶତାବ୍ଦୀର ତୃତୀୟ ତଥା ଚତୁର୍ଥ ଦଶକରେ ପଞ୍ଜାବୀରେ ପୂର୍ଣ୍ଣାଙ୍ଗ ନାଟକ ଲେଖାଗଲା ଏବଂ ମଞ୍ଚସ୍ଥ ହେଲା । ଏହିସବୁ ନାଟ୍ୟ ଗତିବିଧିମାନଙ୍କର କେନ୍ଦ୍ର ଥିଲା ଅବିଭାଜିତ ପଞ୍ଜାବର ରାଜଧାନୀ ଲାହୋର—ଯାହା ସେ ସମୟର ଉତ୍ତର-ଭାରତର ଗୋଟିଏ ମହତ୍ତ୍ୱପୂର୍ଣ୍ଣ ଶାସକୀୟ ସାଂସ୍କୃତିକ ଓ ଶିକ୍ଷା କେନ୍ଦ୍ର ରୂପେ ପରିଣତ ହୋଇସାରିଥିଲା ।

ପଞ୍ଜାବୀ ଏକାଂକିକାର ବିକାଶକ୍ଷେତ୍ରରେ ଦ୍ୱିତୀୟ ବୃହତ୍ ମୋଡ଼ ଖ୍ରୀ: 1940ର ପାଖାପାଖି ଆସିଥିଲା । ଏହି ଆନ୍ଦୋଳନର କେନ୍ଦ୍ର ଲାହୋର ଥିଲା, ଯାହା ପଂଜାବର ସୁସ୍ଥ ଏବଂ ପ୍ରଭାବ-ଶାଳୀ ରାଜନୀତିକ, ଆଧ୍ୟାତ୍ମିକ ଯୁବ-ଆନ୍ଦୋଳନ ତଥା ପଞ୍ଜାବର ସାଂସ୍କୃତିକ ଓ ସାହିତ୍ୟିକ ପୁନର୍ଜାଗୃତିର କେବଳ ଗଡ଼ ହୋଇ ନ ଥିଲା; ଅଧିକନ୍ତୁ ଏହାର ପରିପାର୍ଶ୍ୱସ୍ଥ ଅମୃତସର, ପ୍ରୀତନଗର ମଧ୍ୟ ଆଧୁନିକ ପଞ୍ଜାବୀ ସାହିତ୍ୟର ପ୍ରମୁଖ ଧାରାର ଅନ୍ୟତମ ପ୍ରାଣକେନ୍ଦ୍ର ଭାବେ ଅଗ୍ରଣୀ ହୋଇଥିଲା । ଏହା ସହିତ ଲାହୋରରେ ରେଡ଼ିଓ ଷ୍ଟେସନର ସ୍ଥାପନା ମଧ୍ୟ ପଞ୍ଜାବୀ ସାହିତ୍ୟ—ବିଶେଷକରି ପଞ୍ଜାବୀ କାହାଣୀ ସମୀକ୍ଷା, କାବ୍ୟ ଗୀତ ଏବଂ ନାଟକର ବିକାଶ ଗତିକୁ ତୀବ୍ରତର କରିଥିଲା । ଯଦିଓ ଲାହୋର ରେଡିଓର ଭାଷା ଉର୍ଦ୍ଦୁ, ତଥାପି ଏଥିରେ

ପଞ୍ଜାବୀ କାର୍ଯ୍ୟକ୍ରମ ପାଇଁ ପର୍ଯ୍ୟାପ୍ତ ସୁବିଧା ରହିଥିଲା । ସେଇଥିପାଇଁକି ପଞ୍ଜାବୀ ନାଟ୍ୟକାର, କବି, କଥାକାର ଓ ଆଲୋଚକଗଣଙ୍କ ନିମିତ୍ତ ଏକ ନୂତନ ମାଧ୍ୟମ ମିଳିଯାଇଥିଲା । ଏହି ମାଧ୍ୟମର ପ୍ରମୁଖ ବିଶେଷତ୍ୱ ହେଲା ରେଡ଼ିଓ ଦ୍ୱାରା ପ୍ରସାରିତ ସାହିତ୍ୟ ଲିଖିତ ସାହିତ୍ୟ ନହୋଇ ଶ୍ରବ୍ୟ ସାହିତ୍ୟ ହୋଇଥିବା ହେତୁ ପଞ୍ଜାବୀ ଜନସମୂହ ଏକ ବୃହତ୍ତମ ଭାଗକୁ ଅସ୍ୱୀକୃତ ଲିପିର ବନ୍ଧନରୁ ମୁକ୍ତ କରି ତାଙ୍କ ନିକଟରେ ସିଧାସଳଖ ପହଞ୍ଚିପାରୁଥିଲା ।

ଲାହୋର ରେଡ଼ିଓ ଷ୍ଟେସନର ନିରନ୍ତର ଗୃହଦା, ଏହି ନଗରର ପରିଶ୍ରମୀ ତଥା ସାହସୀ ଏମେଚର୍ ନାଟ୍ୟମଣ୍ଡଳୀ, ଅହମଦ ଶାହ ବୁଖାରୀ ଦ୍ୱାରା ଗଭର୍ଣ୍ଣମେଣ୍ଟ କଲେଜ, ଲାହୋରରେ ସ୍ଥାପିତ ଡ୍ରାମାଟିକ୍ କ୍ଲବ୍, ପ୍ରିନ୍ସିପାଲ ଜି. ଡି ସୋଧିଙ୍କ ନିର୍ଦ୍ଦେଶନାରେ ସଂଗଠିତ ଓପନ୍-ଏଆର୍ ଥିଏଟର ଏବଂ ଲିଟିଲ ଥିଏଟର ଗ୍ରୁପ୍ ଆଦି ସୁସ୍ଥ ଏବଂ ମୌଳିକ ନାଟ୍ୟସଂସ୍ଥାମାନ ପ୍ରୀତନଗରରେ ସରଦାର ଗୁରୁବକ୍ସ ସିଂହଙ୍କ ଦ୍ୱାରା ସ୍ଥାପିତ ଆଦର୍ଶବାଦୀ ନାଟ୍ୟଶାଳା ଲହର ଏବଂ ଅମୃତସରରେ ଖାଲ୍ସା କଲେଜର ପାରିପାର୍ଶ୍ୱିକ ଅଞ୍ଚଳରେ ଅବିଭକ୍ତ ପଞ୍ଜାବର ମୌଳିକ ସାହିତ୍ୟିକ ପ୍ରତିଭା ପଞ୍ଚମ ଦଶକରେ ପଞ୍ଜାବୀ ଏକାଂକିକା-କଳାକୁ ପଞ୍ଜାବୀ ସାହିତ୍ୟ ତଥା ମଞ୍ଚର ଏକ ପ୍ରଭାବୋତ୍ପାଦକ ଓ ଗୌରବମୟ ଅଙ୍ଗ ରୂପେ ଗଢ଼ି ତୋଳିଥିଲା । ଏହି ସମୟରେ ପଞ୍ଜାବୀ ରେଡ଼ିଓ ନାଟ୍ୟକଳାର ବିଖ୍ୟାତ ସାଧକ ରଫୀ ପୀରଙ୍କର ଅଭ୍ୟୁଦୟ ଘଟିଥିଲା । ରଫୀ ପୀର ପାଶ୍ଚାତ୍ୟ ଦେଶରେ ରଙ୍ଗମଞ୍ଚ ବିଷୟରେ ଶିକ୍ଷା-ଦୀକ୍ଷା ଲାଭ କରିଥିଲେ । ତାଙ୍କର ନାଟକ 'ଅକ୍ଖିଆଁ' ଓ 'ବୈରୀ' ବିଷୟବସ୍ତୁର ସଜୀବତା, ବଳିଷ୍ଠ ସଂଳାପ, ଗମ୍ଭୀର ତୀକ୍ଷ୍ଣ ନାଟକୀୟ ସଂଘର୍ଷ ଓ ପ୍ରସ୍ତୁତୀକରଣରେ ରେଡ଼ିଓ ମାଧ୍ୟମକୁ ସବଳ ଉପଯୋଗ କରିବା ଦୃଷ୍ଟିରୁ ସେ ସମୟରେ ରେଡ଼ିଓ ନାଟକ କ୍ଷେତ୍ରରେ କେବଳ ପଞ୍ଜାବୀରେ ନୁହେଁ, ଉର୍ଦ୍ଦୁ ତଥା ହିନ୍ଦୀ ନାଟକମାନଙ୍କ ତୁଳନାରେ ମଧ୍ୟ ଉଲ୍ଲେଖନୀୟ ଶ୍ରେଷ୍ଠ କୃତି ରୂପେ ବିବେଚିତ ହୋଇଥିଲା । ସନ 1940 ମସିହାରେ ପ୍ରକାଶିତ ସନ୍ତସିଂହ ସେଖୋଁଙ୍କର 'ଛଳଘର' ବୋଧହୁଏ ପଞ୍ଜାବୀର ପ୍ରଥମ ଏକାଂକିକା-ସଂଗ୍ରହ । ଏହାର ପାଖାପାଖି ସର୍ଦ୍ଦାର ଗୁରୁବକ୍ସ ସିଂହଙ୍କର ଦୀର୍ଘ ଏକାଂକିକା 'ପ୍ରୀତମୁକୁଟ' 'ହୋଣୀ ଦା ଲିଶ୍କାରା' ଓ 'ପ୍ରୀତମଣୀ' ଲେଖା-ହୋଇଥିଲା ଏବଂ ପ୍ରୀତନଗରର ରଙ୍ଗମଞ୍ଚରେ ଉପସ୍ଥାପନ ମଧ୍ୟ କରାହୋଇଥିଲା । ହରଚରଣ ସିଂହଙ୍କ ପ୍ରଥମ ଏକାଂକିକା-ସଂଗ୍ରହ 'ଜୀବନଲୀଳା' ମଧ୍ୟ 1940 ମସିହାରେ ପ୍ରକାଶିତ ହୋଇଥିଲା ଏବଂ 1945ରେ ବଲବନ୍ତ ଗାର୍ଗୀଙ୍କର ପ୍ରଥମ ସଂଗ୍ରହ 'କୁଆଁରି ଟାଡସୀ' ଛପାହୋଇଥିଲା ।

ପଞ୍ଚମ ଦଶକର ପ୍ରଥମ ସାତବର୍ଷ ପଞ୍ଜାବୀ ଏକାଙ୍କି ନାଟକର ବିକାଶ କ୍ଷେତ୍ରରେ ବିଶେଷ ମହତ୍ତ୍ୱପୂର୍ଣ୍ଣ । ଏହି ବର୍ଷମାନଙ୍କରେ ନୂତନ ମୌଳିକ ନାଟ୍ୟପ୍ରତିଭାମାନଙ୍କର ଅଭ୍ୟୁଦୟ ଘଟିଲା । ଏହି କାଳରେ ପଞ୍ଜାବୀ ଏମେଚର୍ ଥିଏଟରର ପ୍ରସାର ହେଲା ଏବଂ ନାଟକର କଳାତ୍ମକ ଅଭିବ୍ୟକ୍ତି ନିମିତ୍ତ ପଞ୍ଜାବୀ ନାଟ୍ୟକଳା ନୂତନ ସଂଭାବନାରେ ପରିପୂର୍ଣ୍ଣ ହୋଇ ରେଡ଼ିଓର

ମାଧ୍ୟମ ଲାଭକଲା । ଏହି ସାତବର୍ଷ ଭିତରେ ଯେଉଁ ନାଟକକାରଗଣ ସାମ୍ନାକୁ ଆସିଲେ, ସେମାନଙ୍କର ଅବଦାନ ହିଁ ପଞ୍ଜାବୀ ନାଟକମାନଙ୍କରେ ସର୍ବୋପରି ସ୍ୱୀକାର କରାଗଲା । ଏମାନଙ୍କ ମଧ୍ୟରେ ମନ୍ନସିଂହ ସେଖୋଁ, ହରଚରଣ ସିଂହ, ବଲବନ୍ତ ଗାର୍ଗୀ, କର୍ତ୍ତାର ସିଂହ ଦୁଗ୍‌ଗଲ ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ । ଆଜିପର୍ଯ୍ୟନ୍ତ ଏମାନେ ବି ନିଜ ଉତ୍ତରକାଳର ନାଟକକାରମାନଙ୍କଠାରୁ ଅଧିକ ନ ହେଲେ ମଧ୍ୟ ତାଙ୍କ ସହିତ ସମତାଳ ଦେଇ ଲେଖନୀ ଚଳାଇଆସିଛନ୍ତି । ଏହି ସବୁ ନାଟକକାରମାନେ ନିଜ ପୂର୍ବବର୍ତ୍ତୀ ନାଟକକାରଙ୍କ ଭଳି ପୂର୍ଣ୍ଣାଙ୍ଗ ନାଟକର ରୂପସାଧନା ତ ଅବଶ୍ୟ କରିଛନ୍ତି; ତଥାପି ଏହି କାଳରେ ଏମାନଙ୍କର ବିଶେଷ ଯୋଗଦାନ 1913-14ରେ ଆରମ୍ଭ ହୋଇଥିବା ଏକାଙ୍କି ନାଟକର ପ୍ରୟୋଗ କ୍ଷେତ୍ରରେ ପ୍ରଗତି ଆଣିଲା ଓ ଏକ ବିଶେଷ ସାହିତ୍ୟଧାରା ସୃଷ୍ଟିକଲା । ତା'ଛଡ଼ା ମଞ୍ଚକଳାର ପ୍ରାରୂପର ସମ୍ଭାବନାଗୁଡ଼ିକୁ ରୁଢ଼ିମନ୍ତ କରିବା ଦିଗରେ ଏମାନଙ୍କ ବିଶେଷତ୍ୱ ଲକ୍ଷଣୀୟ ।

1947 ମସିହାରେ ଦେଶ ସ୍ୱାଧୀନ ହେଲା । କିନ୍ତୁ ଭାରତୀୟ ପଞ୍ଜାବର ଶତାବ୍ଦୀ-ଶତାବ୍ଦୀର ରାଜଧାନୀ ହୋଇ ରହିଆସିଥିବା ଲାହୋରକୁ ତା'ଠୁଁ ଅଲଗା କରିଦିଆଗଲା; ଯାହା ଗତ ଏକ ଶତାବ୍ଦୀରୁ ସମସ୍ତ ସାଂସ୍କୃତିକ ତଥା ରାଜନୀତିକ ଆନ୍ଦୋଳନର ସହଜ ସ୍ୱାଭାବିକ କେନ୍ଦ୍ର ହୋଇ ରହିଥିଲା । ପୂର୍ବ-ପଞ୍ଜାବରେ ଏପରି କୌଣସି ନଗର ନ ଥିଲା, ଯେଉଁଠି ବିଚ୍ଛିନ୍ନ ଲାହୋରରେ ଥିବା ସମସ୍ତ ସଂସ୍ଥାନ ଓ ସଂସ୍ଥାଗୁଡ଼ିକୁ ପୁନର୍ସ୍ଥାପିତ କରାଯାଇପାରିଥାଆନ୍ତା । ବିଭାଜିତ ବିଶ୍ୱ-ବିଦ୍ୟାଳୟ ସୋଲନ୍ ଶିମଲା, ହୋସିୟାରପୁର, ଅମୃତସର ଇତ୍ୟାଦି ଜଣାନାହିଁ କୋଉଠି କୋଉଠି ଯାଇ ରହିଗଲା । ରାଜଧାନୀ ପ୍ରଥମେ ତ ଜଲନ୍ଧର ଓ ଶିମଲାରେ ବିକ୍ଷିପ୍ତ ଭାବେ ରହିଲା ଏବଂ ପୁଣି ଚଣ୍ଡୀଗଡ଼ର ଗୋଟାଏ ଜାଗାରେ ଆସି ଠାକଲା । ରେଡ଼ିଓ ଷ୍ଟେସନ ଓ ଉର୍ଦ୍ଦୁ ତଥା ପଞ୍ଜାବୀ ସମ୍ବାଦପତ୍ରଗୁଡ଼ିକ ଜଲନ୍ଧରକୁ ନିଜର ଆବାସସ୍ଥାନ ରୂପେ ବାଛିନେଲେ । ଅନେକ ଜ୍ଞାତ ଓ ଅଜ୍ଞାତ କାରଣରୁ ଲାହୋର ସାଂସ୍କୃତିକ ଜୀବନର ସମସ୍ତ ବ୍ୟବସ୍ଥା ସ୍ଥାନେ ସ୍ଥାନେ ବିକ୍ଷିପ୍ତ ଓ ଅସ୍ତବ୍ୟସ୍ତ ହୋଇଯାଇଥିଲା । ଏତେବଡ଼ ଉତ୍‌ଥାନ-ପତନ ଫଳରେ ପଞ୍ଜାବର ସାଂସ୍କୃତିକ ବିକାଶ ଉପରେ ଗଭୀର ପ୍ରଭାବ ପଡ଼ିବା ସ୍ୱାଭାବିକ କଥା ।

ଭାରତୀୟ ପଞ୍ଜାବ ଆଜି ପର୍ଯ୍ୟନ୍ତ ଲାହୋରର ସ୍ଥାନ ପୂରଣ କରିପାରିନାହିଁ । ତାହାର ଐତିହାସିକ ପୃଷ୍ଠଭୂମି, ଭରପୂର ସାଂସ୍କୃତିକ ଐଶ୍ୱର୍ଯ୍ୟ ବିବିଧତା, ନାଗରିକ ଆଗ୍ରହ ଓ ବ୍ୟବହାରକୁଶଳତା, ସୂକ୍ଷ୍ମତା ଓ ଜଟିଳତା, ରାଜନୀତିକ ଓ ଅର୍ଦ୍ଧ ରାଜନୀତିକ ଆନ୍ଦୋଳନ, ବ୍ୟାବସାୟିକ ଓ ଔଦ୍ୟୋଗିକ, ସରଗରମତା, ଶିକ୍ଷଣୀୟ ତଥା ଯୁବ-ଗତିବିଧି ଏବଂ ଏହି ପ୍ରକାରର ଅନ୍ୟ ତତ୍ତ୍ୱର ପାରସ୍ପରିକ ଆକର୍ଷଣ-ବିକର୍ଷଣ ଏହି ନଗରକୁ ଏକ ବିଶେଷ ମହତ୍ତ୍ୱ ପ୍ରଦାନ କରୁଥିଲା— ଯାହାଭଳି ସହର ପଞ୍ଜାବରେ ନ ଥିଲା, କି ବର୍ତ୍ତମାନ ନାହିଁ କିମ୍ବା ଭବିଷ୍ୟତରେ ବୋଧହୁଏ ହୋଇପାରିବ ନାହିଁ । ସୂକ୍ଷ୍ମ କଳାଭଳି ନାଟକ ଶେଷ ସମସ୍ତ ସାହିତ୍ୟିକ ବିଭାଗମାନଙ୍କରୁ ଏହି ଦୃଷ୍ଟିରୁ ଭିନ୍ନ; କାରଣ ଏହା ନିତାନ୍ତ ବ୍ୟକ୍ତିଗତ ସାଧନାର

ବିଭାଗ ନୁହେଁ । ଏହାର ସ୍ଥାନ କୌଣସି ନିର୍ଜନ ଜଙ୍ଗଲ କିମ୍ବା ଏକାନ୍ତ ନିର୍ଜନ ସ୍ଥାନରେ ନୁହେଁ । ଏହା ତ ବିପୁଳ ଜନସମାବେଶ, ଝୁଲୁଝୁପା ଭିଡ଼ରେ ଜନ୍ମି ବିକଶିତ ହୁଏ ଓ ଶକ୍ତି ଲାଭ କରେ ।

ନାଟକର ବିଶେଷତ୍ୱ ହେଉଛି ଏହା ଏକ ସାମୁହିକ ନାଗରିକ କଳାର ବିଭାଗ । ସେଇଥିପାଇଁ ଲାହୋର ଛାଡ଼ିବା ପରେ ଯଦି ନାଟ୍ୟ-ପରଂପରା ପଞ୍ଜାବରେ ଏ ପର୍ଯ୍ୟନ୍ତ ପ୍ରତିଷ୍ଠିତ ହୋଇପାରି ନାହିଁ, ତେବେ କିଛି ବଡ଼ଘଟଣା ଘଟିନି । କାହିଁକିନା, ଭାରତୀୟ ପଞ୍ଜାବର ଅନ୍ୟ ନଗର ଯଥାର୍ଥ ନଗର ନ ହୋଇ କେବଳ ନାଗରିକ ସୁବିଧା ଥିବା ବଡ଼ ବଡ଼ ବସ୍ତିରେ ପରିଣତ ହୋଇଛି ।

ବିଭାଜନ ପରେ ପ୍ରଥମେ ଶିମଲାରେ ଲିଟ୍‌ଲ୍ ଥିଏଟର ଗ୍ରୁପ, ପୁଣି ଦିଲ୍ଲୀରେ ଗୁରଦୟାଲ ସିଂହ ଖୋସଲାଙ୍କ ପ୍ରୟତ୍ନର ଫଳସ୍ୱରୂପ ପଞ୍ଜାବୀ ଥିଏଟର ଗ୍ରୁପ ହିଁ ପଞ୍ଜାବୀ ନାଟକକୁ ନିଜ ପାଦରେ ଠିଆହେବାକୁ ସାହସ ଦେଲା । ଦିଲ୍ଲୀରେ ଶୀଲା ଭାଟିଆ ଦେହଲୀ ଆର୍ଟ ଥିଏଟର ଦ୍ୱାରା ପଞ୍ଜାବୀ ସଙ୍ଗୀତ ନାଟକ ତଥା ଅପେରାକୁ ପୁନର୍ଜୀବିତ କରିବାକୁ କଠିନ ପରିଶ୍ରମ କଲେ । ଏହାକୁ ଅନୁକରଣ ଓ ଅନୁସରଣ କରି କେତେକ ଅନ୍ୟ କଳାକାର, ଯେପରିକି ତେରା ସିଂହ ଚନ୍ନ ଓ ଜୋଗିନ୍ଦର ବାହରଲା ଆଦି ଏବଂ ୟୁନାଇଟେଡ୍ ଥିଏଟର ଭଟିଣ୍ଡା ନିଜ ଗୀତନାଟ୍ୟ ଓ ସଙ୍ଗୀତ ନାଟକମାନଙ୍କ ନାଟକ ଓ ଗୀତର କଳାମାଧ୍ୟମର ସହଜ ସଂଯୋଜନାରେ ଏହି ନାଟ୍ୟ-କଳାକୁ ସାଧାରଣ ଜନତାଙ୍କ ସ୍ତରକୁ ଆଣିବା ନିମିତ୍ତ ପୂର୍ଣ୍ଣ ପ୍ରୟତ୍ନ କଲେ । ମାତ୍ର ଏସବୁ ପ୍ରୟତ୍ନ ସତ୍ତ୍ୱେ ମଧ୍ୟ ନାଟକ ପଞ୍ଜାବର କଳାକ୍ଷେତ୍ରରେ ଏକ ସହଜ ଅଂଗ ଏ ପର୍ଯ୍ୟନ୍ତ ହୋଇପାରିନାହିଁ । ସେହିପରି ପଞ୍ଜାବ ବିଶ୍ୱବିଦ୍ୟାଳୟ, ଚଣ୍ଡୀଗଡ଼ରେ ବଳବନ୍ତ ଗାର୍ଗୀଙ୍କ ନିର୍ଦ୍ଦେଶନାରେ ଇଣ୍ଡିଆନ୍ ଥିଏଟର ଡିପାର୍ଟମେଣ୍ଟ ଓ ପଞ୍ଜାବୀ ବିଶ୍ୱବିଦ୍ୟାଳୟ ପାଟିଆଲାରେ ମ୍ୟୁଜିକ୍ ଏଣ୍ଡ ଡ୍ରାମା ଡିପାର୍ଟମେଣ୍ଟ ସ୍ଥାପନା (ଯାହା ସହିତ ହରଚରଣ ସିଂହ, ଜି. ଏସ୍. ଖୋସଲା ଆଦି ସମ୍ପୃକ୍ତ ରହିଥିଲେ) ପଞ୍ଜାବରେ ନାଟ୍ୟକଳାର ବିକାଶକୁ ପ୍ରୋତ୍ସାହନ ଦେବା ନିମିତ୍ତ ନିୟମିତ ଶିକ୍ଷଣ ଓ ଏକାଡେମିକ୍ ଅଧ୍ୟୟନର ଦୃଢ଼ ଆଧାର ହୋଇଛି । ଏହା ସହିତ ଅମୃତସରରେ ଗୁରଚରନ ସିଂହ ଏବଂ ପାଟିଆଲାରେ ଇଣ୍ଡିଆନ୍ ସ୍କୁଲ ଅଫ୍ ଡ୍ରାମାର ସୁଶିକ୍ଷିତ କଳାକାର ହରପାଲ ଟିୱାଣା ତଥା ତାଙ୍କର ଧର୍ମପତ୍ନୀ ନୀନା ଟିୱାଣାଙ୍କ ଚିରନ୍ତନ ନିଷ୍ଠା ପଞ୍ଜାବରେ ଆତ୍ମନିର୍ଭରଶୀଳ ନାଟ୍ୟ-ସାଧନା ନିମିତ୍ତ ବାତାବରଣ ସୃଷ୍ଟି କରିଛି । ଶ୍ରୀମତୀ ଟିୱାଣା ସ୍ୱୟଂ ଏକ କୁଶଳୀ କଳାକାର ଅଟନ୍ତି । ମାତ୍ର ଏକଥା ମଧ୍ୟ ସତ୍ୟ ଯେ ଆଜିର ପଞ୍ଜାବରେ ଏପରି ଜଣେ ହେଲେ ନାଟକକାର ନାହାନ୍ତି, ଯାହାଙ୍କର ଆୟୁ 40 ବର୍ଷରୁ କମ୍ ଏବଂ ସେମାନଙ୍କ ଭିତରୁ ବହୁତ କମ୍ ନାଟକକାର ଅଛନ୍ତି; ଯେଉଁମାନେ ମଞ୍ଚ ନିମିତ୍ତ ନାଟକ ରଚନା କରୁଅଛନ୍ତି । ଆଜି ପର୍ଯ୍ୟନ୍ତ ମୁଖ୍ୟ ରୂପରେ ପଢ଼ିବା ପାଇଁ କେବଳ ନାଟକ ଲେଖାଯାଉଛି । ଯଦି ପଠନୀୟ ନାଟକର ପୃଷ୍ଠଭୂମିରେ ନାଟକ ଅଭିନୟର କୌଣସି ବ୍ୟାପକ ଏବଂ ସପ୍ରାଣ ପରଂପରା ସୃଷ୍ଟି ନ ହୁଏ, ଯାହାର ସହାୟତାରେ ନାଟକର ପାଠକ ନିଜ କଳ୍ପନାରେ ତାକୁ ସଜୀବ ହେବା ଦେଖି-

ପାରନ୍ତା; ତେବେ ଦେଖିବା ଓ ପଢ଼ିବାବାଲାଙ୍କ ପାଇଁ ନାଟକ ସଂଳାପ ରୂପରେ ଲେଖା କାହାଣୀ ହୋଇ ରହିଯାଏ । ଏପରି କେତେକ ଅବସ୍ଥା ଆଜିର ପଞ୍ଜାବୀ ନାଟକରେ ମଧ୍ଯ ଅଛି ।

ପଞ୍ଜାବୀ ଏକାଙ୍କି ନାଟକ ବିଷୟରେ ବିଚାର କଲାବେଳେ ଏକଥା ପ୍ରତି ମଧ୍ଯ ଧ୍ଯାନ ଦେବା ଉଚିତ ଯେ, ଏକାଂକୀ ନାଟକ ପଶ୍ଚିମରେ ମଧ୍ଯ ଏକପକ୍ଷୀୟ କଳା ବିଭାଗ ନୁହେ । ଏହା ପୂର୍ଣ୍ଣାଙ୍ଗ ନାଟକର ଏକ ବିସ୍ତାର ମାତ୍ର, ଯାହା ନୂତନ ବିଭାଗ ରୂପରେ ନାଟକରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର ହୋଇ ମଧ୍ଯ ନିଜ କଳା ଆକାଂକ୍ଷା, ବୌଦ୍ଧିକ ଶକ୍ତି ଓ ସୌନ୍ଦର୍ଯ୍ୟ ସାମର୍ଥ୍ୟ ଦୃଷ୍ଟିରୁ ସେତେ ମହତ୍ତ୍ୱପୂର୍ଣ୍ଣ ନୁହେଁ । ପଶ୍ଚିମରେ ଏହି ବିଭାଗର ବିକାଶ ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ କୌଣସି କଳାତ୍ମକ ବିବଶତାର କାରଣରୁ ନୁହେଁ, ବରଂ ନାଟକ ଆରମ୍ଭ ହେବା ପୂର୍ବରୁ ଦର୍ଶକମାନଙ୍କ ମନୋରଞ୍ଜନ ତଥା କ୍ରିୟାତ୍ମକ ଆବଶ୍ୟକତାର ପୂର୍ତ୍ତି ନିମିତ୍ତ ହିଁ ସମ୍ଭବ ହୋଇଥିଲା । ନିଃସନ୍ଦେହରେ କୁହାଯାଇପାରେ ଉଇଲିୟମ ସିଂଜ, ଲେଡି ଗ୍ରେଗରୀ ଓ ଇଟିସ୍‌ଙ୍କ ଭଳି ମହାନ୍ ଆଇରିଶ୍ ନାଟକକାରମାନଙ୍କର ସାଧନାର କାରଣ ସ୍ୱରୂପ ଆୟରଲାଣ୍ଡର ସାଂସ୍କୃତିକ ଓ ରାଜନୈତିକ ସ୍ୱତନ୍ତ୍ରତା ଆନ୍ଦୋଳନର ପୀଠିକାରେ ଏହି ବିଭାଗ ଜନ୍ମ ନେଇଛି; କିନ୍ତୁ ଏହା ବ୍ୟତୀତ ବିଶ୍ୱସାହିତ୍ୟର ସନ୍ଦର୍ଭରେ ନାଟକର ଇତିହାସ ଉପରେ ଏହାର ପ୍ରଭାବ ନିର୍ଣ୍ଣୟାତ୍ମକ ନୁହେଁ କିମ୍ବା ସ୍ଥାୟୀ ନୁହେଁ ।

ପଞ୍ଜାବୀର ନାଟ୍ୟ-ସାହିତ୍ୟ ସାମୂହିକ ସ୍ତରରେ ଗଦ୍ୟ-ସାହିତ୍ୟର ପଛରେ ଚାଲିବାର ପ୍ରଯତ୍ନ କରିଆସିଛି । ନିହାତି ପକ୍ଷେ ନାଟକୀୟ ବିଷୟବସ୍ତୁ ନିର୍ବାଚନରେ ଏହା ଏକାନ୍ତ ସତ୍ୟ ବୋଲି ପ୍ରମାଣିତ ହୋଇଛି । ଏହି ବିଷୟକୁ ଅଙ୍ଗୀଭୂତ କରି ମଧ୍ଯ ଏ ବିଭାଗ ଉପନ୍ୟାସ ଓ କାହାଣୀ ଭଳି ସ୍ପଷ୍ଟ ତଥା ସାହସୀ ହୋଇପାରିନାହିଁ । ଅନ୍ୟ ଭାରତୀୟ ଭାଷାମାନଙ୍କରେ ସମ୍ଭବତଃ ଏହି ସ୍ଥିତି ଦେଖାଦେଇଥିବ । ପଞ୍ଜାବରେ ଏହାର କାରଣ ଏତିକି ଜଣାପଡ଼େ ଯେ କାବ୍ୟ ଏବଂ ଗଦ୍ୟ ତୁଳନାରେ ନାଟ୍ୟ-କଳା ପୂର୍ଣ୍ଣଭାବରେ ବିକଶିତ ହୋଇପାରି ନାହିଁ । ଏକ ଗୌଣ କାରଣ ଏହା ମଧ୍ଯ ହୋଇପାରେ ଯେ, କବିତା, ଉପନ୍ୟାସ ବା କାହାଣୀ ରଚନା ବ୍ୟକ୍ତିଗତ ସ୍ତରରେ ହୁଏ ଏବଂ ଏକାନ୍ତ ପାଠ୍ୟରୂପରେ ହିଁ ଏଗୁଡ଼ିକର ସଂପ୍ରେଷଣ ହୋଇଥାଏ । ସେଥିପାଇଁ ଏଗୁଡ଼ିକରେ ସାମୂହିକ ପ୍ରତିକ୍ରିୟା ସୃଷ୍ଟି କରିବା ପାଇଁ ଅଧିକ ଭାବରେ କ୍ରାନ୍ତିକାରୀ ବିଚାର ଓ ସାମାଜିକ ବ୍ୟବସ୍ଥା-ବିରୋଧୀ ପରାମର୍ଶ ବିନା ଦ୍ୱିଧାରେ ଦିଆ-ଯାଇପାରେ । କିନ୍ତୁ ନାଟକର ପ୍ରଦର୍ଶନ ଜନସମୂହରେ ହିଁ ହୁଏ ଏବଂ ଆସ୍ଥାସରେ ମନୁଷ୍ୟ ସେହି ତଥ୍ୟଗୁଡ଼ିକର ମୁକାବିଲା କରିବାକୁ ସ୍ୱଭାବତଃ ସଂକୋଚ ବୋଧ କରେ ନାହିଁ । ଏହାକୁ ପରୋକ୍ଷରୂପରେ ଆରାଧନା କରି ସେ ଆନନ୍ଦିତ ହୁଏ । ମାତ୍ର ଲୋକସମୂହରେ କୌଣସି ଭାବାବେଶ ବଶବର୍ତ୍ତୀ ହୋଇ ଜନସାଧାରଣଙ୍କର ଭାବନାର ପ୍ରତିକ୍ରିୟା କେଉଁ ରୂପ ଧାରଣ କରିବ, ତାହା ସର୍ବଦା ସନ୍ଦେହଜନକ । ଏହିଭଳି ନାଟ୍ୟରୂପର ବିଶେଷତା କେବଳ ବିଷୟ

ବସ୍ତୁ ନିର୍ବାଚନକୁ ସୀମିତ କରେ ନାହିଁ, ତତ୍ ସଙ୍ଗେ ସଙ୍ଗେ ତାହାକୁ ସଂପନ୍ନ କରିବାରେ ମଧ୍ୟ ବାଧା ସୃଷ୍ଟି କରିବସେ । ଯଦି ବିଷୟ ନିର୍ବାଚନ ଅଥବା ନିର୍ବାହ ଦୃଷ୍ଟିରୁ ଦେଖାଯାଏ ତେବେ ଉପନ୍ୟାସ ବା କାହାଣୀ ତୁଳନାରେ ପଞ୍ଜାବୀ ନାଟକ ବିଳମ୍ବରେ କଳାତ୍ମକ ପରୀକ୍ଷା-ନିରୀକ୍ଷା କରିଛି ବୋଲି କୁହାଯିବ ।

ଈଶ୍ୱର ଚନ୍ଦର ନନ୍ଦାଙ୍କର ପ୍ରାରମ୍ଭିକ ଏକାଙ୍କିକା ମୂଳରୂପରେ ସାମାଜିକ ସଂସ୍କାରର ପ୍ରେରଣାରେ ଚିହ୍ନିମନ୍ତ ରଚନା । ଏଥିରେ ରସର ଆଞ୍ଚଳିକ ପ୍ରଭାବ, ଚରିତ୍ରଚିତ୍ରଣ, ଗପୁଡ଼ି ସ୍ତ୍ରୀ, ଲାଞ୍ଚଖୋର କର୍ମଚାରୀ, ଠିକାଦାର, ପାଷଣ୍ଡ ସାଧୁ ଆଦି ରୂପାୟିତ ହୋଇଛନ୍ତି ଓ ତୀକ୍ଷ୍ଣ ବିଳିଷ୍ଟ ସଂଳାପ ଏବଂ ସଂପୂର୍ଣ୍ଣ ପ୍ରକ୍ରିୟା ପଛରେ ଲକ୍ଷ୍ୟାତ୍ମକ ବ୍ୟଙ୍ଗ ଓ ହାସ୍ୟରସର ଅନ୍ତର୍ଧାରା ରହିଛି । ପଞ୍ଜାବୀ ଏକାଙ୍କିକାର ବିକାଶର ଦ୍ୱିତୀୟ ପର୍ଯ୍ୟାୟରେ ପର୍ଯ୍ୟାପ୍ତ ବିବିଧତା ଅଛି । ନନ୍ଦାଙ୍କର ସଂସ୍କାରବାଦୀ ଧାରା ହରଚରଣ ସିଂହଙ୍କ ହାତରେ ଭାବୁକ ନାଟକୀୟତାର ରୂପ ଧାରଣ କରିଛି । ହରଚରଣ ସିଂହଙ୍କର ସାରା ଶକ୍ତି ନାଟକୀୟ ଉତ୍କଣ୍ଠାକୁ ତୀକ୍ଷ୍ଣରୁ ତୀକ୍ଷ୍ଣତର ରୂପରେ ପ୍ରସ୍ତୁତ କରିବାରେ ନିଯୁକ୍ତ ରହିଛି । ସନ୍ତସିଂହ ସେଖୋଁ ଗମ୍ଭୀର ବୌଦ୍ଧିକତା କାରଣରୁ ସାମାନ୍ୟ ଓ ଅସାମାନ୍ୟ ଦୃଷ୍ଟିରୁ, ଗୌଣ ବିଷୟମାନଙ୍କରେ ମଧ୍ୟ ଏକପ୍ରକାରର ନାଟକୀୟ ସମ୍ପନ୍ନତା ଓ ଗମ୍ଭୀରତା ଆଣିବା କଳାରେ ପାରଙ୍ଗମ । ବଳବନ୍ତ ଗାର୍ଗୀ କେବଳ ମନୁଷ୍ୟର ସାମାଜିକ ସ୍ଥିତିକୁହିଁ ନିଜ ସାଧନାର କେନ୍ଦ୍ର କରିନାହାନ୍ତି; କିମ୍ବା ସେମାନଙ୍କର ନିପଟ ନିରପେକ୍ଷ ବୌଦ୍ଧିକ ଜିଜ୍ଞାସାର ତୀବ୍ର ପ୍ରଭାବକୁ ମଧ୍ୟ ନୁହେଁ । ତାଙ୍କର ବିଶେଷତ୍ୱ ଜନ-ବିଶେଷର ମାନବୀୟ ସ୍ଥିତିଗତ ରୋଚକ ରହସ୍ୟର ଅଭିବ୍ୟକ୍ତିରେ ରହିଛି । ବଳବନ୍ତ ଗାର୍ଗୀଙ୍କ ନିମିତ୍ତ ନାଟକ ହେଉଛି ବ୍ୟକ୍ତିର ଆତ୍ମଦ୍ୱନ୍ଦ୍ୱ ଏବଂ ଅନ୍ୟସହ ସଂଘର୍ଷ ତଥା ତାହା ମାଧ୍ୟମରେ ଆତ୍ମ-ସ୍ୱୀକୃତିର ପ୍ରତୀକ । ସେ ତାଙ୍କ ନାଟକମାନଙ୍କରେ ପାରସ୍ପରିକ ସଂଘର୍ଷର ମୂଳଭୂତ ତତ୍ତ୍ୱକୁ ଓ ବ୍ୟକ୍ତି-ଦ୍ୱନ୍ଦ୍ୱକୁହିଁ ବିଭିନ୍ନ ରୂପରେ ନିଜ ରଚନାର ବିଷୟବସ୍ତୁ କରିଛନ୍ତି । ପ୍ରତୀକାତ୍ମକ ଭାଷା-ପ୍ରୟୋଗରେ ମନୁଷ୍ୟର ମନଃସ୍ଥିତି ଓ ବାହ୍ୟ ପ୍ରକୃତି ମଧ୍ୟରେ ବସ୍ତୁବିମ୍ବର ସମ୍ବନ୍ଧ ସ୍ଥାପନ କରିବାର କୁଶଳତା ନିମିତ୍ତ ପଞ୍ଜାବୀ ନାଟକରେ ବଳବନ୍ତ ଗାର୍ଗୀ ଅଦ୍ୱିତୀୟ ଅଟନ୍ତି ।

ଯଦିଓ କର୍ତ୍ତାର ସିଂହ ଦୁଗ୍‌ଗଲ ଓ ଗୁରଦୟାଲ ସିଂହ ଖୋସଲଙ୍କ ନାଟ୍ୟକଳା ସ୍ୱାଧୀନତାର ପରବର୍ତ୍ତୀ କାଳରେ ମୁଣ୍ଡ ଟେକିଛି, ତଥାପି ସଠିକ୍ ଭାବେ ଏ ଦୁହେଁ ଲାହୋରର ଅବଦାନ । କର୍ତ୍ତାର ସିଂହ ଦୁଗ୍‌ଗଲ ଲାହୋର ରେଡିଓ ଷ୍ଟେସନର ଓ ଗୁରଦୟାଲ ସିଂହ ଖୋସଲ ଲିଟିଲ ଥିଏଟର୍ ଗ୍ରୁପ ଲାହୋରର ସୌଜନ୍ୟରୁହିଁ ଏହି କଳାରେ ପରିପକ୍ୱତା ପ୍ରାପ୍ତ ହୋଇଛନ୍ତି । ଦୁଗ୍‌ଗଲଙ୍କ ନାଟକ ମୂଳତଃ ରେଡିଓ ନାଟକ ଟେକ୍‌ନିକ୍‌ର ଶ୍ରେଷ୍ଠ ଉଦାହରଣ ହେଲେ ବି ଏଗୁଡ଼ିକୁ ସଫଳତାସହକାରେ ରଙ୍ଗମଞ୍ଚରେ ଉପସ୍ଥାପିତ କରାହୋଇଛି । ଏହିଭଳି କ୍ଷଣ-ପ୍ରତିକ୍ଷଣ ରଙ୍ଗ ବଦଳାଉଥିବା ଓ ଘାତ-ପ୍ରତିଘାତ କରୁଥିବା ଭାବମାନଙ୍କର ସଂଘର୍ଷକୁ ପୂର୍ଣ୍ଣ ଭାବରେ ନାଟକରେ ଉପସ୍ଥାପିତ କରିବାହିଁ ଏହି ମାଧ୍ୟମର ଉଦ୍ଦେଶ୍ୟ । ଏ କ୍ଷେତ୍ରରେ ଦୁଗ୍‌ଗଲ

ନାଟକୀୟ ସଂଳାପଗୁଡ଼ିକ ପାଇଁ ସାଧାରଣ କଥାବାର୍ତ୍ତାର ଭାଷା ତ୍ୟାଗକରି କାଳ୍ପନିକ କାବ୍ୟମୟ ପ୍ରବଚନର ପ୍ରଭାବୋତ୍ପାଦକ ଉକ୍ତିକୁ ପ୍ରୟୋଗ କରିଛନ୍ତି । ଗୁରଦୟାଲ ସିଂହ ଖୋସଲାଙ୍କ ଶୈଳୀ ମୁଖ୍ୟତଃ ପରିହାସପୂର୍ଣ୍ଣ । ଏହି ପରିହାସ ଶକ୍ତିରେ ସେ ମନୁଷ୍ୟ, ବିଶେଷ-କରି ସାମାଜିକ ମନୁଷ୍ୟର କଥା ଓ କାର୍ଯ୍ୟର ତଫାତ୍‌କୁ ବ୍ୟକ୍ତ କରି ତାଙ୍କର ଅହଂକୁ ବିହିଃ ପ୍ରକାଶିତ କରିଛନ୍ତି ।

ସ୍ୱାଧୀନୋତ୍ତର ପଞ୍ଜାବୀ ନାଟକରେ କଳା ଅଭିବ୍ୟକ୍ତିର ମାଧ୍ୟମ ସୃଷ୍ଟିକାରୀ ସର୍ବାଧିକ କୁଶଳ ନାଟକକାର ବୋଧହୁଏ ହେଉଛନ୍ତି ଅମରୀକ ସିଂହ । କିନ୍ତୁ କିଛି ବର୍ଷର ସଫଳ ସାଧନା ପରେ ତାଙ୍କ ପ୍ରତିଭା ଅନ୍ୟ କ୍ଷେତ୍ରରେ ବିନିଯୁକ୍ତ ହେବାକୁ ଲାଗିଲା ଏବଂ ସେ ନାଟକ ସୃଷ୍ଟି କରିବା ଦିଗରେ ଏକପ୍ରକାର ଉଦାସୀନ ହୋଇଗଲେ । ଅମରୀକ ସିଂହ ନିଜ ନାଟକରେ ବିହୁ ବ୍ୟାପକ ଭାବରେ ଜାଲ ସୃଷ୍ଟି କରିଛନ୍ତି । କ୍ରମାଗତଭାବେ ବିଭିନ୍ନ ଦୃଶ୍ୟ ମାନବୀୟ ସ୍ୱଭାବର ବହୁମୁଖୀ ଦର୍ଶନ, ମାନବ ମନକୁ ତରଙ୍ଗାୟିତ କରୁଥିବା ଅସଂଖ୍ୟ ଇଚ୍ଛା ଓ ସଂଶୟକୁ ସେ ନିଜ ନାଟକରେ ଏଭଳି ଗୁନ୍ଥିଦିଅନ୍ତି ଯେ, ଶେଷ ପରିଣତିର ସ୍ଥିତିରେ ସମସ୍ତ ବିରୋଧୀ ତତ୍ତ୍ୱ ଏକ ସାର୍ଥକ ପାଟର୍ନ୍‌ରେ ଆସି ରୂପାୟିତ ହୁଅନ୍ତି । ଗୁରଚରଣ ସିଂହ ଜସୂଜା ଓ ହରସରନ ସିଂହଙ୍କ ସାମର୍ଥ୍ୟ ଗଭୀର ମାନବୀୟ ସଂବେଦନାରେ ରହିଛି, ଯାହା ସତ୍ୟକୁ ନିପଟ ସ୍ୱଚ୍ଛ ରଙ୍ଗରେ ବାଣ୍ଟି ନିଜର କରିବା ବା ତ୍ୟାଗ କରିବାର ସରଳ ନିର୍ବାଚନକୁ ଏକ ସମସ୍ୟା ମନେ-କରେ ନାହିଁ; ବରଂ ଲଘୁମାନବର ଜଟିଳ ଚେତନାକୁ ପୂର୍ଣ୍ଣରୂପେ ବ୍ୟକ୍ତ କରେ । ଏହାର ବିପରୀତରେ କପୁର ସିଂହ ଘୁମ୍ମଣ ଈଶ୍ୱର ଚନ୍ଦ୍ରର ନନ୍ଦାଙ୍କଠାରୁ ଚରିତ୍ରଚିତ୍ରଣର କୌଶଳ ଓ ହରଚରଣ ସିଂହଙ୍କଠାରୁ ଅତି-ନାଟକୀୟତା ନେଇ ତାଙ୍କର ସମାଜ-ସଂସ୍କାର ମନୋବୃତ୍ତିକୁ ନିଷ୍ଠାସହ ଆଗେଇନେଇଛନ୍ତି ।

ସଂକଳନରେ ଅଂଶୀଭୂତ ହୋଇଥିବା ଏକାଂକିକା ଏହି ସମସ୍ତ ନାଟକକାରଙ୍କ ମୁଖ୍ୟ କଳା-ପ୍ରବୃତ୍ତିମାନଙ୍କର ପ୍ରତିନିଧିମୂଳକ ରଚନା । ପ୍ରତ୍ୟେକ ଏକାଂକିକା ସ୍ୱୟଂ ପଞ୍ଜାବୀ ଏକାଂକୀ-କଳାର ବିକାଶପଥର ଏକ ବିଶେଷ ପକ୍ଷର ସ୍ମାରକ ଏବଂ ପଞ୍ଜାବୀ ଜନ-ଜୀବନର କୌଣସି ଏକ ନୂତନ ଦୃଶ୍ୟକୁ ମଧ୍ୟ ପ୍ରକାଶିତ କରେ—ଯାହା ସ୍ଥାନୀୟ ହୋଇ ବି ବ୍ୟାପକ । ଏହି ଏକାଂକୀ ନାଟକକାରମାନଙ୍କ ମଧ୍ୟରୁ ଈଶ୍ୱର ଚନ୍ଦ୍ରର ନନ୍ଦା, ସନ୍ତସିଂହ ସେଖୋଁ, ଗୁର-ଦୟାଲ ସିଂହ ଖୋସଲା, ବଲବନ୍ତ ଗାର୍ଗୀ, କର୍ତ୍ତାର ସିଂହ ଦୁଗ୍‌ଗଲ ଓ ଅମରୀକ୍ ସିଂହ ସ୍ନାତକୋତ୍ତର ସ୍ତର ପର୍ଯ୍ୟନ୍ତ ଇଂରାଜୀ ସାହିତ୍ୟକୁ ଅଧ୍ୟୟନ କରିଛନ୍ତି ଏବଂ ଏମାନଙ୍କ ମଧ୍ୟରୁ କେତେକ ଇଂରାଜୀ ସାହିତ୍ୟର କୁଶଳ ପ୍ରାଧ୍ୟାପକ ଅଟନ୍ତି । ବୋଧହୁଏ ସେଥିପାଇଁ ପଞ୍ଜାବୀ ସାହିତ୍ୟରେ ଏକାଂକିକାର ମୂଳରୂପ ସ୍ୱାଭାବିକ ଢଙ୍ଗରେ ପାଶ୍ଚାତ୍ୟ ସ୍ୱରୂପ ଆଡ଼କୁ ଢଳି-ପଡ଼ିଛି ।

—ଅତର ସିଂହ

# ସୂଚୀ

# ବେଇମାନ

—ଈଶ୍ବର ଚନ୍ଦର ନନ୍ଦା

## ପାତ୍ର

ମୋଟର ଓ୍ୱାର୍କସପ୍‌ର ମେନେଜର : ବୟସ ଚାଳିଶ–ବୟାଳିଶ ବର୍ଷ

(ମାଲିକ) ମୋଟରବାଲା : ବୟସ ପଚାଶ ପାଖାପାଖି

ମୋଟରବାଲାର ସ୍ତ୍ରୀ : ବୟସ ଚାଳିଶ–ପଇଁଚାଳିଶ

ମିସ୍ତ୍ରି ବସନ୍ତରାମ : ବୟସ ତିରିଶ–ବତିଶ

ଏକ : ପୁଲିସ ଇନ୍‌ସପେକ୍ଟର

ଏକ : ବୀମା କମ୍ପାନୀର ମେନେଜର

ଏକ : ଅନ୍ୟ ଜଣେ ମିସ୍ତ୍ରି

ଚପରାଶୀ

ସ୍ଥାନ—ମୋଟର ଓ୍ୱାର୍କସପ୍‌ରେ ମେନେଜରଙ୍କ ଦପ୍ତର ।

ସମୟ—ଦ୍ୱିପହର ପରେ, ଘଣ୍ଟା-ପାଞ୍ଚଟା ବେଳ ।

[ ମୋଟର ମରାମତିର ଧୀର ଠକ୍-ଠକ୍ ଶବ୍ଦ ଏବଂ କାରଖାନାର ଅଳ୍ପ ଅଳ୍ପ ପାଟିଗୋଳ ଶୁଣାଯାଉଥାଏ । ମଞ୍ଚର ଡାହାଣପଟ କଣକୁ ଥିବା ଦ୍ୱାର ଉପରେ 'ଷ୍ଟୋର' ବୋଲି ସାଇନ୍‌ବୋର୍ଡ଼ ଲଟକା ହୋଇଥାଏ । ଦପ୍ତରର ଟେବୁଲ ସାମ୍ନା କାନ୍ଥରେ ଗୋଟିଏ କ୍ୟାଲେଣ୍ଡର ଝୁଲୁଥିବା ଦୃଷ୍ଟିରେ ପଡ଼େ । ଦପ୍ତରର ବାମ ଦିଗରେ ଚପରାସୀଟି ଟୁଲ ଉପରେ ବସିଥାଏ । ମୋଟରବାଲା ଡାହାଣ ପଟରୁ ବାହାରଆସିଲା ।]

ମୋଟରବାଲା : (ବହୁତ ଚଡ଼ିଥିବା ଭଳି ଜଣାପଡ଼େ । ମେନେଜରଙ୍କୁ ସେଠାରେ ନ ଦେଖି ଚପରାସୀକୁ) ମେନେଜର ସାହେବ କେଉଁଠି ?

ଚପରାସୀ : ଏବେ ଏଇଠି ଥିଲେ ଆଜ୍ଞା—ଡାକି ଆଣିବି ?

ମୋଟରବାଲା : ହଁ ହଁ ଜଲଦି···(ଚପରାସୀ ଗୁଚିଗଲା) ଅଜବ୍ ବେଇମାନଗିରି ଇଏ ! ବିଲ୍ ପୁରା ଭରି—ପୁଣି ବକ୍‌ସିସ୍—ହାତଗୁଞ୍ଜା ତ ଅଲଗା ଅଛି । ନ ହେଲେ···ନହେଲେ ଗାଡ଼ିର ରକ୍ଷା ନାହିଁ । ଏ ମିସ୍ତ୍ରିଗୁଡ଼ା ଗୋଟାଏ କାମକୁ ସଜାଡ଼ିବେ ତ ଦଶଟା ବିଗାଡ଼ି ଦେବେ । (ମେନେଜରଙ୍କ ପ୍ରବେଶ)

ମେନେଜର : ଆସନ୍ତୁ, ଆସନ୍ତୁ—କି ଆଦେଶ ଆପଣଙ୍କର ? କହନ୍ତୁ । (ଚଉକି ଆଡ଼କୁ ସଙ୍କେତ କରି) ବସନ୍ତୁ ।

ମୋଟରବାଲା : ପଅରଦିନ ମୁଁ ହେଡ଼ଲାଇଟ୍‌ର ଡିପର ମରାମତି ପାଇଁ ପଠାଇଥିଲି ନା ?

ମେନେଜର : ତା'ହେଲେ କ'ଣ ଆଜିଯାଏ ସେଇଟା ହୋଇନି ? ମିସ୍ତ୍ରିକୁ ତ ଅର୍ଡ଼ର କରିଦେଇଥିଲି । (ଚପରାସୀକୁ) ବସନ୍ତରାମକୁ ଶୀଘ୍ର ଡାକିଲୁ ।

ମୋଟରବାଲା : ନା ନା, ଡାକିବାର କୌଣସି ଦରକାର ନାହିଁ, ଡିପର ହୋଇ ଯାଇଛି ।

ମେନେଜର : କ'ଣ କିଛି ଗଲ୍‌ତି ରହିଯାଇଛି କି ? ତାକୁ ଏବେ ସଜାଡ଼ି ଦେଉଛି ।

ମୋଟରବାଲା : ଗଲ୍‌ତି ବା ନୋକ୍‌ସାନ କିଛି ହୋଇନି । ବିଲକୁଲ କିଛି ତ୍ରୁଟି ହୋଇନି । ଓଲଟା ଡିପର ତ ନୂଆ ହୋଇଯାଇଛି ।

ମେନେଜର : ଧନ୍ୟବାଦ । ଆମର ତ ପଲିସି ଏଇଆ—'ଭଲ କାମ, ଉଚିତ ଦାମ' । ଆପଣ ତ ଜାଣିଛନ୍ତି, ମୁଁ କେବଳ ହୁସିଆର ଓ ଅନୁଭବୀ ମିସ୍ତ୍ରି ରଖେ—ଦରମା ଯେତେ ଅଧିକା ଦେବାକୁ ପଡ଼ୁ ନା କାହିଁକି । ବାକେ ମିସ୍ତ୍ରିଙ୍କୁ ତ ମୁଁ ଓ୍ୱାର୍କସପ୍ ପାଖ ମଡ଼େଇ ଦିଏନି । ଅନ୍ୟ ଓ୍ୱାର୍କସପ୍‌ରେ ଆପଣଙ୍କୁ ଏଭଳି କଥା ଦେଖିବାକୁ ମିଳିବନାହିଁ ।

ମୋଟରବାଲା : ତମ କାମ ଖୁବ୍ ସଫାସୁତୁରା—ଏଥିରେ କୌଣସି ତ୍ରୁଟି ମଧ୍ୟ ନାହିଁ ।

ମେନେଜର : ବହୁତ ବହୁତ ଧନ୍ୟବାଦ । ଆମକୁ ମଧ୍ୟ ଆପଣଙ୍କ ଭଳି ଗରାଖଙ୍କ ଖୁସି ଦରକାର । ଠିକ୍‌ଅଛି । ତା'ହେଲେ ମୁଁ ଆଉ କିଛି ସେବା କରି ପାରିବି କି ?

ମୋଟରବାଲା : କହିବାର ତ ମୋର କିଛି ନିଶ୍ଚୟ ଥିଲା; କିନ୍ତୁ ଟିକିଏ ସଙ୍କୋଚ କରୁଚି ।

ମେନେଜର : ଆପଣଙ୍କର ନିଜର କଥା । ଭାବିବାର ଏଥିରେ କ'ଣ ଅଛି ? କହନ୍ତୁ ।

ମୋଟରବାଲା : ମୋର କେବଳ ଏତିକି ପଚାରିବାର କଥା ଯେ, ତମର ଏଇ ମିସ୍ତ୍ରିମାନଙ୍କୁ ବକ୍‌ସିସ୍ ଦବା ପ୍ରଥା କେବଠୁ ଚାଲୁହେଇଚି ?

ମେନେଜର : ନା ଆଜ୍ଞା ! ଆମର ଏଠି ସେମିତି କିଛି ପ୍ରଥା ତ ନାହିଁ, କେବେ ନଥିଲା ଏବଂ କେବେ ବି ହବନି । ବକ୍‌ସିସ୍ ଗୋଟାଏ କ'ଣ ? ମିସ୍ତ୍ରିମାନଙ୍କୁ ତ ଖୁବ୍ ଭଲ ଦରମା ମୁଁ ଦଉଚି । ଓଭରଟାଇମ୍ ପେମେଣ୍ଟ ଏମାନଙ୍କର ଅଲଗା, ପୁଣି ବକ୍‌ସିସ୍ ଭଳି ବାଜେକଥା କ'ଣ ? ଆପଣଙ୍କୁ କିଏ କ'ଣ ବକ୍‌ସିସ୍ ମାଗିଲା କି ?

ମୋଟରବାଲା : ଏଇଟା ସଫା କଥା ଯେ, ମୋ ମନରେ ଡର ବସା ବାନ୍ଧିଯାଇଛି ।

ମେନେଜର : ନିଶ୍ଚୟ ହେଇଯାଇଥିବ ।

ମୋଟରବାଲା : ମୋ ପାଇଁ ଏବେ କେବଳ ଦୁଇଟି ରାସ୍ତା । ଗୋଟାଏ ହଉଚି ମିସ୍ତ୍ରିମାନଙ୍କ ମୁହଁକୁ ମିଠା କରୁଥିବି—ନ ହେଲେ ଜାଣେନା ସେମାନେ କେତେ ବଦଖେଇ କରୁଥିବେ । ଆଉ ଯଦି କିଏ ସେଥିରେ ନାରାଜ ହେଲା ତ ମୋ ଜୀବନକୁ ବିପଦରେ ପକେଇଦେବେ ।

ମେନେଜର : ଆପଣ ଏସବୁ କ'ଣ କହୁଛନ୍ତି ? କିଏ ସାହସ କରିବ ?

ମୋଟରବାଲା : ଆଉ ବିଶ୍ରାସ୍ଥିତି ହେଉଚି—ଏ ଗ୍ୟାରେଜକୁ ସଲାମ ପକାଇବି ।

ମେନେଜର : (ହସିକରି) ଆପଣଙ୍କୁ ଯିବାକୁ କିଏ ଦେବ ? ବାଃ ସାହେବ ବାଃ ! ଏ ଗ୍ୟାରେଜ ଆପଣଙ୍କ ସେବାପାଇଁ ଅଛି—କୌଣସି ମିସ୍ତ୍ରିଙ୍କ ପାଇଁ ନୁହେଁ । ଆପଣଙ୍କ ଭଳି ଲୋକ ନାରାଜ ହୋଇ ଏଠୁ ଚାଲିଯିବାଠାରୁ ଆମର ଆଉ କି ବଡ଼ ବଦନାମ ହୋଇପାରେ !

ମୋଟରବାଲା : ହେଲେ ମେନେଜର ସାହେବ ! କଥାଟା ସେମିତି କିଛି ହେଇଗଲାଣି ।

ମେନେଜର : ଆପଣଙ୍କର କହିବା ଠିକ୍; କିନ୍ତୁ ମୋ ଗୁହାରି ମଧ୍ୟ ଶୁଣନ୍ତୁ । ଯଦି କୌଣସି ମିସ୍ତ୍ରି ବକ୍‌ସିସ୍ ବାହାନାରେ ଆପଣଙ୍କୁ କିଛି ଅଧିକ ମାଗିଛି, ତେବେ ମୁଁ ଏଥିପାଇଁ ଅତ୍ୟନ୍ତ ଲଜ୍ଜିତ । ଆପଣ ଦୟାକରି ସେ ବଦମାସ୍‌ର ନାମଟା କହନ୍ତୁ, ମୁଁ ତାକୁ ଠିକ୍ କରିଦଉଚି, ଆଉ ତାକୁ ଏମିତି ସଜା ଦେବି ଯେ ସେ ସବୁଦିନେ ମନେ କରୁଥିବ ।

ମୋଟରବାଲା : ଗୁଡ଼୍ । ତମେ ସଜା ଦିଅ ବା ନ ଦିଅ; କିନ୍ତୁ ମୋ ମତଲବଟା ତମେ ବୁଝିଗଲ ତ ?

ମେନେଜର : ଖୁବ୍ ଭଲଭାବରେ । ସତ କହୁଚ, ମତେ ଏକଥା ବହୁତ ଦୁଃଖଦେଲା । ବର୍ତ୍ତମାନ ମୋ ମନରେ ଯଦି କିଛି ଚିନ୍ତା ଥାଏ ତ ତାହା ସେଇ ଯେ ମୁଁ କିପରି ଆପଣଙ୍କ ମନରେ ବିଶ୍ୱାସ ଜନ୍ମେଇ ପାରିବି । କହନ୍ତୁ ପ୍ରକୃତ କଥାଟା କ'ଣ ?

ମୋଟରବାଲା : ଧନ୍ୟବାଦ ! କଥା କ'ଣ କି, ତମେ ନିଜେ ତ ଦେଇଥିଲ, ମୋ ଗାଡ଼ିର ହେଡ଼ଲାଇଟ୍ କାମ କରୁନଥିଲା ।

ମେନେଜର : ହଁ ଆଜ୍ଞା !

ମୋଟରବାଲା : ଏବଂ ମିସ୍ତ୍ରି ଡିପର ମରାମତି କରିବାପାଇଁ ଗାଡ଼ିରୁ ବାହାରକରି ରଖି-ନେଇଥିଲା ।

ମେନେଜର : ହଁ ଆଜ୍ଞା !

ମୋଟରବାଲା : ଆଜି ଯେତେବେଳେ ମୁଁ ଆସିଲି, ମିସ୍ତ୍ରି କହିଲା···

ମେନେଜର : ହଁ ଆଜ୍ଞା !

ମୋଟରବାଲା : ଯେ ଡିପର ବିଲ୍‌କୁଲ ଖରାପ ହେଇଯାଇଥିଲା । ମରାମତି ଯୋଗ୍ୟ ବି ନଥିଲା ।

ମେନେଜର : ହଁ ଆଜ୍ଞା !

ମୋଟରବାଲା : ଏବଂ ମୁଁ ତା' ଜାଗାରେ ଅନ୍ୟ ଡିପର ଲଗେଇ ଦେଇଚି ।

ମେନେଜର : ଠିକ୍ ଅଛି ।

ମୋଟରବାଲା : ଆଉ ମୁଁ ଯେତେବେଳେ ପଚାରିଲି ମୋ ଡିପର କେଉଁଠି ଅଛି—ସେ ଜବାବ ଦେଲା ଯେ ତା'ର ପ୍ରତ୍ୟେକ ପାର୍ଟ ନଷ୍ଟ ହେଇଯାଇଥିଲା, ଯାହାକୁ ସେ ଅଳିଆ ଗଦାକୁ ଫିଙ୍ଗିଦେଲା । ତାହା ଜାଗାରେ ନୂଆ ଡିପର ଲଗାଇଦେଲା । ମୁଁ ଯେତେବେଳେ ପଚାରିଲି ଏହାର ଦାମ୍ କେତେ—ମିସ୍ତ୍ରି କହିଲା, 'ଆପଣଙ୍କର ଯାହା ଖୁସି ହେଉଚି ଦେଇ ଦିଅନ୍ତୁ ।' ମୁଁ ଏହା ଶୁଣି ହଇରାଣରେ ପଡ଼ିଗଲି । ଡିପର୍ ଷ୍ଟୋର୍‌ରୁ ଆଣିଲୁ ବୋଲି ମୁଁ ପଚାରିଲାରୁ ଜବାବ ମିଳିଲା 'ଆପଣ ଧରିନିଅନ୍ତୁ ମୁଁ ଷ୍ଟୋର୍‌ରୁ ଆଣିଚି; କିନ୍ତୁ ଆପଣଙ୍କୁ ସେଥିରୁ କ'ଣ ମିଳିବ ? ଆପଣଙ୍କର ଖୁସି ହଉଚି ତ କିଛି ଦେଇଦିଅନ୍ତୁ, ନହେଲେ ନାହିଁ, ଚଳିବ । ମୁଁ ଆପଣଙ୍କର କାମ କରିଦେଇଚି ।' ସେତେବେଳେ ମତେ କିଛି ଉତ୍ତର ପଇଠିଲା ନାହିଁ । ଆଉ ଏଇଟା ସତକଥା ଯେ ମୁଁ ବହୁତ ଅଡ଼ୁଆରେ ପଡ଼ିଗଲି । ମତେ ଚୁପ୍ ରହିବା ଦେଖି ଶ୍ରୀମାନ୍ କହିଲେ, 'ଆପଣ ତ ମୋ ଉଦ୍ଦେଶ୍ୟ ବୁଝି ପାରିଥିବେ ?' ମାତ୍ର ଏହା ସତ୍ୟ ଯେ ସେତେବେଳକୁ ମୁଁ ତାର ଉଦ୍ଦେଶ୍ୟ ସତକୁ ସତ ବୁଝିଯାଇଥିଲି । ମୋର ମିରବତା ନିଜକୁ ଏମିତି ଗମ୍ଭୀର ମନେ ହେଉଥିଲା ଯେ, ଆପଣାଛୁଏଁ ମୋ ପାଟିରୁ

ବାହାରିପଡ଼ିଲି, ଠିକ୍ ଅଛି, 'ତୁମକୁ ପାଞ୍ଚଟଙ୍କା ମିଳିବ । ବାସ୍, ଶ୍ରୀମାନ୍ ଖୁସିରେ କହିଲେ ବହୁତ ଦୟା ଆପଣଙ୍କର । ଯେତେବେଳେ ମତେ କିଛି ବକ୍‌ସିସ୍ ମିଳିଯାଏ ନା, ମୁଁ ଖୁବ୍ ସତର୍କତା ସହ କାମଟା କରିଦିଏ ।' ବାସ୍, ସେଇ ସମୟରୁ ମୋର ଭରସା ତୁଟିଗଲା । ଏବେ ସେଇକଥା ଚିନ୍ତାକରୁଥିଲି ଯେ ଟଙ୍କା ଦେବି କି ନାହିଁ । ତା' ପୂର୍ବରୁ ଭାବିଲି ଆପଣଙ୍କ ସହିତ କଥାହେବା ଦରକାର ।

ମେନେଜର : ଆପଣ ମୋ ପ୍ରତି ବହୁତ ଦୟା କଲେ ଆଜ୍ଞା, ମୁଁ ବହୁତ କୃତଜ୍ଞ ।

ମୋଟରବାଲା : ମୁଁ ଠିକ୍ କହି ପାରିବିନି ଯେ ସେ ଡିପରଟା ଏକଦମ୍ ନୂଆ ବା ମୋର ପୁରୁଣା ଡିପରକୁ ସଫାକରି ଯୋଡ଼ିଦିଆଯାଇଛି—ଆଉ ମୋଠାରୁ ତୁଚ୍ଛାଟାରେ ପଇସା ଅସୁଲ କରାହେଉଛି ।

ମେନେଜର : ବଡ଼ ଅଡୁଆ କଲା ବେଇମାନ୍‌ଟା । (ଚପରାସୀକୁ) ଟିକେ ହରବଂଶକୁ ଡାକ ତ । (ଚପରାସୀ ଚାଲିଗଲା) ଆଜ୍ଞା ! କୋଉ ଭାଷାରେ ମୁଁ ଆପଣଙ୍କୁ କ୍ଷମା ମାଗିବି ? ଲାଜରେ ମୁଁ ସରିଗଲିଣି । ପାଞ୍ଚ-ଛଅ ବର୍ଷ ହେଲା ମୁଁ ଏଇ ଓ୍ୱାର୍କସପ୍‌ର ଚାର୍ଜରେ ଅଛି । ହେଲେ ଆଜ୍ଞା, ଏଇ ପ୍ରଥମଥର ମୁଁ ଲଜ୍ଜାକର ପରିସ୍ଥିତିରେ ପଡ଼ିଛି । ମୋର ଏ କଥା ଉପରେ ଗର୍ବ ଥିଲା ଯେ, ମୋ ମିସ୍ତ୍ରି କେବଳ ହୁସିଆର ନୁହଁନ୍ତି, ସଚ୍ଚୋଟ ମଧ୍ୟ; କିନ୍ତୁ ଏ ବେଇମାନ୍ ମତେ ମାଟିରେ ମିଶେଇଦେଲା । (ହରବଂଶର ପ୍ରବେଶ)

ହରବଂଶ : ମତେ ଡାକିଲେ ଆଜ୍ଞା ?

ମେନେଜର : ହଁ, ହରବଂଶ ଟିକେ ଦେଖ ତ—ସାହାବଙ୍କ ଗାଡ଼ିରେ ବସନ୍ତରାମ ଯେଉଁ ଡିପର୍ ଏବେ ଫିଟ୍ କରିଥିଲା, ତାକୁ ଖୋଲି ଆଣ୍; କିନ୍ତୁ ଦେଖ, ହୁସିଆରରେ କାମ କରିବ ଯେମିତି ବସନ୍ତ ରାମ ଜାଣି ନ ପାରିବ । ଜଲ୍‌ଦି ଯା ।

ହରବଂଶ : ଖୁବ୍ ଶୀଘ୍ର ! ଏବେ ଆଣୁଚି ।

ମେନେଜର : ଯାହା କିଛି ଆପଣ ବକ୍‌ସିସ୍ ଇତ୍ୟାଦି ବିଷୟରେ କହିଲେ, ଏ ଘଟଣା ତ ତାହାଠାରୁ ବଳି ମୁହଁ କଳାକରିବା କଥା ଜଣାପଡ଼ିଲା । ତା'ର ଆଉ ରକ୍ଷା ନାହିଁ, ଏବେ ତାକୁ ମଜା ଚଖେଉଛି ।

ମୋଟରବାଲା : ଏବେ ଆପଣ ନିଜେ ଭାବନ୍ତୁ ମେନେଜର ସାହାବ, ଏଇଟା ମୋ ପାଇଁ କେତେ ବଡ଼ ଅଡୁଆ କଥା ? ଥରେ ଲାଞ୍ଚ ଦେଇ ସବୁଦିନ ପାଇଁ କଣ ନଜର ରଖିହେବ ? ଏ ମିସ୍ତ୍ରି ନିତି ନୂଆ ଫିକର କାଢ଼ିବେ । ମୋ ନିଜକୁ ବଞ୍ଚେଇବାର ଗୋଟାଏ ଉପାୟ ହେଉଚି ମୋତେ ଅନ୍ୟ କୌଣସି ଓ୍ୱାର୍କସପ୍‌କୁ ଯିବାକୁ ହେବ ।

ମେନେଜର : ଆପଣ ଏତେ ବ୍ୟସ୍ତ ହୁଅନ୍ତୁନି । ମୁଁ ଏହାର ପୁରା ବ୍ୟବସ୍ଥା କରିବି । ଆପଣ ବିଶ୍ୱାସ ରଖନ୍ତୁ । ଏ ପ୍ରଶ୍ନ କେବଳ ଆପଣଙ୍କର ନୁହେଁ—ମୋର ମଧ୍ୟ । ମୁଁ ଆପଣଙ୍କର ନମ୍ରତା ଏବଂ ସ୍ପଷ୍ଟବାଦିତା ପାଇଁ ବହୁତ କୃତଜ୍ଞ । କିଏ କହି ପାରିବ ଆମର

କେତେ ଭଦ୍ର ଗ୍ରାହକ ଏଇ କଥା ପାଇଁ ଆମକୁ ଗ୍ରୁଡ଼ି ନ ଯାଇଥିବେ ? ସାପ ମୁହଁର ଚୁଚୁନ୍ଦ୍ରା ଭଳି କେତେ ଦୁଃଖୀ ହୋଇନଥିବେ ସେମାନେ । ମୁଁ ଏ ଅଘଟଣର ଶେଷଭଳ ଯିବ ।

(ହରବଂଶ ଡିପର ନେଇ ଆସିଲା)

ହରବଂଶ : (ଡିପର ଦେଇ) ନିଅନ୍ତୁ ଆଜ୍ଞା ! ମୁଁ ରହିବ ?

ମେନେଜର : ନା, ରହିବା ଦରକାର ନାହିଁ । (ହରବଂଶ ଚାଲିଗଲା । ମେନେଜର ଡିପରକୁ ଧ୍ୟାନପୂର୍ବକ ଦେଖିଲା ।) ଏ ଡିପର ନୂଆ ନୁହେଁ; ମାତ୍ର ଦେଖିବାକୁ ନୂଆ ଭଳି ଲାଗୁଚି । ଏହାକୁ ଖୁବ୍ ପରିଶ୍ରମ ଓ ହୁସିଆର ସହ ସଫା କରାଯାଇଛି ।

ମୋଟରବାଲା : କ'ଣ କହୁଲେ ? ଇଏ କ'ଣ ସେଇ ପୁରୁଣା ଡିପର ?

ମେନେଜର : ଖାଣ୍ଟି କଥା ଯେ, ଇଏ ନୂଆ ନୁହେଁ । ନୂଆଟା ଏତେ ଚକ୍‌ମକ୍ ହବନି । (ଦେଖେଇ) ଏଇ ଦେଖନ୍ତୁ । ଦେଖିଲେ, ଦେଖିଲେ, କେମିତି ଚକ୍‌ମକ୍ ହଉଚି ? ଏହା କେବଳ ପେଟ୍ରୋଲର କରାମତି । ରଖନ୍ତୁ, ଟିକେ ଖୋଲିକରି ଦେଖିନିଏ । (ଟେବୁଲ୍ ଡ୍ରୟାରରୁ ପେଚକସ୍ କାଢ଼ି) ଆହା-ହା-ହା, ଏଇଟାର ତ ଗୋଟାଏ ପାର୍ଟ ବି ନୂଆ ନୁହେଁ ।

ମୋଟରବାଲା : ତେବେ ସେ ତ ମୋତେ ଭଲ ହାତ ଦେଖେଇଲା ।

ମେନେଜର : ରହନ୍ତୁ, ତାକୁ ମଧ୍ୟ ନିଜ କର୍ମ ଭୋଗିବାକୁ ପଡ଼ିଲେ ମଜା ଆସିବ । ସବୁ ଚାଲାକି ଧରାପଡ଼ିବ । (ଚପରାସୀକୁ) ଭାଇ ବସନ୍ତରାମକୁ ଡାକ ତ !

ଚପରାସୀ : ଡାକଦଉଚି ହଜୁର ! •

ମୋଟରବାଲା : ଯଦି ତା' ସହିତ ପୃଥକ୍‌ଭାବେ ଆପଣଙ୍କର ଏକୁଟିଆ କଥାବାର୍ତ୍ତା କରିବାକୁ ଥାଏ ତ ମୁଁ ଏଠୁ ଦୂରକୁ ଚାଲିଯାଉଚି ?

ମେନେଜର : ନା ନା, ଆପଣ କାହିଁକି ଯିବେ ? ସବୁ କଥା ତ ଆପଣଙ୍କ ଆଗରେ ହବ ।

ମୋଟରବାଲା : କଣ ଆଗରୁ ଏମିତି କିଛି ଘଟଣା ଘଟିଥିଲା କି ମେନେଜର ସାହାବ ?

ମେନେଜର : ହୋଇଥାଇପାରେ, ହୋଇଥିବ; କିନ୍ତୁ ମୋ ଜାଣତକୁ ଆସିନଥିଲା । ମୁଁ ତ ଆଜ୍ଞା, ଏ ଓ୍ୱାର୍କସପ୍‌ର ସଚ୍ଚୋଟତା ଓ ଭଲ କାମର ନମୁନା ଝୁଲାଇବାକୁ ଚାହେଁ । କିନ୍ତୁ ଏ ବେଇମାନ ତ ମୋର ସବୁ କଲା କର୍ମକୁ ପାଣିରେ ପକେଇଦେଲା ।

(ବସନ୍ତରାମର ପ୍ରବେଶ)

ମେନେଜର : (କ୍ରୋଧଭରା ସ୍ୱରରେ) ତୋ ବିରୁଦ୍ଧରେ ଅଭିଯୋଗ ଆସିଛି ।

ବସନ୍ତରାମ : ହଁ ଅଜ୍ଞା !

ମେନେଜର : ହଁ ଆଜ୍ଞା ? ହଁ ଆଜ୍ଞା ମାନେ କ'ଣ ? ତୁ କେମିତି ଜାଣିଲୁ ?

ବସନ୍ତରାମ : ହରବଂଶ ଗାଡ଼ିରୁ ଟିପର କାଢ଼ିବା ମୁଁ ଦେଖିଥିଲି । (ମୋଟର ମାଲିକ ଆଡ଼କୁ ଇସାରା କରି) ଆଉ ଆପଣ ତ ପୁଣି ଏଠି ଅଛନ୍ତି ।

ମେନେଜର : ତୋର କିଛି କହିବାର ଅଛି ?

ବସନ୍ତରାମ : କିଛି ନାହିଁ ।

ମେନେଜର : କିଛି ନାହିଁ ? କିଛି ନାହିଁ ମାନେ ?

ବସନ୍ତରାମ : ଆଜ୍ଞା ମତେ ଜଣା ନାହିଁ, ମୋର ଦୋଷ କ'ଣ ? କ'ଣ କହିବି ?

ମେନେଜର : ତେବେ ତୁ କ'ଣ ଜାଣୁନା ଯେ ତୋତେ କାହିଁକି ଖୋଜା ପଡ଼ିଲା ? ଭାରି ଅଜଣା ହୋଇ ଯାଉଚୁ ତ ?

ବସନ୍ତରାମ : ମହାଶୟ, ମୋର ଭାଗ୍ୟଦୋଷରୁ ତ ଅଭିଯୋଗ ହୋଇଛି; କିନ୍ତୁ ଦୋଷଟା କ'ଣ ଜାଣି ପାରିଲିନାହିଁ ।

ମେନେଜର : ରହ, ମୋ ପ୍ରଶ୍ନର ଉତ୍ତର ଦେ । ତାଙ୍କ ଗାଡ଼ିର ଟିପର ତୁ ଫିଟ୍ କରିଥିଲୁ ନା ?

ବସନ୍ତରାମ : ହଁ ଆଜ୍ଞା, ମୁଁ କରିଥିଲି ।

ମେନେଜର : ଟିପର ସ୍ୟାଙ୍କର ତ ?

ବସନ୍ତରାମ : ଆଜ୍ଞା, ତାଙ୍କର ଗାଡ଼ିରୁ ନେଇଥିଲି—ତାଙ୍କର ହୋଇଥିବ ।

ମେନେଜର : ଦେଖ ବସନ୍ତରାମ, ଏ ଗୁଲିକି ରଖ । ଅନ୍ୟ କୋଉଠି ଦେଖେଇବୁ । ସିଧା କଥା କହ ।

ବସନ୍ତରାମ : ହତଭାଗାଙ୍କ ପାଇଁ ସବୁବେଳେ ଏକାଭଳି ଆଜ୍ଞା !

ମେନେଜର : ହତଭାଗାଙ୍କ କାନ୍ଦଣା କାନ୍ଦିବା ପାଇଁ ଅନ୍ୟ ବହୁତ ସୁଯୋଗ ଅଛି । ବର୍ତ୍ତମାନ ସଫାସଫା କହ, ଏ ଟିପର ତାଙ୍କର କି ନୁହେଁ ? କ'ଣ ନୂଆ କି ?

ବସନ୍ତରାମ : ତାଙ୍କର ନୂଆ କୁଆଡ଼ୁ ଆସିଲା ?

ମେନେଜର : ତା'ହେଲେ ତୁ କାହିଁକି କହିଲୁ ଯେ ଏ ଟିପର ନୂଆ ବୋଲି ?

ବସନ୍ତରାମ : ମହାଶୟ, ମୁଁ ଏକଥା କେତେବେଳେ କହିଲି ? ମୁଁ ତ କହିଦେଇଛି ଯେ, ଟିପର ତାଙ୍କର ଗାଡ଼ିରୁ ନେଇଛି । ତାଙ୍କର ହୋଇଥିବ ।

ମେନେଜର : ଏକଥା ତ ତୁ ଏବେ କହୁଛୁ । ମୁଁ ପଚାରୁଚି, ତୁ ତାଙ୍କୁ ଟିପର ବିଷୟରେ କ'ଣ କହିଥିଲୁ ?

ବସନ୍ତରାମ : ଏଇୟା ଯେ, ମହାଶୟଙ୍କ ଟିପର ବହୁତ ଖରାପ ହୋଇ ଯାଇଥିଲା— ଯାହାକୁ ପରିଶ୍ରମ କରି ମୁଁ ନୂଆ ଭଳି ତିଆରି କରିଦେଇଛି । କ'ଣ ଆଜ୍ଞା, ଏଇୟା କହିଥିଲି ନା ?

ମୋଟରବାଲା : ମିଛ, ଖାଣ୍ଟି ମିଛ । ତମେ ତ କହିଥିଲ, ଡିପର ପୁରାପୁରି ନଷ୍ଟ ହୋଇ ଯାଇଥିଲା । ତାକୁ ଅଳିଆଗଦାକୁ ପକେଇ ଦିଆଗଲା ଏବଂ ତା' ଜାଗାରେ ନୂଆ ଲଗେଇ ଦିଆଗଲା ।

ବସନ୍ତରାମ : ମହାଶୟ, ଆପଣ ହେଲେ ବଡ଼ଲୋକ । ମୁଁ ଗରିବର ଗୋଟିଏ ହେଲେ ଶବ୍ଦ ପାଟିରୁ ବାହାର କରି ପାରିବିନାହିଁ । ଅସଲ କଥା ହେଉଛି, ଆପଣ କିଛି ଭୁଲ୍ ବୁଝିଛନ୍ତି ।

ମୋଟରବାଲା : (ରାଗରେ ବଗିଡ଼ିଉଠି) ତା' ମାନେ ମୁଁ ଯାହା କିଛି ଶୁଣିଛି, ଭୁଲ୍ ଶୁଣିଛି—ଆଉ ଯାହା କିଛି ବୁଝିଛି, ଭୁଲ୍ ବୁଝିଛି । ମୋଟକଥା ମୋର ହୋସର ଠିକଣା ନାହିଁ । ମୋର ମୁଣ୍ଡ ଖରାପ ହୋଇଯାଇଛି ।

ବସନ୍ତରାମ : ନା ଆଜ୍ଞା, ନା । ଦୋଷ କ୍ଷମା କରିବେ; କିନ୍ତୁ ଆପଣଙ୍କର ଭୁଲ୍ ବୁଝାମଣା ନିଶ୍ଚୟ ହେଇଚି ।

ମୋଟରବାଲା : (ବ୍ୟଙ୍ଗକରି) ଆଉରି ତମେ ଏକଥା ବୋଧେ ନିଶ୍ଚୟ କହିବ ଯେ, ତମେ ଯୋଉ ବକ୍‌ସିସ୍ ମାଗିଥିଲ, ତାହା ମଧ୍ଯ ମୋର···

ବସନ୍ତରାମ : (କଥା କାଟିକରି) ହଁ ମହାଶୟ, ତାହା ମଧ୍ଯ ଭୁଲ୍ ବୁଝାମଣା । ମୁଁ ତ କିଛି ବକ୍‌ସିସ୍-ଫକ୍‌ସିସ୍ ମାଗିନାହିଁ । ବରଂ ଆପଣ ନିଜେ କହିଲେ, ଯଦି ନୂଆ ଡିପର ଲାଗିବ, ତେବେ କେତେ ଭଲ ହେବ । ମୁଁ ବିନୟ ସହକାରେ କହିଥିଲି, ନୂଆ ଡିପରର ମୂଲ୍ଯ 9-10 ଟଙ୍କା ହେବ । ତା'ପରେ ଆପଣ କହିଥିଲେ ନା ଭାଇ, ଦି'ଚାରିଟଙ୍କାରେ ଯଦି ମୋ କାମ ହେଇଯିବ ତ ଠିକ୍ ହେବ । '(ଟିକିଏ ବ୍ୟଙ୍ଗ ମୁଦ୍ରାରେ) ଏବଂ ମହାଶୟ, ତା'ପରେ ମୁଁ ଏଇଆ କହିଥିଲି ନା । ତା' ହେଇପାରିବନି । ଆପଣ ବିରକ୍ତ ହେଇ ଚାଲିଆସିଲେ ଏବଂ ମୋ ବିରୁଦ୍ଧରେ ଫେରାଦ ହେଇପଡ଼ିଲେ ।

ମୋଟରବାଲା : ଆଶ୍ଚର୍ଯ୍ୟ କଥା, ଆଶ୍ଚର୍ଯ୍ୟ କଥା ! ଇଏ ମୁଁ କଣ ଶୁଣୁଚି ? ମୁଁ ଜାଗି ରହିଚି ନା ସପନ ଦେଖୁଚି ?

ବସନ୍ତରାମ : ମୋର ମନେହେଉଛି, ଆପଣ ସପନ ଦେଖୁଛନ୍ତି ।

ମେନେଜର : ଚୁପ୍‌କର । ବଜ୍ଜାତ୍, ବେହିଆ ! (ମୋଟର ମାଲିକକୁ) ଆପଣ ବିବ୍ରତ ହୁଅନ୍ତୁନି ସାର୍—ମୁଁ ଏ ବେଇମାନ୍‌କୁ ସାବାଡ଼ କରିଦେବି ।

ମୋଟରବାଲା : ତା' ବି ଠିକ୍ । ମଶିଷ ମହୁରଗଣ୍ଡୁ ଆସି କାନ୍ତାରରେ ପଡ଼ିଲା । ଦୋଷ ଉପରେ ଦୋଷ ମୋ ମୁଣ୍ଡରେ ଲଦି ଦିଆଯାଉଛି । ଚୋର ଓଲଟା କଟୁଆଳକୁ ଧମକାଉଚି । ଆଉରି ଏଯାଏ ବଲ୍‌ବ୍ କାହାଣୀ ତ ମୁଁ ଶୁଣେଇନି ମେନେଜର ସାହାବ । ଆପଣ ବି ମତେ କ'ଣ ଭାବିଥିବେ ?

ମେନେଜର : ଏଇଯ୍ବା, ଆପଣ ଜଣେ ଖାଣ୍ଟି ଭଦ୍ରଲୋକ—ଆଉ ଏ ବେଇମାନ ନଲିଁଜ ଆପଣଙ୍କୁ ବହୁତ ହଇରାଣ କରିଚି; ଆପଣଙ୍କୁ ଅପମାନିତ କରିଚି । ମୁଁ ବଡ଼ ଲଜ୍ଜିତ ଆଜ୍ଞା ! ଆପଣ ବଲବ୍ କଥା କୁହନ୍ତୁ ନା ।

ମୋଟରବାଲା : ଶୁଣେଇ ତ ଦେବି; କିନ୍ତୁ କିଏ ଜାଣେ ଇଏ କୋଉ ନୂଆ ବିପଦ ମୋ ମୁଣ୍ଡରେ ଆଣି ଲଦି ନ ଦବ । ମୋର ଏଭଳି ପକ୍‌କା ବଦମାସ୍ ଲୋକ ସାଙ୍ଗରେ କେବେ ଭେଟ ହୋଇନଥିଲା । କଥା କଥାକେ ମତେ ମିଛୁଆ କରିଦଉଚି ।

ମେନେଜର : ଆପଣ କୁହନ୍ତୁ ସାର୍ ! ତା' କଥାକୁ ଟିକିଏ ହେଲେ ଖାତିର୍ କରନ୍ତୁ ନାହିଁ ।

ମୋଟରବାଲା : କଥା କ'ଣ କି, ଏ ମିସ୍ତ୍ରି ମହୋଦୟ ଆଦେଶଦେଲେ ଯେ ମୋ ଗାଡ଼ିର ବଲବ୍ ସଡ଼ି ଯାଇଛି—ନୂଆ କିଣିବାକୁ ପଡ଼ିବ । ନହେଲେ ଉପର ଲଗାଇବାର କିଛି ଲାଭ ମିଳିବନି ।

ମେନେଜର : ଇଏ ତ ସତ କଥା ।

ମୋଟରବାଲା : ହଁ ; କିନ୍ତୁ ଆପଣଙ୍କୁ ଶସ୍ତାରେ ଯୋଗାଡ଼ କରିଦେବ ।

ମେନେଜର : ଓହୋ, କେଉଁଠୁ ?

ବସନ୍ତରାମ : ମୋ ବୋପାଘରୁ । କି ସୁନ୍ଦର ଗଳ୍‌ପ ଗଢ଼ା ହେଉଚି '

ମେନେଜର : ଭାଇ ବସନ୍ତରାମ, କହ—ଇଏ କି କଥା ?

ବସନ୍ତରାମ : କଥା ହେଲା ଛେନାଗୁଡ଼ । ବିଲ୍‌କୁଲ ଆକାଶିଆ କଥା । ମତେ ବରବାଦ କରିବା ବଗୁର ଛଡ଼ା ଆଉ କ'ଣ ?

ମୋଟରବାଲା : ଶୁଣିଲେ ନା ମେନେଜର ସାହାବ ! ମୁଁ ବେଇଜତ୍ ହେବାର ଯାହା ବାକି ରହିଯାଇଥିଲା, ତାହା ବି ସେ ପୂରା କରିଦେଲା । ମତେ ମିଛୁଆ, ବେଇମାନ୍ , ଠକ, ଅତ୍ୟାଚାରୀ—ସବୁ କିଛି ତ କହିଦେଲା ?

ବସନ୍ତରାମ : (ନିଜ କଥା କହିବା ଲାଗି ବିସ୍ମୟ ପ୍ରକାଶ କରି) ଆପଣ ତ ଆଜ୍ଞା ତୁଚ୍ଛାକୁ ନିଆଁ ବାଣ ହୋଇଯାଉଛନ୍ତି । ମୁଁ ତ ଆପଣଙ୍କୁ ବେଇଜ୍ଜତ କଲାଭଳି ଗୋଟିଏ ହେଲେ ଶବ୍ଦ କହିନାହିଁ ।

ମୋଟରବାଲା : ବହୁତ ହେଇଗଲା, ବହୁତ ହେଇଗଲା । ହେ ଭଗବାନ ! ଗୁରୁ, ମୁଁ ହାରିଗଲି—ତୁ ଜିତିଗଲୁ, ବାସ୍ !

ମେନେଜର : ଚୁପ୍‌ରହ ବଜ୍ଜାତ୍ ! ମୁହଁରେ ବାଡ଼ବତା ଦେ ।

ବସନ୍ତରାମ : ତା'ହେଲେ ଠିକ୍‌ଅଛି—ଚୁପ୍ ରହୁଚି ।

ମେନେଜର : ନା-ନା, ଏ ମହାଶୟ ତୋ ଉପରେ ଯେଉଁ ଦୋଷ ଆରୋପ କରିଛନ୍ତି, ତୁ କ'ଣ ସେସବୁ ମାନି ନେଉଚୁ ? ସ୍ୱୀକାର କରୁଚୁ ?

ବସନ୍ତରାମ : ଆଜ୍ଞା, ମୁଁ କେମିତି ଭଲ ମାନିପାରିବି ?

ମେନେଜର : ତା'ହେଲେ ତୁ ନିର୍ଦ୍ଦୋଷ ?

ବସନ୍ତରାମ : ସୁପ୍ରସୁର ।

ମେନେଜର : ଦେଖ, ସବୁକଥା ଠିକ୍-ଠିକ୍ କହି ଦେ ।

ବସନ୍ତରାମ : ତା' ମାନେ ମିଛଟାକୁ ମୁଁ ମାନିନେବି ଏବଂ କ୍ଷମା ମାଗିବି—ଏଇଥିପା ତ ?

ମୋଟରବାଲା : ଦେଖିଲେ, ସେ କେମିତି ଓଲଟା ଜବାବ ଦଉଚି ?

ମେନେଜର : ବସନ୍ତରାମ ! ପଛରେ ପୁଣି କହିବୁନି ଯେ ମତେ ସତକଥା କହିବାକୁ ସୁଯୋଗ ଦିଆଗଲାନି । (ମୋଟରବାଲାକୁ)—ଆପଣ ଦୟାକରି ଅଭିଯୋଗ ଲେଖିଦିଅନ୍ତୁ, ଯାହାକି ତା ଫାଇଲ୍‌ରେ ରହିଯିବ । ତା'ର ଉପରେ ମୁଁ ମୋ ଅର୍ଡ଼ର ଲେଖିଦେବି । (ବସନ୍ତରାମ ପ୍ରତି) ତୁ କିଛି ଲେଖିକରି ବୟାନ୍ ଦେବାକୁ ଚାହୁଁ କି ?

ବସନ୍ତରାମ : ନା ଆଜ୍ଞା !

ମେନେଜର : ତା'ହେଲେ ଆଉ କିଛି କହିବୁ ?

ବସନ୍ତରାମ : ନା ।

ମେନେଜର : ଠିକ୍‌ଅଛି । ଯା' କାମ କର ।

ବସନ୍ତରାମ : ନମସ୍କାର । (ମୋଟର ମାଲିକକୁ) ନମସ୍କାର ।

( ବସନ୍ତରାମ ଚାଲିଗଲା । ମୋଟର ମାଲିକ ପକେଟରୁ କଲମ ବାହାର କରି ଅଭିଯୋଗ ଲେଖିଲେ । କ୍ରେଜ୍ ବାହାରୁ ସ୍ୱର ସବୁ ଶୁଣାଗଲା )

୧ମସ୍ୱର : ବସନ୍ତରାମ :

୨ୟସ୍ୱର : ବସନ୍ତରାମ !

୩ୟସ୍ୱର : ଆରେ ଦୋସ୍ତ, ଏ କି ପାଟିତୁଣ୍ଡ ହଉଥିଲା ?

ବସନ୍ତରାମ : କିଛି ନାହିଁ ।

୪ର୍ଥସ୍ୱର : ନା, ମେନେଜର ସାହାବ ତ ବହୁତ ଗର୍ଜୁଥିଲେ ।

୫ମସ୍ୱର : ଡରନା ମ ! ଗରଜିଲା ମେଘ ବରଷେନାହିଁ ।

୧ମସ୍ୱର : ବସନ୍ତରାମ ! ପ୍ରକୃତରେ କଥା କ'ଣ ?

ବସନ୍ତରାମ : କିଛି ନାହିଁ । ତମେ ସବୁ ନିଜ ନିଜ କାମ କର ।

ମୋଟରବାଲା : (ଅଭିଯୋଗପତ୍ର ଦେଇ) ଏବେ ତମେ ଜାଣ, ତମର କାମ ଜାଣୁ । ଏଇ ନିଅନ୍ତୁ । ମୁଁ ତ ନିଶ୍ଚିନ୍ତି କରିନେଲି ଯେ···

ମେନେଜର : (କଥା କାଟିକରି) ମୁଁ ବୁଝୁଚି ଯେ, ଆପଣଙ୍କ ମନରେ କି ଭାବନା ଆସୁଥିବ; କିନ୍ତୁ ମୋର ଅନୁରୋଧ, ଆପଣ ହଠାତ୍ କିଛି ନିଷ୍ପତ୍ତି କରନ୍ତୁନି । ଆପଣଙ୍କୁ ସବୁ ପ୍ରକାରେ ଖୁସି କରିଦିଆଯିବ । ଆମେ ଆପଣଙ୍କୁ ତ ବିରକ୍ତ କରିପାରିବୁନି ।

(ମୋଟର ମାଲିକର ପତ୍ନୀଙ୍କ ପ୍ରବେଶ । ହାତରେ ଦୁଇତିନୋଟା ପ୍ୟାକେଟ୍ ଧରି ଆସିଛନ୍ତି । )

ପତ୍ନୀ : କ'ଣ ମ ! ତମେ ତ ବହୁତ ଡେରି କରିଦେଲ । ଗାଡ଼ି ଏଯାଏ ହେଇନି ନା କ'ଣ ? ମୋର ମାର୍କେଟିଂ ତ ସରିଗଲାଣି ।

ମୋଟରବାଲା : ମେନେଜର ସାହାବ, ଏବେ ଅନୁମତି ଦିଅନ୍ତୁ । ବହୁତ ସମୟ ହେଇ ଗଲାଣି ।

ମେନେଜର : ହଁ-ହଁ, ବାସ୍ତବିକ ସମୟ ତ ବହୁତ ହେଇଗଲାଣି । ଦୟାକରି ଆପଣ ଯଦି ଆଉ ଦି' ମିନଟ୍ ବସନ୍ତେ, ନା, ମୁଁ ବହୁତ କୃତଜ୍ଞ ହୁଅନ୍ତି ! ଭଉଣୀ, ଆପଣ ମଧ୍ୟ ଟିକେ ବସନ୍ତୁ । (ମିନତିକରି) କେବଳ ଦି' ମିନଟ ପାଇଁ ।

ମୋଟରବାଲା : ଶୁଣନ୍ତୁ, ମୁଁ ବହୁତ ବିବ୍ରତ ହୋଇ ସାରିଲିଣି । ଏବେ ଦୟାକରି ମତେ ଯିବାକୁ ଦିଅନ୍ତୁ ।

ପତ୍ନୀ : ଗାଡ଼ି କ'ଣ ଏଯାଏ ଠିକ୍ ହେଇନି ?

ମେନେଜର୍ : ଠିକ୍ ହେଇଯାଇଛି ଭଉଣୀ—ବିଲ୍‌କୁଲ୍ ଠିକ୍ ହେଇଯାଇଛି । (ମୋଟର ମାଲିକ ପ୍ରତି) ବସନ୍ତରାମ ବିଷୟରେ ଆପଣ ମୋ ନିଷ୍ପତ୍ତି ଶୁଣିକରି ଯିବେ ।

ମୋଟରବାଲା : କ୍ଷମା କରିବେ, ଆମେ ଟିକେ ତରତର ଅଛୁ ।

ମେନେଜର : ଏଇ ହେଇଗଲା । (ଚପରାସୀକୁ) ଶୁଣ୍, ଟିକେ ବସନ୍ତରାମକୁ ଡାକି ଆଣ ! ଆଜ୍ଞା, ମୁଁ ଗୋଟାଏ ମିନଟ୍‌ରେ ଫଇସଲା ଶୁଣେଇ ଦଉଛି । (ବସନ୍ତରାମର ପ୍ରବେଶ) ବସନ୍ତରାମ, ତୁ ବହୁତ ବଡ଼ ଦୋଷ କରିଚୁ । ଆମର ଏତେ ବଡ଼ ପ୍ରତିଷ୍ଠିତ ଗ୍ରାହକଙ୍କୁ ଧୋକ୍‌କା ଦେଇଚୁ । ଶୂନ୍ୟଟାରେ ତୁ ତାଙ୍କଠାରୁ ପଇସା ଝଡ଼େଇବାକୁ ଚେଷ୍ଟାକରି କେବଳ ନିଜ ବେଇମାନୀର ପରିଚୟ ଦେଇଚୁ—ମୋ ମୁଣ୍ଡରେ ବି କଳଙ୍କ ବୋଳିଦେଇଚୁ । ତତେ ବର୍ତ୍ତମାନ ଡିସ୍‌ମିସ୍ କରାଗଲା । ଶୁଣିଲୁ ?

ବସନ୍ତରାମ : (ଆଶ୍ଚର୍ଯ୍ୟ ସହକାରେ) ଡିସ୍‌ମିସ୍···ଡିସ୍‌ମିସ୍ !!

ମେନେଜର : ହଁ, ଡିସ୍‌ମିସ । ତୋ ଭଳି ମିସ୍ତ୍ରିଙ୍କୁ ଗ୍ୟାରେଜରେ ରଖିବାଟା ନିଜ ଗ୍ରାହକଙ୍କ ପ୍ରତି ଅତ୍ୟାଚାର କରିବା ସଙ୍ଗେ ସମାନ । ବୁଝିଲୁ ?

ବସନ୍ତରାମ : କିନ୍ତୁ ଆଜ୍ଞା, ସେ କହୁଥିବା ଅପରାଧକୁ ମୁଁ ଅସ୍ୱୀକାର କରୁଚି ।

ମେନେଜର : କରିବୁ । ତୁ ଭଲା ସ୍ୱୀକାର କେମିତି କରିବୁ ?

ବସନ୍ତରାମ : ମୁଁ ସ୍ୱୀକାର କରୁଚି ଆଜ୍ଞା, ସ୍ୱୀକାର କରୁଚି । ଏବେ ଲୁଚେଇବାର ଚେଷ୍ଟା ବୃଥା ।

ମେନେଜର : (ଆଶ୍ଚର୍ଯ୍ୟ ସହ) ତୁ ନିଜ ଦୋଷ ସ୍ୱୀକାର କରୁଛୁ ? ତୁ ପ୍ରକୃତରେ ଧୋକ୍‌କା ଦେଇଚୁ ?—ମିଛ କହୁଚୁ ?

ବସନ୍ତରାମ : ହଁ ଆଜ୍ଞା, ମୁଁ ଧୋକ୍କା ଦେଇଚ—ମିଛ କହୁଚ ।

ମେନେଜର : ସତ ସତ କହୁଯା, ତୁ କ'ଣ ପ୍ରଥମେ ମିଛ କହୁଥିଲୁ ?

ବସନ୍ତରାମ : ସତ କହୁଚ, ମୁଁ ପ୍ରଥମେ ମିଛ କହୁଥିଲି । (ମୋଟର ମାଲିକ ଆଡ଼କୁ ନିର୍ଦ୍ଦେଶ କରି) ଏ ମହାଶୟ ଯାହା କିଛି ମୋ ବିଷୟରେ କହୁଛନ୍ତି, ଗୋଟି ଗୋଟି ଶବ୍ଦ ଠିକ୍ । ଆଉ ମୁଁ ଯାହା କିଛି କହୁଛି, ସେସବୁ ପୂରାପୂରି ଭୁଲ୍ ।

ସମସ୍ତେ : କଣ ?

ମେନେଜର : ତୁ ଏ କ'ଣ କହୁଚୁ ? ମତେ ପୁଣି ମିଛ ଶୁଣେଉଚୁ ?

ବସନ୍ତରାମ : ନା ଆଜ୍ଞା, ସତ କହୁଚ । ଯାହା କିଛି ମୁଁ ପ୍ରଥମେ କହୁଥିଲି, ତାହା ମିଛ ।

ମୋଟରବାଲା : ସତକଥା କୋଉଠି ଲୁଚି ରହିପାରିବ ?

ମେନେଜର : ବଦମାସ୍ ! କହ, ପ୍ରଥମେ ତୁ ଯାହା କହୁଥିଲୁ ତାହା ସତ । ସେସବୁ ମିଛ ନୁହେଁ !

ବସନ୍ତରାମ : ଆଜ୍ଞା, ଆପଣ ତ ଡିସ୍‌ମିସ୍ କରିଦେଲେଣି । ଏବେ କାହିଁକି ଆଉ ଡରିକରି ସତକୁ ମିଛ ବୋଲି କହିବ ବା ମିଛକୁ ସତ ବୋଲି କହିବ ?

ମୋଟରବାଲା : ମେନେଜର ସାହାବ ! ମୁଁ ଆପଣଙ୍କର ଏ ରହସ୍ୟ ବୁଝିପାରୁନାହିଁ । ଆପଣ କେଉଁଥିପାଇଁ ମିଛକୁ ସତ ବୋଲି ଶୁଣିବାକୁ ଚାହୁଁଛନ୍ତି । ଅର୍ଥାତ୍ ଆପଣ ମତେ ମିଛୁଆ ପ୍ରମାଣ କରିବାକୁ ଚାହୁଁଛନ୍ତି ?

ମେନେଜର : ନା ମହାଶୟ, କଦାପି ନୁହେଁ । କଥା କ'ଣ କି, ମୁଁ ଏହାର ବୟାନକୁ ଏତେ ପରିମାଣରେ ମିଛ ମଣିନଥିଲି । ମୋର ବିଶ୍ୱାସ ଥିଲା ଯେ, ନିଶ୍ଚୟ କିଛି ନା କିଛି ଭୁଲ୍ ବୁଝାମଣା ହୋଇଛି । ଆଉ ନିଜ ପଟରୁ ଆପଣ ଦୁହେଁ ହିଁ ସତ କହିବେ ।

ମୋଟରବାଲା : ତମେ ତ ମତେ ବେଶ୍ ହାତ ଦେଖେଇଲ । ଗୋଟାଏ ଖୁବ୍ ଭଲ ଖେଳ ଜମେଇଦେଲ ଏବଂ ଭଲଭାବରେ ମଜା ମାଇଲ ।

ମେନେଜର : କ୍ଷମା ମାଗୁଚ ହଜୁର ! ଏ କଥା କଦାପି ନୁହେଁ । ମୁଁ ଆପଣଙ୍କୁ ବହୁତ ସମ୍ମାନ କରେ । ଆମ କାରଖାନା ଆପଣମାନଙ୍କ ଯୋଗୁଁ ତ ଚାଲୁଚ; କିନ୍ତୁ ବ୍ୟବସାୟ ଭାରି କଠିଣ କଥା ।

ପତ୍ନୀ : ଆପଣ ବହୁତ ଚାଲାକ ମେନେଜର ସାହାବ !

ମୋଟରବାଲା : ତୁମ ଚାଲ୍ ମତେ ଏକବାରେ ଲଜ୍ଜିତ କରିଦେଲା ।

ମେନେଜର : (ହସିକରି) ଆପଣ ଠିକଏ ହେଲେ ଚନ୍ତାକରନ୍ତୁନି । ମୁଁ ତ ସବୁବେଳେ ଆପଣଙ୍କ ସେବାରେ ।

ମୋଟରବାଲା : ରିପୋର୍ଟ-ଫିପୋର୍ଟ କରିବା ସବୁ ବେକାର କଥା । ଚୁପ୍ ରହି ଗାଡ଼ି ଅନ୍ୟ କୋଉ ଓ୍ୱାର୍କସପ୍‌କୁ ନେଇ ଯାଇଥିଲେ ଠିକ୍ ହୋଇଥାଆନ୍ତା ।

ମେନେଜର : ସେ କଥାର ନାଁ ମୁହଁରେ ଧରନ୍ତୁ ନାହିଁ ମାଲିକ୍ ! ହଁ, ମୋପାଇଁ ଆଉ ଟିକିଏ ଅପେକ୍ଷା କରନ୍ତୁ । ଦେଖିବେ ଏ ସମସ୍ୟାର ଶେଷ କେଉଁଠି ହେଉଛି ।

ମୋଟରବାଲା : ଏବେ ତ ଦୁ'ପଇସାର ମୁଣ୍ଡ ଏ ମିସ୍ତ୍ରି ଆଗରେ ମୋର ମହତ୍ତ୍ୱ ବାଟରେ ପକେଇଦେଲ । ପୁଣି···

ମେନେଜର : ନା ମହାଶୟ, ଏବେ ସୁଦ୍ଧା ଆପଣ ଏହାର ଶେଷ ଦେଖିନାହାନ୍ତି । 'ମୁଲ୍ଲ ମାଇଲେ ଯିବ ସର, ଦେବଙ୍କ ସଙ୍ଗେ କଂପା କଳି ?'

ବସନ୍ତରାମ : ତା'ହେଲେ ମତେ କ'ଣ ଏ ଭଳି ମାରଦେବେ ?

ମେନେଜର : ନା, ତୁ ଯେଉଁ ଦଣ୍ଡର ଅଧିକାରୀ ତତେ ସେଇ ଦଣ୍ଡ ଦିଆଯିବ । ତତେ ଡିସ୍‌ମିସ୍ କରାଯିବ ।

ବସନ୍ତରାମ : ସତ କହିବ ନା ମିଛ କହିବ । ସବୁ କଥାରେ ତ ଡିସ୍‌ମିସ୍ । ଭଗବାନଙ୍କ ବରାଦ ।

ମୋଟରବାଲା : ନା, ଦୁଇ ଦିନ ପରେ ସେ ତମକୁ ମାଫ୍ କରଦେବେ ।

ମେନେଜର : ନା ମହାଶୟ ! ଏହା ମୋର କଡ଼ା ହୁକୁମ ।

ମୋଟରବାଲା : (କଥାରେ କଥା ଯୋଡ଼ି) ବା କୌଣସି ଏକ ଗୁଲ୍ ।

ମେନେଜର : (ହସିକରି) ମୁଁ ବରଂ ମିଛୁଆ ହୁଏ; ମାତ୍ର ଆପଣ ମତେ ଏତେ ଅବିଶ୍ୱାସ କରନ୍ତୁନି । ପ୍ରଥମେ ପ୍ରଥମେ ତା' ବେଇମାନୀ ଓ ମିଥ୍ୟା ଉପରେ ମୋର ପୂରା ବିଶ୍ୱାସ ନଥିଲା । ସେ ଯାହାହେଉ, ମୋର ଏ ଫଇସଲା ପଥରରେ ଗାର ଭଳି ଅପରିବର୍ତ୍ତିତ । କାରଣ ସେ ନିଜେ ତା'ର ମିଥ୍ୟାଗିରି ଓ ଅପରାଧକୁ ମାନିନେଲଣି । ବର୍ତ୍ତମାନ ଚିନ୍ତାର ଅବକାଶ ନାହିଁ । ଏଭଳି ବେଇମାନ କାରିଗରଙ୍କ ପାଇଁ ଆମ କାରଖାନାରେ ଆଦୌ ସ୍ଥାନ ନାହିଁ ।

ମୋଟରବାଲା : ହଉ ନମସ୍କାର । ଆମକୁ ଯିବାକୁ ଦିଅ । (ପତ୍ନୀକୁ) ଆସ ଯିବା ।

ମେନେଜର : ଟିକିଏ ରୁହନ୍ତୁ । (ଚପରାସୀକୁ) ତୁ ଯାଇ ଦୁ'ଟା ବମ୍‌ଟୋ ଆଣ ତ ଶୀଘ୍ର ।

ବସନ୍ତରାମ : କ'ଣ ଆଜ୍ଞା, ଏଥର ଆପଣଙ୍କ ମନ ଥଣ୍ଡା ହେଲା ତ ?

ମୋଟରବାଲା : ମେନେଜର ସାହାବ ! ମୁଁ ଏଭଳି କଥା ଶୁଣିବାକୁ ଅପେକ୍ଷା କର ପାରିବିନି ।

ବସନ୍ତରାମ : (ଟିକିଏ ରାଗିଯାଇ) ଆପଣଙ୍କୁ ରହିବାକୁ ହେବ—ମୋର ବହୁତ କିଛି କହିବାର ଅଛି ।

ମେନେଜର : ଖବରଦାର, ଚୁପ୍‌ରହ ।

ବସନ୍ତରାମ : ଚୁପ୍ ରହିବ ? ଡିସ୍‌ମିସ୍ କରିସାରି ମତେ ଚୁପ୍ ରହିବାକୁ ହୁକୁମ ଦେଉଛ ? ତମେ ମୋ ମୁହଁରୁ ଦାନା ଛଡ଼େଇନେଇଚ, ମୋତେ ବରବାଦ୍ କରିଦେଇଚ—ପୁଣି ହୁକୁମ ଦେଉଚ ମୁଁ ଚୁପ୍ ରହିବ ? ମୋର ତ ପିଲା-ପ୍ରିଲି ଭୁଖା ବାନ୍ଧୁଚ ।

ମେନେଜର : ତୁ ତୋ କାଲକର୍ମର ଦଣ୍ଡ ପାଇଛୁ ।

ବସନ୍ତରାମ : ସତ କହିବାର ଦଣ୍ଡ ।

ମେନେଜର : ନା, ମିଛ କହିବାର—ଧୋକ୍‌କା ଦେବାର—ବେଇମାନୀ କରିବାର ।

ବସନ୍ତରାମ : ବାପ୍, ଏଇ କଥାପାଇଁ ମତେ ଡିସ୍‌ମିସ୍ କରିଦେଲେ । ଟିକିଏ ଦୋଷ ପାଇଁ ଏତେ ବଡ଼ ଦଣ୍ଡ ?

ମେନେଜର : ଟିକିଏ ଦୋଷ ? କ'ଣ ଭାବୁଚୁ କି ତୁ ? ତା'ହେଲେ ତୋ ଦୃଷ୍ଟିରେ ମିଛକହିବା, ଅପରାଧ କରିବା ଓ ବେଇମାନି କରିବା ଆଉ ସାଧାରଣ ଦୋଷ ?

ବସନ୍ତରାମ : ନ ହେଇପାରେ; କିନ୍ତୁ ଏ ବଡ଼ ବଡ଼ କାରଖାନା, ଏ ଗୃହଚକ୍ୟାଳର କୋଠା, ଧନ ସମ୍ପତ୍ତି—କ'ଣ ଏସବୁ ତିଆରି ହେଲାବେଳେ କେଉଁହେଲେ କେବେ ମିଛ କହିନାହିଁ ? ଇଏ କ'ଣ ସଚ୍ଚୋଟତା ଓ ସାଧୁତାରେ ତିଆରି ହେଇଚି ? ଅସତ୍ୟ ଓ ବେଇମାନିର ଧନ ବଢ଼ାଅ, ଲାଞ୍ଚ ଖାଅ, ବ୍ଲାକ୍ ମାର୍କେଟିଂ କରି ନିଜ ଭଣ୍ଡାର ଭର୍ତ୍ତିକର, ନିଜ ଶକ୍ତିର ପ୍ରଭୁତ୍ୱ ଦେଖାଅ । ସେଥିରେ କାହାର ଶକ୍ତି ଅଛି 'ମିଛ' ବୋଲି ଶବ୍ଦଟା ତାଙ୍କ ଆଭିଜାତ୍ୟ ବିରୁଦ୍ଧରେ ମୁହଁରେ ଧରିପାରିବ ? ଧନବାନ୍ ଓ ଶକ୍ତିମାନଙ୍କର ମିଛ, ମିଛ ନୁହେଁ । ମିଛଟା କେବଳ ଗରିବ ଆଉ କାଙ୍ଗାଳଙ୍କ ଭାଗରେ ପଡ଼େ । ବାସ୍ !

ମେନେଜର : ଯା-ଯା, ଦୂର୍ ହେଇଯା ଏଠୁ ! ମୁଁ ଏଠି ଭାଷଣ ଶୁଣିବାକୁ ଚାହେଁନା । ତୋର ଅଶିଷ୍ଟତା ବେଶ୍ ବଢ଼ିଗଲାଣି ।

ବସନ୍ତରାମ : (ପରିହାସ ବ୍ୟଙ୍ଗମିଶା ଗଳାରେ) ମୁଁ କାଙ୍ଗାଳଟାଏ, —ଅଶିଷ୍ଟତା ଦେଖାଇବ ? ମୋର ଏତେ ଶକ୍ତି କାହିଁ ?

ମେନେଜର : ତା'ହେଲେ ତୁ ଚୁପ୍‌ହେଇ ଏଠୁ ଚାଲିଯା ।

ବସନ୍ତରାମ : ମୁଁ ଚାଲିଯିବି; କିନ୍ତୁ ଆପଣଙ୍କୁ ମୋର ଗୁହାରି ଶୁଣିବାକୁ ହେବ ।

ମୋଟରବାଲା : ସୀମା ଟପିଗଲା । ଇଏ ମିସ୍ତ୍ରି ନା··· ?

ବସନ୍ତରାମ : (କଥା କାଟିକରି)···ହଁ, ଇଏ ପୋଡ଼ାମୁହାଁ; କିନ୍ତୁ ଆପଣଙ୍କର···ତମେ ଧନୀଲୋକ, ବଙ୍ଗଳାରେ ରହୁଚ, ଭଲ ଖିଆ ପିଆ କରୁଚ, ମଖମଲ ବିଛଣାରେ ଶୋଉଚ—ତମ ଲାଗି ଜୀବନଟା ହେଉଛି ଅଯୁସ । ଭୋକ, ଶୋଷ ଓ ଗରିବୀ କ'ଣ—ତମେ କୁଆଡ଼ୁ ବୁଝିବ ?

ମୋଟରବାଲା : ଓହୋ ! କି ଅଡ଼ୁଆରେ ପଡ଼ିଲି ମଣିଷ !

ବସନ୍ତରାମ : (ମେନେଜରଙ୍କୁ) ଆପଣ ମଡେ ବେଇମାନ ଧରନେଇ ଡିସ୍‌ମିସ୍ କରଦେଇଛନ୍ତି । ମୋ ପିଲଙ୍କ ମୁହଁରୁ ଆଧାର ଛଡ଼େଇ ନେଇଛନ୍ତି । ଖୁବ୍ ଭଲ କାମ କରିଛନ୍ତି । (ମୋଟର ମାଲିକଙ୍କୁ) ଆଉ ଆପଣ ଖୁବ୍ ଖୁସି ହେଉଥିବେ ମହାଶୟ ! କାରଣ ଗୋଟାଏ ବଦମାସ୍ ବେଇମାନକୁ ଆଚ୍ଛା ପାନେ ଦେଇପାରିଛନ୍ତି । ଆପଣମାନେ ଘରକୁ ଯାଇ ମନଭରି ପେଟେ ଖାଆନ୍ତୁ । ଆପଣମାନଙ୍କୁ ଈଶ୍ୱର ଭଲରେ ରଖନ୍ତୁ ।

ମେନେଜର } (ଏକ ସାଙ୍ଗରେ) ଓ ହୋ ! ଏବେ ଟିକେ ଚୁପ୍ ହୁଅ ।
ମୋଟରବାଲା }

ବସନ୍ତରାମ : ଇଆଡ଼େ ମୁଁ ପୋଡ଼ାମୁହାଁ ଭାଗ୍ୟକୁ କନ୍ଧେଇ, ଆପଣମାନଙ୍କୁ ବଧେଇ ଜଣେଇ ଘରକୁ ଫେରିବି । ପିଲାମାନେ ପଇସା ମାଗିବାକୁ ଆସି ମୋଠୁଁ ମାଡ଼ ଖାଇବେ । ଘରବାଲୀ ଛଡ଼େଇ ନବାକୁ ଆସି ସେ ବି ମାଡ଼ ଖାଇବ । ମୁଁ ମଣିଷ, ଭାଗ୍ୟ ଏବଂ ଭଗବାନ —ସମସ୍ତଙ୍କୁ ପିଟିବି । ଶେଷରେ ନିର୍ବାହ କଅଁଳ ଛୁଆଗୁଡ଼ାକ ନ ମରିବାପାଇଁ କୌଣସି ଭଦ୍ରଲୋକର ପକେଟ୍ କାଟିବି ।

ମେନେଜର : ତୁ ନର୍କକୁ ଯା, ଆଉ ଯାହା ମନକୁ ଆସୁଚି କର । ତୋର ଏ କନ୍ଦାକଟା ବନ୍ଦ କର । ପ୍ରଥମରୁ ବହୁତ ଶୁଣି ସାରିଲୁଣି ।

ବସନ୍ତରାମ : ଏବେ ଆଉରି ଅଛି । ସେସବୁକୁ ମଧ୍ୟ ଆପଣଙ୍କୁ ଶୁଣିବାକୁ ପଡ଼ିବ ।

ମୋଟରବାଲା : (ପତ୍ନୀକୁ) ଉଠ ହେ, ଚାଲ ଯିବା ।

ପତ୍ନୀ : ରୁହ, ମୁଁ ଶୁଣିସାରି ଯିବି । ହଁ, ମିସ୍ତ୍ରି କହ, କହ—ଶୀଘ୍ର କହ ।

ମୋଟରବାଲା : ଯା-ଯା, ବହୁତ ଶୁଣି ସାରିଲଣି ।

ମେନେଜର : ଏବେ ଚୁପ୍‌କରି ଚାଲି ଯା । ନ ହେଲେ···

ବସନ୍ତରାମ : ନହେଲେ, ଫାଶୀ ଲଗେଇଦେବେ ମତେ ? ଲଗାଇ ଦିଅନ୍ତୁ ।

ପତ୍ନୀ : ନା-ନା ମିସ୍ତ୍ରି, କୁହ । କହି ଚାଲ ।

ବସନ୍ତରାମ : ବିବିଜୀ, ଆପଣ ମା । କ୍ଷମା କରିବେ, ମୋର ଦୋଷ ବେଇମାନୀ ନୁହେଁ, ଗରିବୀ । ଅନ୍ଧାର ଘରେ ରୁହେ । ଦିନସାରା ପରିଶ୍ରମ ଓ କ୍ଲାନ୍ତ ପରେ ପୋଡ଼ା-ଶୁଖିଲା ଯାହା ମିଳିଲା, ଚଳିଲା । ଦୁଧଘିଅ ତ ଆମେ ଶୁଙ୍ଘିବାକୁ ପାଉନା । ଏଇ ଦେଖନ୍ତୁ (କାମିଜ୍ ଦେଖେଇ) ମୋ କାମିଜ୍‌ର ଅବସ୍ଥା । ଗଂଜି ମଧ୍ୟ ମଇଳାରେ ସଢ଼ି ଯାଇଛି । ସ୍ତ୍ରୀ ପିଲାଙ୍କ ଲୁଗାପଟା ବି ଫଟା-ପୁରୁଣା । ମାତ୍ର ଈଶ୍ୱର ଜାଣନ୍ତି— । ମୁଁ ଏସବୁ ଜିନିଷପାଇଁ କୌଣସି ଦିନ ବେଇମାନୀ କରିନାହିଁ; କିନ୍ତୁ ବେମାରି ଆଉ ଭୋକକୁ କ'ଣ କରିବି ? ସ୍ତ୍ରୀ ଜରରେ ବିଛଣାରେ ପଡ଼ିଛି, ପିଲାମାନେ ଭୋକରେ ଛଟପଟ ହେଉଛନ୍ତି । ଦୁଧ ବା ଔଷଧପାଇଁ ପଇସା ନ ଥିଲା । ଜଣେ ମିସ୍ତ୍ରିଭାଇଠୁଁ ଉଧାର ମାଗିଲି; କିନ୍ତୁ ସେ ବି ମୋ ଭଳି କାଙ୍ଗାଳଟେ । ଶେଷରେ ଏଇଆ ମନସ୍ଥ କଲି ଯେ, ଆପଣ ଧର୍ମାଲୋକ । ଦି'-ଚାରି ଟଙ୍କାକୁ

କ'ଣ ଆପଣଙ୍କର ଖାତିର୍ ଥିବ ? ଆପଣଙ୍କଠାରୁ ପଇସା ନେଇ ଔଷଧପତ୍ର ନେଇ ଆସିଲେ କ୍ଷତି କ'ଣ ? ବୁଡ଼ିଯାଉଥିବା ଲୋକର କୁଟାଖିଅକୁ ଭରସା । ଅସୁବିଧାରେ ମିଛ କହିଲି ଏବଂ ବେଇମାନି ମଧ୍ୟ କଲି । ବାସ୍, ଏଇଯା ମୋର ଦୋଷ ।

ପତ୍ନୀ : (ମେନେଜରଙ୍କୁ) ଆପଣ ଏହାର ବେତନ କାହିଁକି ବଢ଼ଉନାହାନ୍ତି ? କ'ଣ କରିବ ବିଚ୍ରା—ଭୋକରେ ମରିଯିବ କିନା ।

ମୋଟରବାଲା : ଗୁଡ଼ ହେ, ତମେ ଗୋଟାଏ ବେଇମାନର ଓକିଲାତି କରିବାକୁ ଲାଗିଲଣି ।

ମେନେଜର : ଏଇ ବେଇମାନଗୁଡ଼ା ତ ଆମକୁ ବଦନାମ କରୁଛନ୍ତି ।

ବସନ୍ତରାମ : କ୍ଷମାକରିବେ ମହାଶୟ ! ଆମ ବେଇମାନିଗୁଡ଼ା ଶୀଘ୍ର ଆପଣଙ୍କ ଆଖିରେ ପଡ଼ିଯାଉଚି; ମାତ୍ର ଆପଣ କେବେ ନିଜ କଥାକୁ ଦେଖିଛନ୍ତି ? ମୁଁ ମଧ୍ୟ ଜାଣେ ଏଠି ଯାହାସବୁ ହଉଚି—ଆମେ ତ ଅନ୍ଧ ନୋହୁ ? ହେଲେ କଥା କ'ଣ କି, ଆପଣଙ୍କୁ ପ୍ରଶ୍ନ କରିବାକୁ ଲୋକ କେହି ନାହାନ୍ତି ।

ମେନେଜର : (ଗର୍ଜିକରି) ମୁହଁ ବନ୍ଦକର ବେଇମାନ ! ଚାଲିଯା ଏଠୁ । ଦୂର ହେଇଯା ।

ମୋଟରବାଲା : ବହୁତ ମୁହଁ ଫୁଟାଣି ଏ ବେଇମାନଟାର । କିନ୍ତୁ ନା ଏ ମୁଣ୍ଡବ୍ୟଥା ? ଆପଣ ଯାଙ୍କୁ ଏଠି କାହିଁକି ରଖିଛନ୍ତି ?

ମେନେଜର : କ'ଣ କହୁଛନ୍ତି ଆଜ୍ଞା, ମୋର ତ ଖାଲି ଦୟା ଆସିଯାଉଚି । ନହେଲେ ଏ ଅଭଦ୍ରଟାକୁ···

ବସନ୍ତରାମ : ମୋ ଉପରେ ବହୁତ ଦୟା କରିଛନ୍ତି । ମୋର ଭୋକିଲା ପିଲାଙ୍କ ମୁହଁରୁ ରୁଟି ଛଡ଼େଇ ନେଇଛନ୍ତି ।

ପତ୍ନୀ : ମେନେଜର ସାହେବ ! ଆପଣ ତାକୁ ବାହାର କରନ୍ତୁନି । ବିଚ୍ରା କୁଆଡ଼େ ଯିବ ? କ'ଣ କରିବ ?

ମୋଟରବାଲା : ତମେ ଚୁପ୍ ରୁହ ।

ମେନେଜର : ଦେଖନ୍ତୁ ତ ବିବିଜୀ, କେଡ଼େ ଯୋବର୍ ବେହିଆ ମୁହଁ ଏ ବେଇମାନର ।

ବସନ୍ତରାମ : ତେବେ ଏହାକୁ କଇଁଚରେ କାଟି ଫିଙ୍ଗି ଦେଉ ନାହାନ୍ତି । ମୋର ତ ପ୍ରତି ଲୋମ ଚିତ୍କାର୍ କରି କହିବ—ତମେ ବି ବେଇମାନ୍, ତମେ ବେଇମାନ । ବେଇମାନିରେ ମିଛ ବିଲ୍ ତିଆରି କରୁଚ ଏବଂ ଲୁଟି କରୁଚ ।

(ଏତିକିବେଳେ ବୁଟ୍-ସୁଟ୍ ପିନ୍ଧା ଜଣେ ଲୋକ ଆସିଲା । ସେ ଗୋଟିଏ ବୀମା କମ୍ପାନିର ମ୍ୟାନେଜର । )

ବୀମା ମେନେଜର : ହ୍ୟାଲୋ ମେନେଜର ସାହେବ ! କ୍ଷମା କରିବେ—ବଡ଼ବାବୁ ସାହେବଙ୍କ ଗାଡ଼ି ମରାମତିର ଏଇ ଯେଉଁ ବିଲ୍ ଆପଣ ପଠାଇଥିଲେ, ସେ ବିଷୟରେ ଆମ ହେଡ୍ କ୍ୱାର୍ଟରରୁ ପୁଣି ବାରମ୍ବାର ଖୋଳତାଡ଼ ହେଉଛି । ମତେ ଏ ବିଷୟରେ ଜଣାଇବାକୁ

ପଡ଼ିବ ।

ମେନେଜର : କି କଥା ? ମୁଁ ତ ମୋଟେ ବୁଝିପାରୁନି । (ବିବ୍ରତ ହୋଇ ଯାଇଥିଲେ । )

ବୀମା ମେନେଜର : କଥା ଏତିକି ଯେ, ବଡ଼ବାବୁ ସାହେବଙ୍କ ଦୁର୍ଘଟଣାଗ୍ରସ୍ତ ଗାଡ଼ିର ଆପଣ ଯେଉଁ ୭୪୯ ଟଙ୍କାର ବିଲ୍ ପଠାଇଥିଲେ, ସେ ବିଷୟରେ ମତେ······

ମେନେଜର : ଆଚ୍ଛା—ଆଚ୍ଛା···ସେ ବିଷୟରେ ? ଏବେ ମୁଁ ବହୁତ Busy. କାଲି ମୁଁ ନିଜେ ଆପଣଙ୍କ ଅଫିସରେ ହାଜର୍ ହେବି । ସେତିକିବେଳେ ମୁଁ ସବୁକଥା ବୁଝେଇ ଦେଇ ପାରିବି ।

ବୀମା ମେନେଜର : ନିଶ୍ଚୟ ଆସିବେ, ନହେଲେ ମତେ ପୁଣି ଆସିବାକୁ ପଡ଼ିବ ।

ମେନେଜର : ଆପଣ ଚିନ୍ତା କରନ୍ତୁନି । ମୁଁ ଆପଣଙ୍କୁ ସମ୍ପୂର୍ଣ୍ଣ ଆଶ୍ୱସ୍ତ କରାଇଦେବି । (ବୀମା ମେନେଜରଙ୍କର ପ୍ରସ୍ଥାନ)

ବସନ୍ତରାମ : (ଅଭିନେତାର ହସ ହସି) ମହାଶୟ, ବୁଝେଇବା ପାଇଁ ମୁଁ ମଧ୍ୟ ସାଙ୍ଗରେ ଯିବି । ଡାଇନାମୋର ମରାମତି ତ ମୁଁ କରିଥିଲି । ବରଂ ନୂଆ ପକେଇଥିଲି ।

ମୋଟରବାଲା : ମେନେଜର ସାହେବ ! କଥାଟା ତ ଜାଣିଲେ । ମୋ ମତ ଯଦି ଗ୍ରହଣ କରିବେ, ତେବେ ଯେତେ ବେଇମାନ ମିସ୍ତ୍ରି ଅଛନ୍ତି, ତାଙ୍କୁ ବାଛିକରି ବିଦା କରିଦିଅନ୍ତୁ । ନହେଲେ ଆପଣଙ୍କ ଓ୍ୱାର୍କସପ୍‌ର ବହୁତ ବଦନାମ ହବ ।

ବସନ୍ତରାମ : ମହାଶୟ ଖୁବ୍ ଭଲ ଉପଦେଶ ଦେଉଛନ୍ତି । ଭଦ୍ରଲୋକ ଗୋଟିଏ ନିଷ୍ଠାପର ଅଫିସର ଭଳି ମନେହେଉଛନ୍ତି । ଗୋଟାଏ ସରକାରୀ ଆଦେଶନାମା ବାହାରକରି ଦଉନାହାନ୍ତି—ଯେତେ ମିସ୍ତ୍ରି ଅଛନ୍ତି ତାଙ୍କପାଇଁ ପାଣି ପବନ ବନ୍ଦ । ଖୁବ୍ ଭଲହୁଅନ୍ତା ! ଆପଣା ଛାଏଁ ସେମାନେ ମରିଯାଆନ୍ତେ । ମିସ୍ତ୍ରି ରହନ୍ତେ ନାହିଁ କି ବେଇମାନି ହୁଅନ୍ତାନାହିଁ ।

ମୋଟରବାଲା : ବାସ୍, ମେନେଜର ସାହେବ, ବହୁତ ହେଇଗଲା । ବର୍ତ୍ତମାନ ଯିବାକୁ ଦିଅନ୍ତୁ । ଏବେ ଅଧିକକାଳ ଅଟକିବା ସମ୍ଭବ ନୁହେଁ । (ନିଜ ସ୍ତ୍ରୀକୁ) ଆସ ହେ, ଯିବା ।

ମେନେଜର : (ମିସ୍ତ୍ରିକୁ) ବେଇମାନ୍ ବଦ୍‌ମାସ୍, ପାଟି ବନ୍ଦକର । ବାହାରିଯା ଏଠୁ । (ମୋଟର ମାଲିକଙ୍କୁ) ମୁଁ ଆପଣଙ୍କ ନିକଟରେ ଖୁବ୍ ଲଜ୍ଜିତ । କିନ୍ତୁ ଆପଣ ବିରକ୍ତ ହୁଅନ୍ତୁ ନାହିଁ । ଏଇ ବେଇମାନ କଣ୍ଢାକୁ ମୁଁ ଠିକ୍ ରୁପେ କାର୍ଡ଼ ଫିଙ୍ଗିଦଉଚି । ପୁଣି କେବେ ଆପଣ ତାକୁ ଏଠି ଦେଖିବାକୁ ପାଇବେନାହିଁ । ଯେଉଁ କଷ୍ଟ ଆପଣଙ୍କୁ ହେଇଚି, ସେଥିପାଇଁ କ୍ଷମା ମାଗିନଉଚି ।

(ମୋଟର ମାଲିକ ଏବଂ ତାଙ୍କ ପତ୍ନୀ ଯିବାକୁ ଉଦ୍ୟତ ହେଲାବେଳେ ଗୋଟିଏ ପୋଲିସ ଇନ୍‌ସପେକ୍ଟର ଭିତରକୁ ଆସିଲେ । ଏମାନେ ବାହାରକୁ ଚାଲିଗଲେ । )

ଇନ୍‌ସପେକ୍ଟର : କ୍ଷମା କରିବେ, ରାୟ ସାହେବ ଜ୍ୱାଳା ଦାସ ଏଠିକି ଆସିଥିଲେ କି ?

ମେନେଜର : କୁହନ୍ତୁ, କଥା କ'ଣ ? ସେ ଏଇ ଆଗେ ଆଗେ ତ ଗଲେ । ଏବେ ଏଇଠି ଥିବେ ଯେ । ଯଦି ଦରକାର ମନେ କରୁଛନ୍ତି, ତାଙ୍କୁ ଡାକିବି କି ? (ଚଉକି ଦେଇ) ବସନ୍ତୁ । (ମେନେଜର ଦ୍ୱାର ପର୍ଯ୍ୟନ୍ତ ଆସି ଡାକିଲା)—ରାୟ ସାହେବ ! ରାୟ ସାହେବ ! ଟିକିଏ ଆସିବେ କି ? କେବଳ ଗୋଟାଏ ମିନିଟ ପାଇଁ ।

ମୋଟରବାଲା : (ଫେରିଆସି) ଭାଇ ମେନେଜର ସାହେବ ! ବହୁତ ଡେରି ହେଇଗଲାଣି । ପ୍ରଥମରୁ ହିଁ ଲେଟ୍ । କୁହନ୍ତୁ ।

ମେନେଜର : ଇନ୍‌ସପେକ୍ଟର ସାହେବ ଆପଣଙ୍କୁ ଖୋଜୁଛନ୍ତି ।

ଇନ୍‌ସପେକ୍ଟର : ନମସ୍କାର ଆଜ୍ଞା ! ଆଜି ବହୁତ ଆପଣଙ୍କୁ ଖୋଜିଲିଣି । ଭାଗ୍ୟ ଭଲ, ଶେଷରେ ଖୋଜି ଖୋଜି ପାଇଗଲି ।

ମୋଟରବାଲା : ହଉ ହେଲା, କାମ କ'ଣ କୁହନ୍ତୁ । ବହୁତ କଷ୍ଟ ହେବଣି ଆପଣଙ୍କୁ ।

ଇନ୍‌ସପେକ୍ଟର : ନା—ନା, ଇଏ ତ ଆମର ସବୁଦିନିଆ କାମ । (ପକେଟରୁ ଖଣ୍ଡିଏ କାଗଜ କାଢ଼ି) କ୍ଷମା କରିବେ—ଏଇଟା ଆପଣଙ୍କ ନାଁରେ ୱାରେଣ୍ଟ । ହିଁ···

ମୋଟରବାଲା : (ବିବ୍ରତ ହୋଇ କଥା ମଝିରେ କହି ଉଠିଲା) ୱାରେଣ୍ଟ ? ମତେ ଗିରଫ କରିବାର ୱାରେଣ୍ଟ ?

ଇନ୍‌ସପେକ୍ଟର : ନା, ଆପଣଙ୍କୁ ଗିରଫ କରିବାର ୱାରେଣ୍ଟ ନୁହେଁ । କଥାଟା, ଆପଣଙ୍କ ଗାଡ଼ି ଖାପ୍‌ଗ୍ରରେ ଅଛି । (ହୁଇସିଲ୍ ବଜାଇ) ଡ୍ରାଇଭର ! ଡ୍ରାଇଭର !! (ପୁଲିସ ପୋଷାକ-ପିନ୍ଧା ଏକ ଡ୍ରାଇଭର ଆସି) ଦେଖ, ରାୟ ସାହେବଙ୍କ ଗାଡ଼ିରେ ବସ । ରାୟ ସାହେବ ! ଦୟାକରି ଗାଡ଼ିର ଚାବିଟା ଦେଇ ଦିଅନ୍ତୁ ।

ମୋଟରବାଲା : ହେଲେ କଥାଟା କଣ ? କଣ ହେଇଚି ? ମୋ ଗାଡ଼ିକୁ ଆପଣ କାହିଁକି ନେଇ ଯାଉଛନ୍ତି ?

ଇନ୍‌ସପେକ୍ଟର : ସି. ଆଇ. ଡି. ପୋଲିସରୁ ଖବର ମିଳିଛି ଯେ, ଆପଣ ଗାଡ଼ିଟିକୁ ଲାଞ୍ଚରେ ପାଇଛନ୍ତି । ପ୍ରାରମ୍ଭିକ ରିପୋର୍ଟ ମିଳିସାରିଛି । ବର୍ତ୍ତମାନ ପାଇଁ ଆପଣଙ୍କ ଗାଡ଼ି ପୁଲିସ ଜିମାରେ ରହିବ ।

ବସନ୍ତରାମ : ମହାଶୟ, ତା' ଉପରଟା ତ ମୁଁ ଠିକ୍ କରିଛି ।

ମୋଟରବାଲା : ଚୁପ୍ ବେଇମାନ !

(ମୋଟରବାଲାର ଶେଷ ଶବ୍ଦ ସହ ପରଦା ପତନ ।)

□□□

# ପାତ୍ର

ମାନସିଂହ : ମହାରାଜା ଗଙ୍ଗାପୁର

ବିଜୟସିଂହ : ଯୁବରାଜ

ବିଶ୍ୱନାଥ : ମନ୍ତ୍ରୀ

ରାଜେଶ୍ୱରୀ : ଜହର ବ୍ରତରୁ ବଞ୍ଚିଥିବା ଖାନପୁରର ମହାରାଣୀ, ଯିଏ ମହାରାଜା ମାନସିଂହଙ୍କ ଶରଣାର୍ଥିନୀ ।

[ ରାଜଭବନର ଗୋଟିଏ କକ୍ଷ । ଆଭିଜାତ୍ୟଭରା ସାଜସଜ୍ଜାରେ ତାହା ଏଭଳି ସଜ୍ଜିତ ଥିଲା, ଯେଭଳି ରାଜଭବନସୁଲଭ କକ୍ଷର ହେବା ଉଚିତ । ମହାରାଜା ମାନସିଂହଙ୍କ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଓ ଯୁବରାଜ ବିଜୟସିଂହ ଅତ୍ୟନ୍ତ ଗମ୍ଭୀରତାର ସହ କଥାବାର୍ତ୍ତା କରୁଥିବା ଦେଖାଗଲା । ]

ବିଜୟସିଂହ : ମନ୍ତ୍ରୀ ମହାଶୟ, ଅତ୍ୟନ୍ତ ଲଜ୍ଜାର କଥା ଯେ, ରାଜକୁମାରୀଙ୍କ ବୟସ ଏଯାଏ ଷୋହଳ ବର୍ଷ ହୋଇନି ।

ବିଶ୍ୱନାଥ : ଆଉ ଆମକୁ ଏକଥା ମଧ୍ୟ ଠିକ୍ ରୂପେ ଜଣାନାହିଁ ଯେ, ସେ ଖାନପୁର ରାଜବଂଶର କି ନା । ସେମାନେ ଯାହା କହୁଛନ୍ତି—(P. use) । ସାଧାରଣ ଲୋକଙ୍କ ଧାରଣା, ରାଜା ସଂଗ୍ରାମ କରିବାକୁ ଯିବା ପୂର୍ବରୁ ସମସ୍ତ ରାଜଲଲନା ଜହରରେ ଜଳି ମରିଥିଲେ ।

ବିଜୟସିଂହ : ମୋର ବିଶ୍ୱାସ, ସେ ଖାନପୁର ରାଜବଂଶର । ତାଙ୍କ ବିଷୟରେ ଶୁଣିଥିବା ସବୁକିଛି ସତ ।

ବିଶ୍ୱନାଥ : ଆପଣ କେମିତି ଜାଣିଲେ କୁମାର ?

ବିଜୟସିଂହ : ରାଜେଶ୍ୱରୀ ମୋତେ ଏ ବିଷୟରେ ବଳିଷ୍ଠ ପ୍ରମାଣ ଦେଇଛନ୍ତି । ମନ୍ତ୍ରୀ ମହାଶୟ ! ରାଣୀମାନେ ହିଁ ରାଜେଶ୍ୱରୀ ଭଳି ସୁନ୍ଦରୀ, ଶିକ୍ଷିତା ଏବଂ ଗୁଣିକ ହେବା ଉଚିତ ।

ବିଶ୍ୱନାଥ : ସତ କଥା । ନିଜ ବୟସ ତୁଳନାରେ ରାଜେଶ୍ୱରୀ ଅତ୍ୟନ୍ତ ସୁନ୍ଦରୀ । କେବଳ ରାଜାମାନଙ୍କର ଚଳାଚଳି ଢଙ୍ଗରେ ସୌନ୍ଦର୍ଯ୍ୟକୁ ଏତେ ବିଳମ୍ବ ପର୍ଯ୍ୟନ୍ତ ଧରି ରଖି ହୁଏ । ମୋ ବିଚାରରେ ତାଙ୍କର ବୟସ ତିରିଶ ପାଖାପାଖି ହେବ ।

ବିଜୟସିଂହ : ନା, ଅତି ବେଶୀ ହେଲେ ପଇଁତିରିଶ । ତାଙ୍କୁ ଯେତେବେଳେ ଅଠର ବର୍ଷ ହୋଇଥିଲା, ସେତେବେଳେ ବ୍ରଜେଶ୍ୱରୀଙ୍କର ଜନ୍ମ ।

ବିଶ୍ୱନାଥ : ଏହା ଏକ ଅପୂର୍ବ ଯୋଗାଯୋଗର କଥା ଯେ, ସେ ତାଙ୍କ ସୁନ୍ଦରତାକୁ ଅକ୍ଷୁଣ୍ଣ ରଖିଛନ୍ତି । ଯଦି ସ୍ତ୍ରୀଲୋକମାନେ ଏତେ ଶୀଘ୍ର ମାଆ ହେବାକୁ ଇଚ୍ଛା ନ କରନ୍ତେ, ତେବେ……

ବିଜୟସିଂହ : (ଶୀଘ୍ର ଶୀଘ୍ର କହି ଉଠିଲେ) କିନ୍ତୁ ମନ୍ତ୍ରୀ ମହାଶୟ ! ଏ ପ୍ରଶ୍ନ ଆମର ବିଚାରାଧୀନ ନୁହେଁ । ଆମେ ରାଜେଶ୍ୱରୀଙ୍କର ବୟସ ଆଉ ସୌନ୍ଦର୍ଯ୍ୟ ବିଷୟରେ ବିଚାର କରିବାପାଇଁ ତ ଏକାଠି ହୋଇନେ ।

ବିଶ୍ୱନାଥ : ନା-ନା, କେବଳ ବ୍ରଜେଶ୍ୱରୀଙ୍କ ବୟସ ବିଷୟରେ ବିଚାର କରିବାପାଇଁ ଏକାଠି ହୋଇଚେ । ତାଙ୍କର ସୌନ୍ଦର୍ଯ୍ୟ ଉପରେ ମଧ୍ୟ ନୁହେଁ । ତଥାପି ସେ ଅତ୍ୟନ୍ତ

ସୁନ୍ଦରୀ । ମୁଁ ଆପଣଙ୍କ ପିତାଙ୍କ ଆତୁରତାକୁ ଭଲ ଭାବରେ ବୁଝୁଚି । ସତ କହିବାକୁ ଗଲେ ସେ ସର୍ବଦା ରୂପପିପାସୀ ଭ୍ରମର । ହିଁ—ହିଁ, ରାଜକୁମାରୀ ମଧ୍ୟ ନିଜ ସୌନ୍ଦର୍ଯ୍ୟର ନିଜେ ହିଁ ଉପମା ।

ବିଜୟସିଂହ : ଜନୈକା ଅନନ୍ୟା ସୁନ୍ଦରୀର କନ୍ୟା ସୁନ୍ଦରୀ କେମିତି ନ ହେବେ ? ନିଜ ଯୌବନ କାଳରେ ରାଜେଶ୍ୱରୀଙ୍କ ସୌନ୍ଦର୍ଯ୍ୟ ସୀମା ପାର ହୋଇ ଯାଇଥିବ । ମୁଁ ମଧ୍ୟ ବୁଝିପାରୁ ନାହିଁ, ତାହାଠାରୁ ବଳି ସୌନ୍ଦର୍ଯ୍ୟ ଆଉ କ'ଣ ହୋଇପାରେ ?

ବିଶ୍ୱନାଥ : (ଧୈର୍ଯ୍ୟ ସହି) ହିଁ, ମା-ଝିଅ ଦୁହେଁ ଅତ୍ୟନ୍ତ ସୁନ୍ଦରୀ ।

ବିଜୟସିଂହ : ମାତ୍ର ସେକଥା ମଧ୍ୟ ଆମର ବିଚାରାଧୀନ ନୁହେଁ ।

ବିଶ୍ୱନାଥ : (ଚମକିତ ହୋଇ) ନା, ତା' ବି ନୁହେଁ । ଆମର ବିଚାରାଧୀନ କଥା ଏଇଯେ ଯେ···

ବିଜୟସିଂହ : ଏହା ବହୁତ ଲଜ୍ଜାକର କଥା ଯେ, ମୋର ପିତା ପଚାଶ ବର୍ଷର ବୃଦ୍ଧ ହୋଇ ଷୋଡ଼ଶୀ ଯୁବତୀ ପ୍ରତି ପ୍ରେମାସକ୍ତ ହୋଇ ପଡ଼ୁଛନ୍ତି । ମୁଁ ତୁମକୁ ସ୍ପଷ୍ଟ ଭାବେ କହିପାରେ, ବ୍ରଜେଶ୍ୱରୀଙ୍କୁ ଏବେ ଷୋହଳ ବର୍ଷ ବି ହୋଇନି ।

ବିଶ୍ୱନାଥ : କୁମାର ! ଆପଣଙ୍କର ପିତାଙ୍କୁ ଏବେ ପଇଁତାଳିଶରୁ ଅଧିକ ବର୍ଷ ହେବନି । ଆପଣ ତାଙ୍କୁ ପଚାଶ ବର୍ଷ କହି ଅନ୍ୟାୟ କରୁଅଛନ୍ତି ।

ବିଜୟସିଂହ : (ହସି କରି) କ'ଣ ତଫାତ୍ ସେଥିରେ ? ପଇଁତାଳିଶ ବର୍ଷର ବ୍ୟକ୍ତିଙ୍କ ପାଇଁ ମଧ୍ୟ ଏହା ସେତିକି ଲଜ୍ଜାଜନକ କଥା ।

ବିଶ୍ୱନାଥ : ହିଁ-ହିଁ, ବହୁତ ଲଜ୍ଜାପ୍ରଦ କଥା । ମୁଁ ମାନୁଚି ।

ବିଜୟସିଂହ : ଏ ବୟସରେ ତ ତାଙ୍କର କନ୍ୟାମାନେ ଅଛନ୍ତି । ଏ ବୟସର କୁମାରୀମାନଙ୍କ ଆଡ଼କୁ ସେ ପିତୃଭାବରେ ଦେଖିବା ଉଚିତ ।,

ବିଶ୍ୱନାଥ : ହିଁ, ଆପଣ ଅନେକ ପରିମାଣରେ ଠିକ୍ କଥା କହୁଛନ୍ତି । ମୋ ବିଚାରରେ ଆପଣଙ୍କ ଭଗ୍ନୀଙ୍କର ବୟସ ଆଠ ବର୍ଷ ହେବ ।

ବିଜୟ ସିଂହ : ମାତ୍ର ଆଠ ବର୍ଷ ? ନା, ଦଶ ହେବ । ନିଶ୍ଚୟ । ମୁଁ ଗଣିକରି କହୁଛି··· ହିଁ, ଆଠବର୍ଷରୁ କିଛିମାସ ବେଶି । ତେବେ ମୋ କଥା ଅନେକାଂଶ ଠିକ୍ । ମନ୍ତ୍ରୀ ମହାଶୟ ! ଏହା ବହୁତ ଲଜ୍ଜାର କଥା ଏବଂ ଆପଣଙ୍କୁ ଏହି ବିଷୟରେ ବିଚାର କରିବା ଉଚିତ ।

ବିଶ୍ୱନାଥ : (ମୁଣ୍ଡ କୁଣ୍ଡାଇ) ହିଁ-ହିଁ, ମୁଁ ଏ ବିଷୟରେ ବିଚାର କରୁଚି··· । ଆପଣଙ୍କ ପିତା ଶେଷ (ପଛଥର) ବିବାହ କରିବା ପାଞ୍ଚ ବର୍ଷ ହେଲାଣି ।

ବିଜୟସିଂହ : ହିଁ, ଅତିବେଶି ହେଲେ ପାଞ୍ଚବର୍ଷ । ଆଉ ମୋର ମାଆଙ୍କୁ ମଧ୍ୟ ପଚିଶ ବର୍ଷ ହୋଇନଥିଲା । ମୁଁ ତ ଛୁଆଟାଏ ଥିଲି । ଆପଣ ସେ ବିବାହକୁ ବିରୋଧ କଲେ ନାହିଁ ?

ବିଶ୍ୱନାଥ : ମୁଁ ଖୁବ୍ ବିରୋଧ କରିଥିଲି; କିନ୍ତୁ ସେ ବଡ଼ ଆତୁର ଥିଲେ । ମୁଁ ଆପଣଙ୍କୁ ତ କହୁଚି, ସେ ବଡ଼ ସୌନ୍ଦର୍ଯ୍ୟପ୍ରେମୀ ଭ୍ରମର । ତାହାହିଁ ତାଙ୍କର ଭବିତବ୍ୟ ଏବଂ ଭାଗ୍ୟ ।

ବିଜୟସିଂହ : ଏଭଳି ବିପ୍ଳବ ଲାଗି ମୁଁ ଆପଣଙ୍କୁ ସାବଧାନ କରାଇଦେବାକୁ ଚାହୁଁଚି ।

ବିଶ୍ୱନାଥ : ସେ ଆତୁର । ପ୍ରତି ପାଞ୍ଚ ବର୍ଷରେ ତାଙ୍କର କାମାବେଗ ଜାଗ୍ରତ ହୁଏ । ତାଙ୍କର ପଛ ଥର ବିବାହ ପୂର୍ବର ବିବାହଟି କେବେ ହୋଇଥିଲା ? ମୋ ହିସାବରେ ପ୍ରାୟ ଦଶ ବର୍ଷ ଆଗରୁ । ଆପଣଙ୍କ ବୟସ ସେତେବେଳକୁ ବାର ବର୍ଷ ପାଖାପାଖି ହୋଇଥିବ ।

ବିଜୟସିଂହ : ମାତ୍ର ତାଙ୍କର କାମାବେଗକୁ ବଦଳାଇ ଦେବାକୁ ହେବ । ଆପଣ ଦେଖନ୍ତୁ, ମାଆଙ୍କର ବୟସ ଏବେ ପଚିଶି ବର୍ଷ ବି ହୋଇନି । ଏ ବୟସରେ ତାଙ୍କୁ ଏପରି ଆଘାତ ଦେବା……

ବିଶ୍ୱନାଥ : ତା' ଆଗରୁ ମଧ୍ୟ ସେ ଏହି ବୟସରେ ଆଉ କାହାକୁ ଆଘାତ ଦେଇଥିଲେ । ସେ ରାଜମାତାଙ୍କର ବୟସ ଖୁବ୍ ବେଶି ହେଲେ ଷୋଳ ହେବ ।

ବିଜୟସିଂହ : ସେତେବେଳେ ତ ମୋର ବିଲ୍କୁଲ ଜାଣିବାର ବୟସ ହୋଇନଥିଲା । ମାତ୍ର ଏବେ ମୁଁ ତାଙ୍କର ଏ ପାଗଳପଣକୁ ଖୋଲଖୋଲି ଭାବେ ବିରୋଧ କରିବି । ପଚିଶି ବର୍ଷର କୌଣସି ଯୁବତୀକୁ ଆଘାତ ଦେବା……

ବିଶ୍ୱନାଥ : ଆପଣଙ୍କର ବିରୋଧ କରିବାର କାରଣ ମାଆଙ୍କର ଯୁବାବସ୍ଥା ନା, (କ'ଣ କହିବି…) ବ୍ରଜେଶ୍ୱରୀଙ୍କର ପିଲା ବୟସ ?

ବିଜୟସିଂହ : ମନ୍ତ୍ରୀ ମହାଶୟ, ଆପଣ ଆଜି ସାମାନ୍ୟରୁ ଟିକିଏ ଅଧିକ ଗମ୍ଭୀର । ଯାହା ବି ହେଉ, ମୁଁ ଚାହୁଁନି ଯେ ସେ ମୋ ପାଇଁ ଉତ୍ତରାଧିକାର ସୂତ୍ରରେ ଅସଂଖ୍ୟ ସତ୍ତ୍ୱରୁଣୀ ମାଆ ଛାଡ଼ିଯାଆନ୍ତୁ । ବ୍ରଜେଶ୍ୱରୀ ଭଳି ଅବଳା ତାଙ୍କର ପ୍ରବୃତ୍ତିର ଶିକାର ହେଲେ ମତେ ବହୁତ ଦୁଃଖ ଲାଗିବ ।

ବିଶ୍ୱନାଥ : ପ୍ରବୃତ୍ତି; ମାତ୍ର ରାକ୍ଷସ ପ୍ରବୃତ୍ତି ନୁହେଁ । କୁମାର, ଆପଣ ଆଜି ସାଧାରଣରୁ ଟିକିଏ ଅଧିକ ଗରମ ହୋଇ ଉଠିଛନ୍ତି ।

ବିଜୟସିଂହ : କଥା କଣ କି, ଆପଣ ମୋର ଦୁଃଖକୁ ଅନୁମାନ କରିପାରୁନାହାନ୍ତି । ମୁଁ ବ୍ରଜେଶ୍ୱରୀଙ୍କୁ ନିଜର ଶ୍ରେଷ୍ଠ ଭଉଣୀ, ନା ଝିଅ ଭଳି ମନେକରେ । ସେ ଏତେ ସରଳ ଯେ, ଷୋଳ ବର୍ଷର ଝିଅ ଭଳି ମନେ ହୁଏ ନାହିଁ । ମୋର ବିଶ୍ୱାସ, ସେ ଏ କଥାରୁ କିଛି ବୁଝି ନାହିଁ । ସେ ଗୋଟିଏ ବୋଦା ଭଳି କାଳୀମାତାଙ୍କୁ ଭେଟି ଦିଆଯିବା କଥାକୁ ମୁଁ ସହିଯିବି; କିନ୍ତୁ ମୋ ପିତାଙ୍କୁ ଭେଟି ଦିଆ ନହେଉ ।

ବିଶ୍ୱନାଥ : ଠିକ୍ କଥା, ଆପଣଙ୍କ ପିତା ତ କୌଣସି ଦେବତା ନୁହଁନ୍ତି ।

ବିଜୟସିଂହ : ହିଁ, ସେ ଜଣେ ମଣିଷ । ଆଉ ତାଙ୍କର ମଧ୍ୟ ନିଜ ମାନବିକତା ପ୍ରତି

ଦରଦ ରହିବା ଉଚିତ । ତାଙ୍କର ଏ ପାଗଲାମି ମାନବିକତାର ବାହାର ଘଟଣା ।

ବିଶ୍ୱନାଥ : ହଁ, ଏହା ବହୁତ ଚିନ୍ତାଜନକ ସ୍ଥିତି । ମାତ୍ର ରାଜାମାନେ ତ ମଣିଷ ହୋଇ ରହନ୍ତି ନାହିଁ ।

ବିଜୟସିଂହ : ମୁଁ ତ ମଣିଷ ।

ବିଶ୍ୱନାଥ : ଆପଣ ଏବେ କୁମାର ଅଛନ୍ତି । କିନ୍ତୁ ଆପଣ ଭାବନ୍ତୁନି ଯେ, ଏ ବିଷୟରେ ମୁଁ ଆପଣଙ୍କ ପିତାଙ୍କର ବ୍ୟବହାରକୁ ନିନ୍ଦା କରୁନାହିଁ ବୋଲି ।

ବିଜୟସିଂହ : (ତୀବ୍ର ଆକ୍ରୋଶରେ) ମାତ୍ର ତାଙ୍କୁ ନିବୃତ୍ତ କରିବାର କୌଣସି ପ୍ରଯତ୍ନ ଆପଣ କରୁନାହାନ୍ତି ।

ବିଶ୍ୱନାଥ : ମୁଁ ପ୍ରଯତ୍ନ ବିଷୟରେ ତ ବିଚାର କରୁଚି ।

ବିଜୟସିଂହ : ନା, ଆପଣ ବିଚାର ମଧ୍ୟ କରୁନାହାନ୍ତି ।

ବିଶ୍ୱନାଥ : ନା-ନା କୁମାର ! ମୁଁ ଏ ଦିଗରେ ଗମ୍ଭୀରତା ସହ ବିଚାର କରୁଛି । ମାତ୍ର ମତେ କୌଣସି ପନ୍ଥା ଜୁଟୁନାହିଁ ।

ବିଜୟସିଂହ : ମାତ୍ର ମତେ ଭୟ ଲାଗୁଛି ଯେ, ଆପଣ ପ୍ରଥମ ଥର ଭଳି ଭବିତବ୍ୟ ନିକଟରେ ହାର ମାନି ବସିବେ ।

ବିଶ୍ୱନାଥ : ନା କୁମାର, ପ୍ରଥମେ ମୁଁ ଏକୁଟିଆ ଥିଲି । ଏବେ ଆମେ ଦୁଇ ହୋଇଚେ । ମୋର ଏଥର ବିଶ୍ୱାସ ହେଉଚି, ଆମେ ଆମ ପ୍ରଯତ୍ନରେ ସଫଳ ହେବା ।

ବିଜୟସିଂହ : ମୁଁ ତ ପଣ କରିସାରିଚି ।

ବିଶ୍ୱନାଥ : (ଅସ୍ୱୀକାର କରି) ବ୍ରଜେଶ୍ୱରୀ ନାବାଳିକା—ଏ ବିଷୟରେ ତାଙ୍କୁ କିଛି କହି ହେବନି । ଆପଣ ଏବେ ତ କହୁଥିଲେ ତାଙ୍କୁ ଆପଣ ଝିଅ ଭଳି ମନେକରନ୍ତି ।

ବିଜୟସିଂହ : ହଁ, ନିଶ୍ଚୟ ।

ବିଶ୍ୱନାଥ : କୁମାର, ମୋ ବିଚାରରେ ଆପଣଙ୍କ ଲାଗି ମଧ୍ୟ ଏହା କିଛି ଭଲ ଲକ୍ଷଣ ନୁହେଁ । ଆପଣଙ୍କର ବୟସ ବାଇଶି ବର୍ଷ ଏବଂ ବ୍ରଜେଶ୍ୱରୀଙ୍କ ଷୋହଳ ବର୍ଷ । ଆପଣଙ୍କ ଭବିତବ୍ୟ ମଧ୍ୟ କିଛି ଅଲୌକିକ ମନେହେଉଛି ।

ବିଜୟସିଂହ : ଏକଥା ନେଇ ଆଉ ଅଧିକ ଚିନ୍ତା ନ କରିବା ଭଲ, ମନ୍ତ୍ରୀ ମହାଶୟ ! ଏ କଥା ଧରିନେବା ଉଚିତ ଯେ ମୁଁ ବ୍ରଜେଶ୍ୱରୀଙ୍କୁ ନିଜ ସାନ ଭଉଣୀ ମନେକରେ ।

ବିଶ୍ୱନାଥ : ହଁ, ଏ ଠିକ୍ କଥା । କେତେ ଭଲ ହୋଇଥାଆନ୍ତା, ଯଦି ଆପଣଙ୍କ ପିତା ରାଜେଶ୍ୱରୀ ପ୍ରତି ମୋହିତ ହୋଇଥାଆନ୍ତେ । ସେ କଥାକୁ ହୁଏତ ଗ୍ରହଣ କରିନେଇ ହୁଅନ୍ତା ।

ବିଜୟସିଂହ : ନା, ତା' ବି ନୁହେଁ । ମୋ ପିତାଙ୍କର କୌଣସି ନାରୀ ପ୍ରତି ମୋହିତ ହେବାର ଆବଶ୍ୟକତା କ'ଣ ଅଛି ?

ବିଶ୍ୱନାଥ : ଆବଶ୍ୟକତାର ପ୍ରଶ୍ନ ଉଠୁନି । ମୋହିତ ହେବାର ଆବଶ୍ୟକତା ତ କାହାର ନାହିଁ । ଆପଣଙ୍କ ପିତାଙ୍କର ତ ସବୁଠାରୁ କମ୍ । ମାତ୍ର ଏଇଟା ତାଙ୍କର ଗୋଟାଏ ଅଭ୍ୟାସରେ ପରିଣତ ହୋଇଯାଇଛି । ଆପଣ ଧରି ନିଅନ୍ତୁନି ଯେ ମୁଁ ତାଙ୍କର ରାଜେଶ୍ୱରୀଙ୍କ ପ୍ରତି ମୋହିତ ହେବା ଘଟଣାକୁ ପ୍ରଶଂସା କରୁଛି ।

ବିଜୟସିଂହ : ହିଁ, ମୋର କହିବାର ଅଭିପ୍ରାୟ ସେଇୟା ।

ବିଶ୍ୱନାଥ : ଅପଣ ଯଦି ମନ୍ତ୍ରଣା ଦେବେ, ମୁଁ ଯେକୌଣସି ପ୍ରକାରେ ତାଙ୍କୁ ଅଟକାଇ-ପାରିବି ।

ବିଜୟସିଂହ : ମନ୍ତ୍ରଣା ପାଇଁ ତ ଆମ୍ଭେମାନେ ଆପଣଙ୍କ ପାଖକୁ ଯାଉ ।

ବିଶ୍ୱନାଥ : ହିଁ, ଆମେ ଦୁହେଁ ଥାଇ ଯଦି ମନ୍ତ୍ରଣାକରିବା, ଯେତେବେଳେ ଗ୍ରହିବ ସେତେବେଳେ ରାୟ ଦେଇ ହେବ । ମୋ ପକ୍ଷରେ ରାୟ କହିବା ଉଚିତ ଥିଲା । (ହସିଲେ)—

ବିଜୟସିଂହ : ଠିକ୍ ଅଛି । ମୋ ବିଚାର କ'ଣ, ସେ ବିଷୟ ଆପଣ ତାଙ୍କ କାନରେ ପକେଇ ଦିଅନ୍ତୁ । ତାଙ୍କୁ ବିଷୟର ଗମ୍ଭୀରତା ସମ୍ବନ୍ଧରେ ସୂଚନା ଦିଅନ୍ତୁ । ଦୁଇ ଚାରିଥର ମୁଣ୍ଡହଲାଇ କହିଦିଅନ୍ତୁ ଯେ, ଏମିତି ହେବା ଉଚିତ ନୁହେଁ । ଏଭଳି ଆପଣମାନେ ତାଙ୍କୁ ମନ୍ଦକର୍ମରୁ ଦୂରେଇ ରଖିପାରିବେ, ହଟାଇ ଦେଇପାରିବେ—(ହସିକରି) (ଦ୍ୱାରଦେଶରେ ସନ୍ତ୍ରୀଙ୍କର ଆବିର୍ଭାବ)

ବିଶ୍ୱନାଥ : ଭିତରକୁ ଆସ ଦ୍ୱାରପାଳ ! (ସନ୍ତ୍ରୀ ଆଗକୁ ଯାଇ ତାଙ୍କୁ ପତ୍ର ଦେଲା । ମନ୍ତ୍ରୀ ତୁରନ୍ତ ପଢ଼ିନେଲେ) ହିଁ, ତାଙ୍କୁ ଭିତରକୁ ଆସିବାକୁ ଦିଅ । (ରାଜେଶ୍ୱରୀଙ୍କୁ ସ୍ୱାଗତ କରିବାପାଇଁ ନିଜ ସ୍ଥାନରୁ ଉଠି ଦରଜାଆଡ଼କୁ ଅଗ୍ରସର ହେଲେ) ସ୍ୱାଗତମ୍ ମହାରାଣୀ ! (ରାଜେଶ୍ୱରୀଙ୍କୁ ଭିତରକୁ ନେଇ ଆସିଲେ । କୁମାର ସେ ପର୍ଯ୍ୟନ୍ତ ନିଜ ସ୍ଥାନରେ ଠିଆହୋଇ ରହିଥିଲେ ।) କେଉଁ ସକାଶେ ଆପଣ ଏଠାକୁ ଆସିବା ହେଲେ ମହାରାଣୀ ମହୋଦୟା !

ରାଜେଶ୍ୱରୀ : ମନ୍ତ୍ରୀ ମହାଶୟ, ଘୋର ଅନ୍ୟାୟ ହେଉଛି । ମୁଁ ଭାବୁଚି, ଜହରରୁ ବର୍ତ୍ତି ମୁଁ ବଡ଼ ଭୁଲ୍ କରିଛି । ଏବେ ତାହାର ଦଣ୍ଡ ଦେବତା ମତେ ଦେଉଛନ୍ତି ।

ବିଶ୍ୱନାଥ : ମହାରାଣୀଜୀ, ଆପଣ ମନକୁ ଦୃଢ଼ ରଖନ୍ତୁ । ଆପଣ ନିଜର ସୁନ୍ଦରୀ କନ୍ୟାଙ୍କୁ ଅଗ୍ନିରେ ଜଳିବାରୁ ବଞ୍ଚାଇ ପୁଣ୍ୟ ସଞ୍ଚୟ କରିଛନ୍ତି । ମୁଁ ଆପଣଙ୍କ ସାକ୍ଷୀ ନିମିତ୍ତ ଦେବତାଙ୍କୁ ଆହ୍ୱାନ କରିବାକୁ ପ୍ରସ୍ତୁତ ।

ରାଜେଶ୍ୱରୀ : ଆଜି ଦେବତା ବା ତାଙ୍କରି ସମାନ ପୁରୁଷ ସେଇ କନ୍ୟାକୁ ଅପହରଣ କରିବାକୁ ତତ୍ପର—ଯାହା ପାଇଁ ମୁଁ ମୋର ଜୀବନକୁ ଜଳାଞ୍ଜଳି ଦେଇଥିଲି ।

ବିଜୟସିଂହ : ସେଇ ବିଷୟରେ ବିଚାର କରିବା ପାଇଁ ଆମେ ଏଠି ଏକତ୍ର ହୋଇଛୁ ।

ରାଜେଶ୍ୱରୀ : ହିଁ, ଆପଣମାନେ ଏଠି ଏକତ୍ର ହେବାର ସୂଚନା ପାଇବା ମାତ୍ରେ ମୁଁ ନିଜ ବ୍ୟଥା ପ୍ରକାଶ କରିବାପାଇଁ ଚାଲିଆସିଲି ।

ବିଶ୍ୱନାଥ : ଆପଣଙ୍କର ଅଧିକାର ଅଛି ମହାରାଣୀଜୀ !

ରାଜେଶ୍ୱରୀ : ମୁଁ ସେ କନ୍ୟାକୁ ଅଗ୍ନିଦେବତାଙ୍କ ବାସନାରୁ ବଞ୍ଚାଇଛି । ଏବେ ଆପଣମାନେ ତାକୁ ମହାରାଜାଙ୍କ ଅଗ୍ନି-ବାସନାରୁ ବଞ୍ଚାନ୍ତୁ ।

ବିଜୟସିଂହ : ନିଜ ରକ୍ତ ବିନିମୟରେ ମଧ୍ୟ ମୁଁ ତାଙ୍କୁ ବଞ୍ଚାଇବି ।

ବିଶ୍ୱନାଥ : (କାନରେ ହାତ ଦେଇ) କୁମାର, ଶାନ୍ତ ହୁଅନ୍ତୁ ! ମୁଁ ନିଜର ପ୍ରଭୁ ମହାରାଜା ମାନସିଂହଙ୍କ ବିରୁଦ୍ଧରେ ଏଭଳି କଥା ଶୁଣିବାରେ ଅଭ୍ୟସ୍ତ ନୁହେଁ ।

ବିଜୟସିଂହ : ମନ୍ତ୍ରୀ ମହାଶୟ ! ମୁଁ କଠୋର ଶବ୍ଦ ପ୍ରୟୋଗ କରିବାରେ ପଶ୍ଚାଦ୍‌ପଦ ହେବିନାହିଁ ! ଏହା ଏକ ରାଜକୀୟ ଉପଦ୍ରବ ।

ବିଶ୍ୱନାଥ ! କଠୋର ଶବ୍ଦ ଅପେକ୍ଷା ଆମେ ଅନ୍ୟ କୌଣସି ମାର୍ଗ ଅବଲମ୍ବନ କରିପାରିବା ।

ରାଜେଶ୍ୱରୀ : ହଁ, ଆପଣ ସାହାଯ୍ୟକଲେ ହୋଇପାରିବ । କୁମାର, ମୁଁ ପ୍ରାର୍ଥନାକରୁଚି, ଆପଣ ମନ୍ତ୍ରୀ ମହାଶୟଙ୍କ କଥା ଧ୍ୟାନପୂର୍ବକ ଶୁଣନ୍ତୁ ।

ବିଶ୍ୱନାଥ : ମହାରାଣୀ ମହୋଦୟା ! ମୁଁ ପ୍ରଥମେ ପ୍ରାର୍ଥନା କରୁଚି, ଆପଣ ନିଜ ରାୟ ଦିଅନ୍ତୁ । ଆପଣଙ୍କ ବିଚାର ଅନୁସାରେ ଆମେ ଯାହା କିଛି କରିବୁ ।

ରାଜେଶ୍ୱରୀ : ମୋ ବିଚାରରେ ଆପଣ ଆମକୁ ଉଧମ-ନଗରର ରାଣା ରବୀନ୍ଦ୍ରସିଂଙ୍କ ପାଖକୁ ପଠାଇଦିଅନ୍ତୁ । ମୋ ଝିଅ ରାଣା ରବୀନ୍ଦ୍ରର ବାଗଦତ୍ତା । ସେ ମୋ ସ୍ୱାମୀ ଯୁଦ୍ଧକୁ ଯିବାର ଗୋଟାଏ ଦିନ ପୂର୍ବରୁ ଜ୍ଞାନପୁରକୁ ଆସିଥିଲେ । ସେ ଆମକୁ ଡକାଇ ପଠାଇଥିଲେ ଏବଂ ମହାରାଜାଙ୍କୁ ପ୍ରାର୍ଥନା ମଧ୍ୟ କରିଥିଲେ । ପୁଣି ଏହି ଘଟଣାଟି ମଧ୍ୟ ଆମର ରାଜନାରୀ ହେବାର ପ୍ରମାଣ । ଆପଣଙ୍କର ଏ ବିଷୟରେ ଆଶଙ୍କା ରହିଛି ? ଏଇ ରବୀନ୍ଦ୍ରଙ୍କର ପତ୍ର । (ମନ୍ତ୍ରୀଙ୍କ ଆଗରେ ପତ୍ର ରଖି) ।

ବିଶ୍ୱନାଥ : ମହାରାଣୀ ମହୋଦୟା ! ଆପଣଙ୍କ ପ୍ରତି କାହାର ଭଲା ସନ୍ଦେହ ହୋଇପାରିବ ? ଆପଣ ପାଦରୁ ମସ୍ତକପର୍ଯ୍ୟନ୍ତ ରାଜନାରୀ । ପୁଣି ପରିପୁଷ୍ଟି ନିମିତ୍ତ ଏ ପତ୍ରଟି କ'ଣ ଭଲା ମୋ ପାଇଁ ଦରକାର ? କୁମାର ! ମୋ ବିଚାର ମଧ୍ୟ ଏଇଆ ଯେ, ଏମାନଙ୍କୁ ଉଧମନଗରକୁ ପଠାଇ ଦିଆଯାଉ ।

ରାଜେଶ୍ୱରୀ : ମନ୍ତ୍ରୀ ମହାଶୟ ! ଏକଥା ଏତେ ସହଜ ନୁହେଁ । ଆମକୁ ଏଠୁ ଲୁଚିକରି ପଳାଇବାକୁ ହେବ ।

ବିଶ୍ୱନାଥ : (ମୁଣ୍ଡହଲାଇ) ନାଁ, ଆପଣ ଲୁଚିକରି (ଚୋରଭଳି) ଯାଇପାରିବେ ନାହିଁ । ମହାରାଣୀ ମହୋଦୟା ! ଆପଣଙ୍କର କନ୍ୟା ଏବଂ ଆପଣଙ୍କ ନିମିତ୍ତ ମୁଁ ନିଜର ପ୍ରଭୁଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରିପାରିବିନାହିଁ । ମହାରାଜ ଆପଣଙ୍କ ଏଠୁ ଚାଲିଯିବା ବିରୁଦ୍ଧରେ କାହିଁକି ଅଛନ୍ତି ?

ବିଜୟସିଂହ : ଯେପରିକି ବାସନାର ବଶୀଭୂତ ଖଣ୍ଡ…

ବିଶ୍ୱନାଥ : (କାନରେ ହାତ ରଖି ଯେପରିକି ଏସବୁ ଶବ୍ଦକୁ ନିଜ କାନରେ ପ୍ରବେଶ କରିବାକୁ ଦେଉନଥିଲେ) କାରଣଟା କ'ଣ ?

ବିଜୟସିଂହ ! କାରଣ ଆଉ କ'ଣ ? କାମନାର ଝୋକ ।

ବିଶ୍ୱନାଥ : (କୁମାରଙ୍କ ଈର୍ଷାରେ ବିଚଳିତ ହୋଇ) ତା'ହେଲେ ବି ବାହାନା ତ କିଛି ଥିବ ।

ରାଜେଶ୍ୱରୀ : ବାହାନା; ଆମର ଦୁର୍ଭାଗ୍ୟ । ମୋର କନ୍ୟା କହୁଛି ସେ ରବୀନ୍ଦର୍ ପାଖକୁ କେବେହେଲେ ଯିବନାହିଁ—ଯିଏ ଆମକୁ ଭୀମପୁରରେ ଛାଡ଼ି ଆସିଥିଲା ।

ବିଶ୍ୱନାଥ : ଛୁଆଟାଏ, ଜାଣେନା ରବୀନ୍ଦର୍‌କୁ ଯୁଦ୍ଧକ୍ଷେତ୍ରରେ ସଂଗ୍ରାମ କରିବାକୁ ଯିବାର ଥିଲା ।

ରାଜେଶ୍ୱରୀ : ହଁ, ସେଇଆ ତ କହେ ।

ବିଶ୍ୱନାଥ : ମହାରାଣୀ ମହୋଦୟା ! ଆପଣଙ୍କ କନ୍ୟା ଜିଦ୍‌ରରୁ ବର୍ତ୍ତି ଆଉ ରବୀନ୍ଦର୍ ଅକ୍ରମ ସମୟର ଯୁଦ୍ଧ ବିଗ୍ରହରୁ ବର୍ତ୍ତି, ମୋ ବିଚାରରେ ସେମାନେ ଠିକ୍ କରିଛନ୍ତି ।

ରାଜେଶ୍ୱରୀ : ମୁଁ ମୋ ନିଜ କନ୍ୟାକୁ ପଳାଇବା ନିମିତ୍ତ ବାଧ୍ୟ କରିଥିଲି । ସେ ତ ମରିବା ନିମିତ୍ତ ଅଗ୍ନିରେ ଜଳିଯିବା ଲାଗି ତତ୍ପର ଥିଲା ।

ବିଶ୍ୱନାଥ : ସେ କ'ଣ ନିଜ ବିଷୟରେ ମହାରାଜାଙ୍କ ଇଚ୍ଛାମାନଙ୍କ ସହ ପରିଚିତ ?

ରାଜେଶ୍ୱରୀ : ହଁ, ସେ ଜାଣେ । କିନ୍ତୁ ତାକୁ ତାର ଭବିଷ୍ୟତ ପ୍ରତି କୌଣସି ଚିନ୍ତା ନାହିଁ । ରବୀନ୍ଦର୍‌କୁ ସେ ଘୃଣା କରୁଛି ଏବଂ ତା' ପାଖକୁ ଯିବା ଅପେକ୍ଷା ଦ୍ୱାରପାଳ ସାଙ୍ଗରେ ରହିବାକୁ ଠିକ୍ ମନେକରୁଛି ।

ବିଶ୍ୱନାଥ : ଯାହାଙ୍କୁ ମହାରାଜ ଚାହୁଁଛନ୍ତି, ସେ ଦ୍ୱାରପାଳ ପାଖରେ ରହିବା କି ଦରକାର ?

ରାଜେଶ୍ୱରୀ : ମନ୍ତ୍ରୀ ମହାଶୟ ! ଆମର ସମସ୍ତ ଦୁର୍ଭାଗ୍ୟର କାରଣ ହେଉଛି ମୋର ଝିଅ । ଯଦି ମୁଁ ତା'ର ବିବାହ ସୁଲତାନଙ୍କ ପୁଅ ସହିତ କରିଦେଇଥାଆନ୍ତି, ତେବେ ଘଟଣା ଅନ୍ୟ କିଛି ହୋଇ ଯାଇଥାଆନ୍ତା ।

ବିଜୟସିଂହ : (ଅସମ୍ଭାଳ ହୋଇ) ରାଜେଶ୍ୱରୀ ! ଆପଣ ଏଭଳି ଚିନ୍ତା ମନଭିତରେ ସ୍ଥାନଦେଇ ପାରୁଛନ୍ତି ?

ରାଜେଶ୍ୱରୀ : କେବେ ନୁହେଁ କୁମାର, କେବେ ନୁହେଁ । (ବିଶ୍ୱନାଥ ଅଡ଼ୁଆରେ ପଡ଼ିଲେ) ଆମେ ନିଜର ସବୁକିଛି ହରେଇ ସାରିଛୁ; ମାତ୍ର ନିଜର ପଣକୁ ଛାଡ଼ିନାହୁଁ ।

ବିଜୟସିଂହ : ମୋର ପିତା ଏବେ ଆଉ ଏକ ସୁଲତାନ ପାଳିଛନ୍ତି । ମୁଁ କହିବି ଗୋଟାଏ ଖାଲି ସୁଲତାନ । (ବିଶ୍ୱନାଥ ଏହା ଶୁଣିବାକୁ ନଚାହିଁ କାନରେ ହାତ ଦେଲେ ।

ରାଜେଶ୍ୱରୀଙ୍କ ଇସାରାକରି ବିଜୟସିଂହଙ୍କୁ ବାହାରକୁ ପଠାଇ ଦେବାପାଇଁ କହିଲେ।)

ରାଜେଶ୍ୱରୀ : କୁମାର, ଆପଣ ସୀମା ବାହାର ହୋଇଯାଉଛନ୍ତି । ମୋର ପ୍ରାର୍ଥନା, ଆପଣ କିଛି ସମୟ ପାଇଁ ପାଖ କୋଠରିକୁ ଯାଆନ୍ତୁ ଏବଂ ଆମ ଦୁହିଁଙ୍କୁ ଏ ବିଷୟରେ ଶାନ୍ତ ହୋଇ ବିଚାର କରିବାକୁ ଦିଅନ୍ତୁ ।

ବିଜୟସିଂହ : ଯାହା ଆପଣଙ୍କର ଇଚ୍ଛା । (ଉଠିପଡ଼ିଲେ)

ରାଜେଶ୍ୱରୀ : (ବିନମ୍ରତା ସହ) କୁମାର, ଆପଣ ବିରକ୍ତ ହେଉନାହାନ୍ତି ତ ?

ବିଜୟସିଂହ : (ବାହାରକୁ ଯାଉ ଯାଉ) ବିଲ୍‌କୁଲ୍ ନୁହେଁ ପ୍ରିୟ । (ଚାଲିଗଲେ)

ରାଜେଶ୍ୱରୀ : (କିଛି ସମୟ ସରମଯୋଗୁଁ ଚୁପ୍ ରହିବାପରେ) ଠିକ୍ ହେଲନା ମନ୍ତ୍ରୀ ମହାଶୟ !

ବିଶ୍ୱନାଥ : ଏକ୍‌ବାର ଠିକ୍ । ଏବେ ସିଧାକଥା କହୁଚି । ଆପଣଙ୍କ କନ୍ୟା ମହାରାଜାଙ୍କ ପ୍ରେମକୁ ସ୍ୱୀକାର କରିବା କ'ଣ ଉଚିତ ?

ରାଜେଶ୍ୱରୀ : ମୁଁ ଏହାର କାରଣ ଆପଣଙ୍କୁ କହିସାରିଛି ।

ବିଶ୍ୱନାଥ : ନାଁ, ରବୀନ୍ଦ୍ରର ଖିରୁତା ଏହାର କାରଣ ନୁହେଁ । ବାସ୍ତବରେ ଈର୍ଷା ହିଁ ଏହାର କାରଣ ।

ରାଜେଶ୍ୱରୀ : ତାହାହେଲେ ଯାହା ଜଣାପଡ଼ୁଚି ଆପଣ ମୋଠାରୁ ଅଧିକ ଜାଣନ୍ତି । ଈର୍ଷା କିପରି ?

ବିଶ୍ୱନାଥ : ସେ କୁମାରଙ୍କ ଦ୍ୱାରା ବରଣ ହୋଇଛନ୍ତି । ଆପଣ ମୋର ନିଃସଙ୍କୋଚ କଥାକୁ ଖରାପ ମନେ କଲେ କି ?

ରାଜେଶ୍ୱରୀ : ନା, କଦାପି ନୁହେଁ । ତାକୁ ବରଣ କରିବାର ଅଧିକାର କୁମାରଙ୍କର ଥିଲା ।

ବିଶ୍ୱନାଥ : ମାତ୍ର ବ୍ରଜେଶ୍ୱରୀଙ୍କ ଭଳି ରୂପସୀ ଓ ସ୍ୱାଭିମାନିନୀଙ୍କୁ ବରଣକରିବା ମଧ ସହଜ ନୁହେଁ । ଆପଣ ଜାଣନ୍ତି ଯେ ରାଜା ରବୀନ୍ଦ୍ରଙ୍କଠାରୁ ବରଣ ହେବାର ପରିଣାମ କ'ଣ ହେଲା ? (କିଛି ସମୟ ଦୁହେଁ ଚୁପ୍ ରହିଲେ) ବ୍ରଜେଶ୍ୱରୀଙ୍କ ପ୍ରେମକୁ ସ୍ୱୀକାର କରିନେବା ପାଇଁ ଆପଣ କ'ଣ କୁମାରଙ୍କୁ ପ୍ରେରଣା ଦେଇପାରିବେ ନାହିଁ ? ମୋର ବିଶ୍ୱାସ, ଆପଣଙ୍କ ଭଳି ଗୁଣବତୀ ଏ କାମ କରିପାରିବେ । କିଛି ଯଦି ଖରାପ ନ ଭାବିବେ ପଦେ କହିବି ।

ରାଜେଶ୍ୱରୀ : କ'ଣ କୁହନ୍ତୁ ।

ବିଶ୍ୱନାଥ : ମା' ମାନେ ପ୍ରାୟତଃ ପ୍ରେମ ପ୍ରସଙ୍ଗରେ ଝିଅମାନଙ୍କୁ ସାହାଯ୍ୟ କରନ୍ତି ।

ରାଜେଶ୍ୱରୀ : ମୁଁ ତା' କରିପାରିବି ନାହିଁ ।

ବିଶ୍ୱନାଥ : ଯଦି ଏଇଆ ହୁଅନ୍ତା—ଆପଣଙ୍କର କନ୍ୟା ମହାରାଜାଙ୍କର ପ୍ରେମକୁ ସ୍ୱୀକାର ନ କରନ୍ତେ, ତେବେ ମୁଁ ଜାଣେ, ମହାରାଜା ଯେଉଁ କାମନାର ବଶୀଭୂତ ହୁଅନ୍ତୁନା କାହିଁକି, ସେ ନିଜ ପୁତ୍ରର ସାମନାକୁ ପ୍ରେମ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଆସନ୍ତେନାହିଁ ।

ରାଜେଶ୍ୱରୀ : ମୋ ହାତରେ ନାହିଁ । ମୁଁ ଚେଷ୍ଟା କରିସାରିଛି । କିନ୍ତୁ ସବୁ ବ୍ୟର୍ଥ ହୋଇଛି ।

ବିଶ୍ୱନାଥ : (ଅବିଶ୍ୱାସ ସହ) ଆପଣ କୁମାରଙ୍କୁ ପ୍ରେରଣା ଦେବାପାଇଁ ଚେଷ୍ଟା କରିଛନ୍ତି ? ଆପଣ ଅସଫଳ ହୋଇଥିବା କଥା ମୁଁ କେବେ ମାନିନେଇ ପାରୁନାହିଁ ।

ରାଜେଶ୍ୱରୀ : ନା, ସେକଥା ନୁହେଁ । ମୁଁ ଭଲଭାବରେ ବ୍ରଜେଶ୍ୱରୀଙ୍କୁ ସବୁକଥା ବୁଝେଇବା ପାଇଁ ଚେଷ୍ଟା କରିଛି । ଆଉ ଏ ବିଷୟରେ ସମସ୍ତ ଦିଗ ପ୍ରତି ବିଚାର କରିବାପାଇଁ ମୁଁ ତାକୁ ବହୁତ ବୁଝେଇଛି ।

ବିଶ୍ୱନାଥ : ଏ କଥାର ଅନ୍ୟଦିଗଟି ବରଂ ତାଙ୍କୁ ବିବ୍ରତ କରୁଛି । ଆପଣ ତାଙ୍କର ଈର୍ଷାକୁ ଏବଂ ତାଙ୍କର ବିରକ୍ତିକୁ ଶାନ୍ତ କରିବାପାଇଁ ଚେଷ୍ଟା କରିଛନ୍ତି ?

ରାଜେଶ୍ୱରୀ : (ଆବେଗ ସହ) ସେ ଈର୍ଷା କାହିଁକି କରୁଛି ? ସେ ବିରକ୍ତ କାହିଁକି ହେଉଛି ? (କାନ୍ଦିକରି) ସେ ମତେ ଈର୍ଷାକରୁଛି । କୁମାର ତାକୁ ପ୍ରେମକରି ପାରିଦେ ନାହିଁ । ସେ ତାକୁ ଝିଅ ଭଳି ଦେଖୁଛନ୍ତି । ଯଦି ମତେ ଜଣାଥାଆନ୍ତା ଯେ ମୋ ନିଜ ଝିଅ ମୋ ସାଙ୍ଗରେ ସଉତୁଣୀ ଭଳି ବ୍ୟବହାର କରିବ; ତେବେ ମୁଁ ଜହରରୁ ବଞ୍ଚିବା ପାଇଁ ପ୍ରଯତ୍ନ କରିନଥାନ୍ତି । ବର୍ତ୍ତମାନ ସେ ମୋ ଉପରେ ବିରକ୍ତ ହୋଇଛି ଏବଂ ଈର୍ଷା ବଶତଃ ନିଜ ଯୌବନକୁ ଗୋଟିଏ ବୃଦ୍ଧ ଦୁରାଚାରୀ ନିକଟରେ ଲୁଣ୍ଠନ କରାଇବାପାଇଁ ପ୍ରସ୍ତୁତ ହେଉଛି । ହେ ଭଗବାନ, ତୁମର ନ୍ୟାୟ କେତେ କଠୋର !

ବିଶ୍ୱନାଥ : ମହାରାଣୀ ମହୋଦୟା ! ଆପଣ ମୋର ପ୍ରଭୁ ମହାରାଜାଙ୍କ ପ୍ରତି ଅନ୍ୟାୟ କରୁଅଛନ୍ତି । ଆପଣ ବୋଧହୁଏ ଜାଣିଛନ୍ତି ଯେ, ଏଭଳି କଥା ଶୁଣି ମୋର ହୃଦୟ କେତେ ଦୁଃଖିତ ହୁଏ ।

ରାଜେଶ୍ୱରୀ : (ଡରିଯାଇ) ବଡ଼ ଅବଶୋଷର କଥା; ମାତ୍ର ମହାରାଜ ମୋ ଝିଅର ଈର୍ଷାରୁ ଅନୁଚିତ ଲାଭ କାହିଁକି ଉଠାଉଛନ୍ତି ?

ବିଶ୍ୱନାଥ : ମହାରାଜା ଜାଣନ୍ତିନାହିଁ ଯେ ବ୍ରଜେଶ୍ୱରୀ ଈର୍ଷା ବଶତଃ ଏସବୁ କାମ କରୁଛନ୍ତି ।

ରାଜେଶ୍ୱରୀ : ଜାଣିନାହାଁନ୍ତି କାହିଁକି, ସେ ଜାଣିଛନ୍ତି ।

ବିଶ୍ୱନାଥ : ତେବେ ସେ ବୋଧହୁଏ ଏସବୁ ବିରକ୍ତ ହୋଇ କରୁଛନ୍ତି ।

ରାଜେଶ୍ୱରୀ : କଅଣ ! ମହାରାଜାଙ୍କର ଏ କଥାରେ ଆଗ୍ରହ ନାହିଁ ?

ବିଶ୍ୱନାଥ : କ୍ଷମା କରିବେ, ଆମେ ଗୋଟାଏ ବଡ଼ ଗମ୍ଭୀର ବିଷୟରେ କଥାବାର୍ତ୍ତା କରୁଛେ । ମୁଁ ଯେତେ ସଙ୍କୋଚ କଲେ ବି କଠୋର ଶବ୍ଦର ପ୍ରୟୋଗ ହୋଇଯାଉଛି । ଆହୁରି ମଧ୍ୟ ଯେଉଁଠି ଆସି ଆମର କଥାବାର୍ତ୍ତା ପହଞ୍ଚିଛି, ମତେ ଖୋଲିକରି ସବୁକଥା କହିବାକୁ ପଡ଼ୁଛି ।

ରାଜେଶ୍ୱରୀ : ଚିନ୍ତା କରନ୍ତୁନାହିଁ ମନ୍ତ୍ରୀ ମହାଶୟ । ମୁଁ ଜାଣେ ଆପଣଙ୍କୁ କୌଣସି କଥା ଅଜଣା ନାହିଁ ।

ବିଶ୍ୱନାଥ : ଲୁଚିଛପାର କଥା ନୁହେଁ । ମାତ୍ର ମୋର ବିଶ୍ୱାସ, ଆପଣ ନିଶ୍ଚୟ କ୍ଷମା କରିବେ । ଆପଣ ମହାରାଜାଙ୍କୁ ଯାହା ବୁଝିଛନ୍ତି, ମହାରାଜା ବି ଆପଣଙ୍କୁ ସେଇଆ ମନେକରନ୍ତି ।

ରାଜେଶ୍ୱରୀ : ଠିକ୍ କଥା ।

ବିଶ୍ୱନାଥ : ମାତ୍ର ଏଥିରେ ତ କଥା ସ୍ପଷ୍ଟ ହେଉନାହିଁ ।

ରାଜେଶ୍ୱରୀ : ମୁଁ ତ ବୁଢ଼ୀ ନୁହେଁ, କି ବୁଦ୍ଧିଗୃହିଣୀ ବି ନୁହେଁ ।

ବିଶ୍ୱନାଥ : କୁମାରଙ୍କ କଥା ଅନୁସାରେ ଆପଣଙ୍କୁ ପଚିଶି ବର୍ଷ ଚାଲିଛି ଏବଂ... ପୁଣି ଜହରରୁ ରକ୍ଷା ପାଇ ଚାଲିଆସିଛନ୍ତି ।

ରାଜେଶ୍ୱରୀ : ମତେ ଛବିଶ ବର୍ଷ । ବ୍ରଜେଶ୍ୱରୀଙ୍କୁ ପନ୍ଦର । ମତେ ପନ୍ଦର ବର୍ଷ ହେଲା ବେଳକୁ ବ୍ରଜେଶ୍ୱରୀର ଜନ୍ମ ହୋଇଥିଲା ।

ବିଶ୍ୱନାଥ : ହଁ, ତେବେ ତ ଆପଣଙ୍କର ଏବଂ କୁମାରଙ୍କ ବୟସ ମଧ୍ୟରେ କେବଳ ଆଠବର୍ଷ ତଫାତ୍ । ଆପଣଙ୍କଭଳି ରୂପସୀ ଏବଂ ଗୁଣବତୀଙ୍କ ପାଇଁ ଏ ଆଠବର୍ଷର ବ୍ୟବଧାନ କିଛି ନୁହେଁ । ମାତ୍ର ମହାରାଜା ତ ସେଇ କଥାକୁ ଗଣ୍ଠି ବାନ୍ଧି ବସିଛନ୍ତି ।

ରାଜେଶ୍ୱରୀ : ଏଇଟା ଆପଣଙ୍କର କୃପାଯୋଗୁ ଆପଣ ମୋତେ ଗୁଣବତୀ କହୁଛନ୍ତି । କିନ୍ତୁ ମୁଁ ଆପଣଙ୍କଠାରେ ବିଶ୍ୱାସ ଜନ୍ମାଉଛି ଯେ କୁମାରଙ୍କଠାରେ ମୁଁ କୌଣସି କଥା କେବେହେଲେ ଲୁଚାଇ ରଖିନାହିଁ ।

ବିଶ୍ୱନାଥ : କେବେ ରଖିନାହାଁନ୍ତି । ହେଲେ ଆପଣ ତାଙ୍କର ଏମିତି ଗୋଟିଏ ଭ୍ରମ ସଂଶୋଧନ କରିନାହାଁନ୍ତି । ଯାହା ଆପଣଙ୍କ ବିରୁଦ୍ଧରେ ଯାଉଛି । କୁମାର ଆପଣଙ୍କର ବୟସ ନଉଛିଶ ପଚିଛିଶ ବୋଲି ଜାଣନ୍ତି ଏବଂ ଆପଣଙ୍କୁ ମାତ୍ର ଛବିଶ ବର୍ଷ । କିନ୍ତୁ ମହାରାଜ...

ରାଜେଶ୍ୱରୀ : ମହାରାଜ ମତେ ଗୋଟିଏ ବୃଦ୍ଧା, ଚରିତ୍ରହୀନା ସ୍ତ୍ରୀ ବୋଲି ମନେକରନ୍ତି ।

ବିଶ୍ୱନାଥ : (କାନରେ ହାତ ଦେଇ) ମହାରାଣୀ ! ଏ ଶବ୍ଦ ଆପଣଙ୍କ ଜିଭକୁ ଅପବିତ୍ର କରୁଛି । ମୁଁ କହିପାରେ ମହାରାଜା କେବଳ ଆପଣଙ୍କର ଜହରରୁ ପଳାଇଆସିବା କଥାକୁ ବହୁତ ଅଶୁଭ ମନେକରନ୍ତି ।

ରାଜେଶ୍ୱରୀ : ବ୍ରଜେଶ୍ୱରୀ ବି ତ ଜହରରୁ ଖସି ପଳାଇଆସିଚି ।

ବିଶ୍ୱନାଥ : ସେ ଆପଣଙ୍କ ଅଧୀନା ଥିଲେ; କିନ୍ତୁ ମୋ ମତରେ, ଏହି ପ୍ରତିଦ୍ୱନ୍ଦ୍ୱିତାରେ ଆପଣ ନିଜର ଉତ୍କର୍ଷ ସର୍ବାଧିକ କୁଶଳତା ସହ ପ୍ରଦର୍ଶନ କରିଛନ୍ତି । ଆଉ ମୁଁ ଆପଣଙ୍କୁ କହୁଚି ତ, ମହାରାଜା ଏସବୁ ଈର୍ଷାପରାୟଣ ହୋଇ କରୁଛନ୍ତି ।

ରାଜେଶ୍ୱରୀ : ହଁ, ଈର୍ଷା ହିଁ ମୂଳକାରଣ । କିନ୍ତୁ ସେ କାହିଁକି ଈର୍ଷା କରୁଛନ୍ତି ? ମୁଁ କ'ଣ କୁମାରଙ୍କର ଯୋଗ୍ୟା ନୁହେଁ ? ସୁଲତାନ ପରି ମୋପାଇଁ ଘମାଘୋଟ ଯୁଦ୍ଧ କରିଥିଲା ।

ବିଶ୍ୱନାଥ : ମାତ୍ର କୁମାର ତ ସୁଲତାନଠାରୁ ବହୁତ ଶ୍ରେଷ୍ଠ ।

ରାଜେଶ୍ୱରୀ : (ଆବେଗ ସହ) କୁମାରଙ୍କୁ ପଚିଶ ବର୍ଷ । ସେ ନିଜେ ଏକଥା ମତେ କହିଛନ୍ତି । ପାଞ୍ଚବର୍ଷ ଗୋଟା କ'ଣ କଥାର କଥା । ମୋ ପଛରେ ସାରା ରାଜଧାନୀ ପରା ପାଗଳ ହୋଇ ଉଠିଥିଲା ।

ବିଶ୍ୱନାଥ : ପ୍ରେମ ପାଖରେ ଶହେ ବର୍ଷ ବି କିଛି ନୁହେଁ ।

ରାଜେଶ୍ୱରୀ : ହଁ, କୁମାର ମୋତେ ପ୍ରେମ କରନ୍ତି । ମୁଁ ତାଙ୍କୁ ପ୍ରେମ କରେ । ଆମର କାହା ପ୍ରତି ଈର୍ଷାନାହିଁ; ଆମେ କାହାକୁ ଜଳାଉନୁ ।

ବିଶ୍ୱନାଥ : ହୋଇପାରେ, ଅନ୍ୟଆଡ଼ୁ ମଧ୍ୟ କୌଣସି ଈର୍ଷା ନ ଥାଇପାରେ ।

ରାଜେଶ୍ୱରୀ : କାହିଁକି ନଥିବ ? ଈର୍ଷା, କ୍ରୋଧ, ପ୍ରତିହିଂସା । ଆପଣ ନିଜେ ତ ଏକ ମିନିଟ୍ ଆଗରୁ କହୁଥିଲେ ।

ବିଶ୍ୱନାଥ : ମତେ କ'ଣ ଜଣା ମହାରାଣୀ ! ମୁଁ ତ ଅନୁମାନ କରୁଚି । କିନ୍ତୁ ଏହା କି ସମ୍ଭବ ହୋଇପାରେ, ସେଆଡ଼େ ଖାଣ୍ଟି ପ୍ରେମ ସବୁକିଛି କରାଉଥିବ । ଯେମିତି କି ମୁଁ ଏବେ କହିଲି ଏବଂ ଆପଣ ମାନିଛନ୍ତି । ପ୍ରେମରେ ଶତ ଶତ ବ୍ୟବଧାନ ବି ବ୍ୟବଧାନ ନୁହଁ ।

ରାଜେଶ୍ୱରୀ : କଦାପି ନୁହେଁ । ମୁଁ କେବେ ମାନିବି ନାହିଁ ଯେ ବ୍ରଜେଶ୍ୱରୀର ମହାରାଜାଙ୍କ ପ୍ରତି ପ୍ରେମ ଅଛି । ମନ୍ତ୍ରୀ ମହାଶୟ, ମୁଁ ବୁଝୁଚି ଆପଣ ମହାରାଜାଙ୍କ ପକ୍ଷ ନେଉଛନ୍ତି । ମାତ୍ର ମୁଁ ଆପଣଙ୍କୁ ସ୍ପଷ୍ଟ କହିପାରେ, ମୋ ଇଚ୍ଛା ବିରୁଦ୍ଧରେ କାମ ଏ ଦୁନିଆରେ କେହି କରି ପାରିବେ ନାହିଁ । (ରାଗିଯାଇ) ମହାରାଜା ମୋ ଝିଅକୁ ବିବାହ କରି ନେଲେ ମତେ ବି ପ୍ରତିଶୋଧ ନେଇଆସେ । ଗଙ୍ଗାପୁର ସୁଲତାନଠାରୁ ତ ଦୂରରେ ନାହିଁ ।

ବିଶ୍ୱନାଥ : ମାତ୍ର ଆପଣ କୁମାରଙ୍କର ପ୍ରେମିକା -ଏକଥା ମନେ ରଖିଥିବେ । ଆଉ କୁମାରଙ୍କ ପ୍ରେମିକାଙ୍କର ମୁହଁରୁ ଏପରି ଶବ୍ଦ··· ?

ରାଜେଶ୍ୱରୀ : (ନ ଶୁଣିଲା ଭଳି) କୁମାର କାହାନ୍ତି ? ସେଠାକୁ ଯାଇ ନାହାନ୍ତି ତ ?

[ରାଜେଶ୍ୱରୀ ପାଖ କୋଠରୀକୁ ଚାଲିଗଲେ । ମନ୍ତ୍ରୀ କିଛି ସମୟ ଭାବନାରେ ବୁଡ଼ି-ରହିଲେ । ତା'ପରେ ମହାରାଜ ମାନସିଂହ ପ୍ରବେଶ କଲେ । ମନ୍ତ୍ରୀ ତାଙ୍କ ସ୍ୱାଗତାର୍ଥେ କିଛି ଦୂର ଅଗ୍ରସର ହେଲେ ।]

ମାନସିଂହ : ମନ୍ତ୍ରୀ ! କୁମାର ସହ କଥାହେଲେ ?

ବିଶ୍ୱନାଥ : ହଁ ମହାରାଜ ! ଥରେ ମାତ୍ର କଥା ହୋଇଚି ।

ମାନସିଂହ : ତୁମ ଉପଦେଶର ତା' ଉପରେ କ'ଣ କିଛି ପ୍ରଭାବ ପଡ଼ିଛି ? ତୁମେ ତା'

ସବୁତ ସବୁକଥା ଖୋଲଖୋଲି ଆଲୋଚନା କରିଛ ନା ନାହିଁ ?

ବିଶ୍ୱନାଥ : ସତ କହିବାକୁ ଗଲେ ଏଯାଏ ଅଧା କଥାବାର୍ତ୍ତା ହୋଇଚି । ମାତ୍ର•••

ମାନସିଂହ : ପୁଣି କ'ଣ ହେଲା ?

ବିଶ୍ୱନାଥ : ରାଣୀ ରାଜେଶ୍ୱରୀ ଆସିଗଲେ ।

ମାନସିଂହ : ହଁ, ତା'ହେଲେ ସେ ତା'ର ବୁଢ଼ିଆଣୀ ଜାଲ ଏତେ ଦୂର ପର୍ଯ୍ୟନ୍ତ ବିସ୍ତାର ସାରିଲାଣି । ମୋର ବିଶ୍ୱାସ ଅଛି, ଏ ବୁଢ଼ା ହରିଣ ତା' ଜାଲରେ ଧରା ପଡ଼ିବ ନାହିଁ । ହଁ, ତା'ହେଲେ ତ ଉଭୟଙ୍କ ଭିତରେ ଆଲୋଚନା ହୋଇଥିବ ?

ବିଶ୍ୱନାଥ : ନା, କୁମାର କୌଣସି କାରଣରୁ ପାଖ କୋଠରିକୁ ଚାଲିଗଲେ ।

ମାନସିଂହ : (ହସିକରି) ବାଃ ! ତା'ହେଲେ ତ ବୁଢ଼ା ହରିଣ ଜାଲରେ ଧରାପଡ଼ିଚି । ମତେ ଜଣାନାହିଁ, ପୁଣି ତୁମ୍ଭେମାନେ ଏ ବିଷୟରେ କ'ଣ କଲ ?

ବିଶ୍ୱନାଥ : ବୁଢ଼ା ହରିଣ ଏ ସ୍ତ୍ରୀ ଲୋକମାନଙ୍କଠାରୁ ବହୁତ ଚାଲାକ । ଯେତେବେଳେ ଯୁବ ହରିଣ ଯଦି ନଜେ ତେଉଁ ତେଉଁ ଆସି ଧରା ଦେଉଛନ୍ତି, ସେତେବେଳେ ବୁଢ଼ା ହରିଣକୁ ଜାଲରେ ଧରୁଛି କିଏ ?

ମାନସିଂହ : ଠିକ୍‌କଥା, ସେମାନେ ଡିଆଁମାରି ଆସି ଧରା ଦେଉଛନ୍ତି । କହିବ, ବ୍ରଜେଶ୍ୱରୀ ମୋପାଇଁ କିଛି ଖବର ପଠାଇଛନ୍ତି ?

ବିଶ୍ୱନାଥ : ହଁ ମହାରାଜ ! କୁହନ୍ତୁ ।

ମାନସିଂହ : ତାଙ୍କର ମା' ତାଙ୍କୁ ଲୁଚେଇ ନେଇଯିବା ପାଇଁ ଷଡ଼ଯନ୍ତ୍ର କରୁଛନ୍ତି । ସେଥିପାଇଁ ମତେ ସବୁକାମ ତୁରନ୍ତ କରିବାକୁ ହେବ ।

ବିଶ୍ୱନାଥ : ବ୍ରଜେଶ୍ୱରୀଙ୍କୁ କଣ ଜଣା ନାହିଁ ? ଯେ ଆମ ବୟସରେ କିଛି କାମ ଶୀଘ୍ର ହୋଇ-ପାରେନ ।

ମାନସିଂହ : (ସ୍ନେହରେ ଗାଲରେ ଚାପୁଡ଼ା ମାରି) ତୁମ୍ଭେ ବୃଦ୍ଧ, ଚତୁର ବ୍ରାହ୍ମଣ— ମୋଠାରୁ ତୁମେ ପାଞ୍ଚ ବର୍ଷ ବଡ଼ ।

ବିଶ୍ୱନାଥ : ମଜା କରିବା ଛାଡ଼ନ୍ତୁ ମହାରାଜ ! ଆପଣ କ'ଣ ଏ ବାସନାକୁ ଦମନ କରି-ପାରିବେ ନାହିଁ ?

ମାନସିଂହ : ତା'ମାନେ, କୁମାର ଆଉ ରାଜେଶ୍ୱରୀର ରାସ୍ତା ପରିଷ୍କାର ହୋଇଯାଉ ?

ବିଶ୍ୱନାଥ : କୁମାରଙ୍କୁ ମଧ୍ୟ ରାଜେଶ୍ୱରୀଙ୍କ ପ୍ରେମରୁ ହଟାଇ ଦିଆଯାଇ ପାରିବ । ମା'ଝିଅଙ୍କୁ କାହିଁକି ଯେତେ ଶୀଘ୍ର ସମ୍ଭବ ଉଧମପୁରରେ ପହଞ୍ଚାଇ ଦିଆଯାଇ ନ ପାରିବ ? ନାରୀମାନେ ଭବିତବ୍ୟର ହତିଆର । ମହାରାଜ ! ମୁଁ ଭୟ କରୁଚି । ଏମାନଙ୍କ ଯୋଗୁଁ ପ୍ରଥମେ ଖାନ୍‌ପୁର ତ ଜଳି ପାଉଁଶ ହୋଇଚି । ଗଙ୍ଗାପୁର ପାଇଁ ଖୁବ୍ ଭଲହେବ, ଯଦି ଏମାନେ ଦୂରେଇ ଯାଆନ୍ତି ।

ମାନସିଂହ : ମାତ୍ର ଭବିତବ୍ୟ ଅପେକ୍ଷା ପ୍ରେମ ତ ପ୍ରବଳତର ।

ବିଶ୍ୱନାଥ : ପ୍ରେମ ଭବିତବ୍ୟର ଏକ ବିକରାଳ ରୂପ ।

ମାନସିଂହ : ମାନସିଂହ ରାଜପୁତ୍ର । ପ୍ରେମ ରାସ୍ତାରେ ଆସି ପହଞ୍ଚିବା ସମସ୍ତ ବିପଦକୁ ସେ ମୁକାବିଲା କରିବାକୁ ପ୍ରସ୍ତୁତ ।

ବିଶ୍ୱନାଥ : ମହାରାଜ ! ଏକତରଫା ପ୍ରେମ ପାଇଁ ଏଭଳି ବଳିଦାନ ଉଚିତ ନୁହେଁ ।

ମାନସିଂହ : କାହାର ପ୍ରେମ ଏକତରଫା ? ତୁମ ମତରେ ବ୍ରଜେଶ୍ୱରୀର ମୋ ପ୍ରତି ପ୍ରେମ ନାହିଁ ? ସମ୍ଭବତଃ ଏଇଥିପାଇଁ ଯେ ମୋ ବୟସ ଚାଳିଶ ବର୍ଷରୁ ଅଧିକ ? କିନ୍ତୁ ମୁଁ ତ ବ୍ରାହ୍ମଣ ନୁହେଁ ଯେ ଚାଳିଶ ଅତିକ୍ରମ କରିଗଲେ ବେକାର ହୋଇଯିବି । ମୁଁ ରାଜପୁତ ଏବଂ ବ୍ରଜେଶ୍ୱରୀ ଏହାର ମହତ୍ତ୍ୱ ଜାଣେ । ଆହୁରି ମଧ୍ୟ ରାଜପୁତମାନଙ୍କ ମଧ୍ୟରୁ ପ୍ରତ୍ୟେକେ ମୋ ଭଳି ସୁଲତାନଙ୍କ ମନରେ ଭୟ ଓ ଆଦର ସୃଷ୍ଟି କରିପାରିନାହାନ୍ତି । ବ୍ରଜେଶ୍ୱରୀଙ୍କୁ ଏକଥା ବି ଜଣା ଯେ, ସୁନ୍ଦରୀମାନେ ବୀରମାନଙ୍କୁ ପ୍ରେମ କରନ୍ତି, ବୁଢ଼ାଙ୍କୁ ନୁହେଁ ।

ବିଶ୍ୱନାଥ : ମାତ୍ର ଏ ବିଷୟରେ ଦାସୀର ସମ୍ବାଦ ବ୍ୟତୀତ ଆପଣଙ୍କ ପାଖରେ ଆଉ କିଛି ପ୍ରମାଣ ଅଛି ? ଦାସୀମାନେ କ'ଣ ନିଜ କର୍ତ୍ତବ୍ୟ ଠିକ୍‌ରୂପେ ସମ୍ପାଦନ କରୁଛନ୍ତି ?

ମାନସିଂହ : ମୁଁ ଜାଣେ, ମୋର ଦାସୀମାନଙ୍କ ଉପରେ ବିଶ୍ୱାସ ଅଛି ।

ବିଶ୍ୱନାଥ : ହଁ ମହାରାଜ ! ମୁଁ ଜାଣେ, ସେହି ଦାସୀ ଆପଣଙ୍କ ଓ ଚନ୍ଦ୍ରାବତୀଙ୍କ ମଧ୍ୟରେ ସମ୍ବାଦ ନିଆଅଣା କରୁଥିଲା । କିନ୍ତୁ ସେତେବେଳେ ମହାରାଜା ଆଜଠୁ ପାଞ୍ଚବର୍ଷ ଶ୍ରେଷ୍ଠ ଥିଲେ; ଆଉ ରାଣୀ ଚନ୍ଦ୍ରାବତୀଙ୍କ ବୟସ ପଚିଶ ପାଖାପାଖି ଥିଲା ।

ମାନସିଂହ : ବ୍ରଜେଶ୍ୱରୀ ତ ନାବାଳିକା ନୁହଁନ୍ତି; ତାଙ୍କୁ ଅଠର ବର୍ଷରୁ ବେଶି ହେବ । ମାତ୍ର ବୃଦ୍ଧ ବ୍ରାହ୍ମଣ ଏ ବୟସର ଗୋଲକଧନ୍ଦାରେ ଏମିତି କାହିଁକି ପଡ଼ିଯାଇଛନ୍ତି ? ରାଜପୁତ ଏବଂ ପ୍ରେମିକ-ପ୍ରେମିକାଙ୍କ ଉପରେ ବୟସ ପ୍ରଭାବ ପକାଏ ନାହିଁ ।

ବିଶ୍ୱନାଥ : ଆଉ ଭବିତବ୍ୟ ଉପରେ ?

ମାନସିଂହ : ତୁମେ କେଉଁ କଥାକୁ ଡରୁଛ ? ପାଞ୍ଚ ବର୍ଷ ପୂର୍ବରୁ ସୁଲତାନ୍ ଯେତେବେଳେ ଆକ୍ରମଣ କରିଥିଲା, ସେତେବେଳେ ତ ତୁମେ ଡରୁ ନ ଥିଲ ? ସେତିକିବେଳେ ମୁଁ ଚନ୍ଦ୍ରାବତୀଙ୍କୁ ବିବାହ କରିଥିଲି । ତାହା ମୋର ବୀରତ୍ୱର ସ୍ମାରକୀ ଥିଲା । ମତେ ଭୟ କରି ସୁଲତାନ ନିଜ ଅଭିପ୍ସା ବଦଳେଇ ଦେଇଥିଲା ଏବଂ ସେ ଲେଉଟି ଯାଇଥିଲା ! ଆଉ ଆଜି ତୁମେ ଗୋଟାଏ ନାରୀକୁ ଭୟ କରୁଛ ?

ବିଶ୍ୱନାଥ : ହଁ ରାଜନ୍ ! ଏ ସ୍ତ୍ରୀଲୋକମାନେ ହେଉଛନ୍ତି ଭବିତବ୍ୟର ହତିଆର । ମୁଁ ବ୍ରଜେଶ୍ୱରୀଙ୍କୁ ନିକଟରୁ ତ ଦେଖିନାହିଁ; ମାତ୍ର ରାଜେଶ୍ୱରୀଙ୍କୁ ଯେତିକି ଜାଣେ, ସେହି ଆଧାରରେ ଆପଣଙ୍କୁ ମନ୍ତ୍ରଣା ଦେଇ ପାରେ ଯେ—ଯେତେଦୂର ସମ୍ଭବ ଆପଣ ତାଙ୍କଠାରୁ ଦୂରରେ ରୁହନ୍ତୁ ।

ମାନସିଂହ : ଆଚ୍ଛା ! ତା'ହେଲେ ରାଜେଶ୍ୱରୀ ତୁମ ଉପରେ ଭୟଙ୍କର ଯାଦୁ ବିଛେଇ ଦେଇଛି । ତୁମେ ତା' ଆଡ଼କୁ ମୋହିତ ହୋଇ ଯାଇ ନାହିଁ ତ ?

ବିଶ୍ୱନାଥ : ମହାରାଜାଙ୍କର ଏ ସେବକକୁ ମୋହ ଜୟ କରି ପାରିବ ନାହିଁ । ମାତ୍ର ମୁଁ ନିଶ୍ଚିତ ରୂପେ ଭୟଭୀତ । ଆଉ ଏକଥା ସ୍ୱୀକାର କରିବାର ସାହସ ମୋର ଅଛି ।

ମାନସିଂହ : ଭୟଭୀତ,—ପୁଣି ରାଜେଶ୍ୱରୀ ଦ୍ୱାରା ?

ବିଶ୍ୱନାଥ : ଭବିତବ୍ୟ ଦ୍ୱାରା ।

ମାନସିଂହ : ପ୍ରେମିକ ଭବିତବ୍ୟଠାରୁ ପ୍ରବଳ । ପ୍ରେମ ମୋ ପକ୍ଷରେ ଅଛି । ବ୍ରଜେଶ୍ୱରୀ ଓ ମାନସିଂହ ପରସ୍ପର ପ୍ରେମୀ ଅଟନ୍ତି । ସେମାନେ ଭବିତବ୍ୟକୁ ମୁକାବିଲା କରି-ପାରନ୍ତି ।

ବିଶ୍ୱନାଥ : ଭବିତବ୍ୟର ଅନ୍ୟନାମ ପ୍ରେମ, ମହାରାଜ !

ମାନସିଂହ : ରାଜେଶ୍ୱରୀକୁ ତମେ ଡରୁଛ ? ଯାହାକୁ ଯେକୌଣସି ସମୟରେ ବନ୍ଦି-ଶାଳାରେ ଭର୍ତ୍ତି କରିହେବ ବା ଦେଶରୁ ନିର୍ବାସିତ କରିହେବ । ସେ ଗୋଟାଏ ବେଶ୍ୟା । ତୁମେ ତାକୁ ବଳବତୀ ମନେ କରିଛ ? କାରଣ ସେ ବିଜୟସିଂହ ଭଳି ଗୋଟାଏ ସରଳ ମୂର୍ଖକୁ ଜାଲରେ ପକାଇ ପାରିଛି ବୋଲି ? ମୁଁ ତାକୁ ମଧ୍ୟ ସେ ଜାଲରୁ ମୁକ୍ତ କରିବାର ଶକ୍ତି ରଖିଛି । ମୁଁ କେବେ କହି ବୁଲୁ ନଥିଲି ବିଜୟସିଂହ ମୂର୍ଖ । କିନ୍ତୁ ତୁମେ ତାକୁ ବିଗାଡ଼ି ଦେଉଛ ।

ବିଶ୍ୱନାଥ : ମାନୁଛି ପ୍ରଭୁ ! ମୁଁ ତାଙ୍କୁ ବିଗାଡ଼ି ଦେଇଛି । କିନ୍ତୁ ସମୟ ଏମିତି ବଳି ପଡ଼ୁଛି ଯେ, ଆପଣଙ୍କଠାରୁ ତ୍ୟାଗ ଆଶା କରିବା ଅନିବାର୍ଯ୍ୟ ହୋଇ ପଡ଼ୁଛି । ରାଜଗୃହ ଓ ତାହାର ରକ୍ଷକ ସ୍ୱରୂପ ଭଗବାନ ଆପଣଙ୍କୁ ସୃଷ୍ଟି କରିଥିବାରୁ, ଆପଣଙ୍କର ତ୍ୟାଗ ଏବେ ଆବଶ୍ୟକ ହୋଇପଡ଼ୁଛି ।

ମାନସିଂହ : ମୁଁ ତୁମକୁ କହି ଦେବାକୁ ଚାହେଁ, ବିଶ୍ୱନାଥ !—ସେ ବେଶ୍ୟା କେବେ-ହେଲେ କୁମାରର ପିଚ୍ଛା ଛାଡ଼ିବ ନାହିଁ । କୁମାରକୁ ତା' ପିଂଜରାରୁ ମୁକ୍ତ କରିବାକୁ ହେବ ଏବଂ ଭଗବତୀଙ୍କ କୃପାରୁ ମୋଠି ସେ ଶକ୍ତି ଅଛି । ମୁଁ ଏ ବେଶ୍ୟାକୁ ସିଧା କରିପାରି ନିଃଶ୍ୱାସ ମାରିବି । ବ୍ରଜେଶ୍ୱରୀ ଏ ମହଲ ବାହାରକୁ ପାଦ ପକାଇ ପାରିବେ ନାହିଁ । ଯଦି ଏହାହିଁ ଭବିତବ୍ୟ ତେବେ ମୋର ଚିନ୍ତା ନାହିଁ । ସେ ବେଶ୍ୟାକୁ ମୁଁ ନଗରରେ ଭିକ ମାଗିବା କର୍ମରୁ ବି ବଂଚିତ କରିଦେବି । (ପାଖ କୋଠରିରୁ ପଦଧ୍ୱନି ଶୁଭିଲା)—ସେ କୋଠରିରେ କିଏ ?

ବିଜୟସିଂହ : (ପ୍ରବେଶ କରି) ମୁଁ । ମୁଁ ତୁମର ସମସ୍ତ ବକ୍ତବ୍ୟ ଶୁଣିସାରିଛି । ରାଜେଶ୍ୱରୀ ବେଶ୍ୟା ନୁହେଁ । ତୁମେ ସେଇ ନିର୍ଲଜ, ଯିଏ ସରଳା ବ୍ରଜେଶ୍ୱରୀକୁ ନିଜ ଜାଲରେ ପକାଇଛ । ବୁଢ଼ା ଷଣ୍ଢ ! ତୁମେ କ'ଣ ଭାବୁଛ, ବ୍ରଜେଶ୍ୱରୀ ତୁମକୁ ପ୍ରେମ କରୁଛି ?

ବିଶ୍ୱନାଥ : ଶାନ୍ତ ହୁଅନ୍ତୁ କୁମାର, ଶାନ୍ତ ହୁଅନ୍ତୁ । ଦ୍ୱାରପାଳ ଶୁଣି ନେଇପାରେ ।

[କୁମାରଙ୍କୁ ଚୁପ୍ କରିବାପାଇଁ ସେ ଆଗକୁ ଆସିଲେ; କିନ୍ତୁ କୁମାର ତାଙ୍କୁ ଧକ୍କା ଦେଇ ଗୋଟାଏ ପଟକୁ ଠେଲିଦେଲେ । ସେ ଭିତରେ ମହାରାଜା ସତର୍କତା ସହ ତରବାରି କାଢ଼ି ନେଇଥିଲେ ଏବଂ କ୍ରୋଧରେ ହାତ ଦବାଉଥିଲେ ।]

ମାନସିଂହ : ରାଜେଶ୍ୱରୀ ଗୋଟାଏ ବେଶ୍ୟା ଏବଂ ସେ ତୋ ଭଳି ଗୋଟାଏ ମୂର୍ଖକୁ ବଶୀଭୂତ କରିଛି । ଯା, ଚୁପ୍‌କରି ବସ୍ । ମୁଁ ତୋତେ ଭିକାରି ଏବଂ ତାକୁ ବେଶ୍ୟା କରି ଛାଡ଼ୁଛି । ପିତାଙ୍କୁ କେମିତି ଗାଳିଦିଆଯାଏ, ଏକଥା ଯଦି ତତେ ଶିଖେଇ ନ ଦେଇଛି, ତେବେ ମୁଁ ରାଜପୁତ ନୁହେଁ ।

ବିଜୟସିଂହ : ରାଜେଶ୍ୱରୀ ମୋର ସାଙ୍ଗରେ ରାଣୀ ହେବ ଏବଂ ମୋର ସାଙ୍ଗରେ ଭିକାରୁଣୀ ହେବ । ଆଉ ତୁମକୁ ସେ ପବନ ସ୍ପର୍ଶ କରିବ ନାହିଁ, ଯାହା ବ୍ରଜେଶ୍ୱରୀର ବସ୍ତ୍ରକୁ ସ୍ପର୍ଶକରି-ଆସୁଚି !

(ମନ୍ତ୍ରୀ ଭୟଭୀତ ହୋଇ ଚୁପ୍‌କରି ଦୀର୍ଘଶ୍ୱାସ ଛାଡ଼ୁଥିଲେ ।)

ମାନସିଂହ : (ତରବାରି କାଢ଼ି) କମ୍ବକ୍ତ ! ବଦ୍‌ମାସ ! (କୁମାର ଆଡ଼କୁ କୁଦିପଡ଼ି) ଦ୍ୱାରପାଳ ! (କୁମାରକୁ ଆକ୍ରମଣ କଲେ । କୁମାର ମଧ୍ୟ ନିଜ କଟାରି ଉନ୍ମୁକ୍ତ କଲେ ।)

ବିଜୟସିଂହ : (କ୍ଷତ ବିକ୍ଷତ ହୋଇ) ଏଇ ନେ ବୁଢ଼ା ଷଣ୍ଢ ! ତୁମେ ମଧ୍ୟ ବହୁତ ଶୀଳତା ଭଙ୍ଗ କରିଛ । (ରାଜାଙ୍କ ଛାତିରେ କଟାରି ଭୁସିଦେଲେ । ଦୁହେଁ ଧରାଶାୟୀ ହୋଇଗଲେ । ପାଖ କୋଠରିରୁ ରାଜେଶ୍ୱରୀ ଦଉଡ଼ି ଆସିଲେ ।)

ବିଶ୍ୱନାଥ : (ରାଜେଶ୍ୱରୀଙ୍କୁ ସମ୍ବୋଧନ କରି) ତୁମେ ହିଁ ଭବିତବ୍ୟ, ନିୟତି, ଭବ୍ୟ !! ତମେ ଏବଂ ତମର କନ୍ୟା ଭବିତବ୍ୟର ହତିଆର ।

ରାଜେଶ୍ୱରୀ : (ମୁହଁରେ ବିଷ ଭରିଦେଇ) ଏହାହିଁ ମୋ ପାଇଁ ଯଥେଷ୍ଟ, ଆଉ ବ୍ରଜେଶ୍ୱରୀ ମଧ୍ୟ ଏ ଔଷଧସହ ପରିଚିତ । ଆଗକୁ ଭଗବତୀ ତାକୁ ରକ୍ଷା କରିବେ । (ପଡ଼ିଗଲେ)

□□□

# ପାତ୍ର

(ମଂଚକୁ ପ୍ରବେଶ କରୁଥିବା କ୍ରମରେ)

ଦେବକୀ : ନାରାୟଣ ଦାସର ପତ୍ନୀ
ବିଲୁ ଓ କୃଷ୍ଣା : ପିଲା ଦୁହେଁ
ନାରାୟଣ ଦାସ :
ରାଜ : ନାରାୟଣ ଦାସର ଭାଇ
ଦାରୋଗା :
ବୁଢ଼ା (ବୃଦ୍ଧ) : ନାରାୟଣ ଦାସର ପିତା

[ଗ୍ରେଟ ସାଧାରଣ କୋଠରିଟିଏ । ଆନୁମାନିକ ୧୦'×୧୨'ର । ଦୁଇଟା ଖଟିଆ, ଗୋଟିଏ ଚଉକି, ଦୁଇ ତିନିଟା ଟ୍ରଙ୍କ, ରସିଲଗା ଅଲଗୁଣି ଉପରେ ବହୁତଗୁଡ଼ା ମଇଳା ଲୁଗା ଏବଂ ଆଉ କିଛି ଜିନିଷପତ୍ର । ସାମନା ଦାନ୍ଥାଲ୍ ଉପରେ ଗୋଟାଏ କଣ୍ଟାରେ ଲଣ୍ଠନଟିଏ ଟଙ୍ଗା ହୋଇଛି, ଯାହାର ଧୂଆଁରେ ଦାନ୍ଥାଲ୍ କଳା ପଡ଼ିଯାଇଛି, କୌଣସି ଗରିବ ଲୋକର ଘର । କିନ୍ତୁ ଏଥିରେ ଦୁଇଟା ସୁନ୍ଦର ବସ୍ତୁ ଅଛି—ଗୋଟିଏ ପିଲାଙ୍କର ଲାଲ ରଙ୍ଗର ଝୁଲଣ ଏବଂ ଅନ୍ୟଟି ଲଣ୍ଠନର କିଛି ଦୂରରେ ଟଙ୍ଗା ହୋଇଥିବା ରଙ୍ଗିନ୍ ପଙ୍ଖା । ସକାଳ ସମୟ । ବାଆ ପଟେ ବାହାରକୁ ଯିବା ରାସ୍ତା ଏବଂ ଡାହାଣପଟ କୋଣରେ ଏକ ସଂକୀର୍ଣ୍ଣ ସିଡ଼ି ଉପରେ ଥିବା ଛାତକୁ ଲାଗିଛି । ଖଟିଆ ଦୁଇଟି ଉପରେ ଅଲଗା ଅଲଗା ପିଲା ଶୋଇଛନ୍ତି । ଜଣେ ସ୍ତ୍ରୀ ଲୋକ, ଦେବକୀ, ବୟସ ତିରିଶ ପାଖାପାଖି; ଅଲଗୁଣିରୁ ଗୋଟିଏ ଓଢ଼ଣୀ ଟାଣିନେଇ ନିଘଂକୋଚରେ ଠିଆ ହେଲି । ଅଳସ ଭାଙ୍ଗି ବାହୁ ପ୍ରସାରଣ କରି କ୍ଲାନ୍ତ ପ୍ରକାଶ କଲି । ଦେବକୀ ରଙ୍ଗିନ୍ କାମିଜ୍ ଏବଂ ମଇଳା ସାଲୁଆର୍ ପିନ୍ଧିଥିଲି । ବାଳ ଅସଂଯତ ଥିଲି, ଯେପରିକି, ଏବେ ଶୋଇ କରି ଉଠିଚି । ଗ୍ରେଟ ପିଲାକୁ ଉଠାଇ ବଡ଼ ଶ୍ରଦ୍ଧାରେ କୋଳକୁ ନେଲି । ପିଲାଟି ଜୋର୍‌ରେ କାନ୍ଦୁଥିଲି । ତାକୁ ସ୍ନେହରେ 'ଶୋଇପଡ଼ ବାଳୁ ମୋର, ଏ ଯାଏ ସକାଳ ହୋଇନି' କହି ଆପୁଡ଼େଇଦେଲି । ପିଲାଟି ଚୁପ୍ ହୋଇଥିଲି । ଖାଲି ଖଟରେ ଥିବା ବିଛଣାକୁ ଗୋଟେଇ କରି ଅନ୍ୟ ଖଟ ଉପରେ ରଖିଲି । ଖଟ ଉଠେଇ ବାଁ ପଟ ଦେଇ ବାହାରକୁ ନେଇଯିବା ବେଳେ ତା'ର ସ୍ୱାମୀ ବାହାରୁ ଫେରି ଆସିଥିଲି । ସେ ଖଟକୁ ଧରିନେଲି ।]

ନାରାୟଣ : ଏତେ ବ୍ୟସ୍ତ ହେବାର କ'ଣ ଥିଲି ? ତମକୁ କେତେ ଥର କହିଲିଣି ଯେ, ବୋଝ ଉଠାଉଠି କରନାହିଁ ।

ଦେବକୀ : ମୁଁ ବୋଝ ଉଠେଇଲେ କ'ଣ ହେଇ ଯାଉଛି ?

ନାରାୟଣ : ତମ ସ୍ତ୍ରୀ ଜାତିଙ୍କ ଉପରେ ଭରସା କ'ଣ ଅଛି ଭଲି ?

ଦେବକୀ : (ମୁହଁ ଫୁଲେଇ) ହୁଁ ।

ନାରାୟଣ : ଲୋଟା ଗାମୁଛା ଧରେଇ ଦିଅ, ଧର ।

[ଖଟ ବାହାରକୁ ନେଇଗଲେ । ଖଟ ଖାଲି ହୋଇଥିବା ଜାଗାରେ ରେଷେଇ ଜିନିଷ ଆଖିରେ ପଡ଼ିଲି । କିଛି ବାସନ, ଟିଣ ଡବା, ଜାଳ ଏବଂ ଟୋକେଇ ଆଦି । ଚୂଲି ପାଖର ଦାନ୍ଥାଲ ପୁରାପୁରି କଳା । ଦେବକୀ ଗାମୁଛାକୁ ଅଲଗୁଣିର ଗୋଟାଏ ପଟକୁ ପକାଇ ଦେଇ ଲୋଟାଟିକୁ ବାକି ବାସି ବାସନରେ ରଖିଦେଲି । ଚୂଲିରୁ ପାଉଁଶ ବାହାର କରି ଥାଳରେ ଅଜାଡ଼ିଲି । ନାରାୟଣ ଦାସ ଭିତରକୁ ଆସିଲେ । ବୟସ ୩୫ ପାଖାପାଖି । ମୁଣ୍ଡରେ ଗ୍ରେଟ

ଗ୍ରେଝ ବାଲ, ମୁହଁ ସାର ଦାଢ଼ି । ମଇଳା କାମିଜ ଓ ରଙ୍ଗିନ୍ ଲୁଙ୍ଗୀ ପିନ୍ଧିଥିଲା । ଖଟର ଗୋଟାଏ ମୁଣ୍ଡକୁ ବସି ପକେଟରୁ ସିଗାରେଟ୍ କାଢ଼ି ଜଳାଇଲା ।]

ଦେବକୀ : (ଅଳ୍ପଗୁଣ୍ଡି ଆଡ଼କୁ ସଙ୍କେତ କରି) ଗାମୁଛାକୁ ତ ବାହାରେ ପକାଇ ଦେଇ ଆସୁଛ । ଓଦାକରି ଅଧା ଶୁଖିଲା ଅବସ୍ଥାରେ ଭିତରକୁ ନେଇ ଆସିଛ ।

ନାରାୟଣ : ମୁଁ ତେଲ ଲଗେଇ ମୁଣ୍ଡ ପୋଚ୍ଛୁନିଏ ।

ଦେବକୀ : ଏବେ ପ୍ରତିଦିନ ତ ମୁଣ୍ଡରେ ତେଲ ଲଗାଇବାକୁ ଆରମ୍ଭ କଲଣି । କାହା ମନକୁ ଘେରେଇବ ?

ନାରାୟଣ : ନାଁ ମ ! ଆଜି ଦାରୋଗା ଡିପୋ ଦେଖିବାକୁ ଆସୁଚି । ମୋ ନୂଆ ଲୁଗା ବାହାର କରିଦିଅ । ଆଉ ଶୁଣ, ଯେତେବେଳେ ମୁଁ ପିଲାଟାକୁ ପଠାଇ ବ ଦ'ଗିଲାସ ଚା' ଫରମାସ କରି ପଠେଇଦେବ । ଦାରୋଗାର ପ୍ରତିଦିନ କିଛିନା କିଛି କାମ ତ ରହୁଚି । ଆଉ ଏକା ସାଙ୍ଗରେ ଚା' ପିଇ ମନ ଖୁସି କରୁଚୁ ।

[ଦେବକୀ ଟ୍ରଙ୍କରୁ ନୂଆ ଲୁଗା ବାହାର କରିଦେଲା । ନାରାୟଣ କଥା ହେଉ ହେଉ ପୁରୁଣା ଲୁଗା କାଢ଼ି କରି ନୂଆ ପିନ୍ଧିବାକୁ ଲାଗିଲେ ।]

ଦେବକୀ : ଦାରୋଗାଙ୍କ ଆସିବାର ଗୋଟାଏ ସମୟ ତ ଥିବ ? କିଏ ଜାଣେ କେତେବେଳେ ଆସିବେ—ଆଉ ମୁଁ ଦିନସାରା ଚୁଲିଜାଳି ବସିଥିବି । ପିଲାଟାକୁ କହିବ, ଗୁଡ଼ିଆ ଦୋକାନରୁ କେଟ୍‌ଲରେ ପାଣି ନେଇ ଆସିବ,—ମୁଁ ଚା' ଗୁଣ୍ଡ ପକେଇଦେବି ।

ନାରାୟଣ : ଗୁଡ଼ିଆ ଦୋକାନରେ ପାଣି ମିଳିପାରେ କି ମିଳିପାରେ । ଦାରୋଗା ତ ପୁଣି ଗୋଡ଼େ ଗୋଡ଼େ ଆସି ଚାଲିଯାଏ । ମୁଁ ପିଲାଟାକୁ କହିଦେବି ସେ ନଜର ରଖିବ । ଦୂରରୁ ତାଙ୍କୁ ଦେଖିଲାମାତ୍ରେ ଘରକୁ ଚାଲିଆସିବ । ଦି'ପାଦ ବାଟରେ ତ ଦୋକାନଟା ।

ଦେବକୀ : ମୋର କ'ଣ ଯାଉଚି ? ମୁଁ ତ ଚୁଲିପାଖରେ ଲାଗିକରି ବସିରହିବି । ପଛରେ ପୁଣି କହିବନି କାଠ ସରିଗଲା ବୋଲି । ଆଉ ସନ୍ଧ୍ୟାକୁ ଫେରି ଲୁଗା ସଫା ହେଲାନି ବୋଲି ମତେ ପଚାରିବନି ।

ନାରାୟଣ : ଓହୋ ! ତମେ ଏବେ ନିଆଁ ଜାଳନି । ଘଣ୍ଟାଏ ଖଣ୍ଡେ ପରେ ଜାଳେଇଦେବ । ଆସନ୍ତା ବର୍ଷ ଜାଳେଣି କାଠର ଡିପୋ ମିଳିଗଲେ ନା, ତମର ଏ ଦୁଃଖ ଗଳ ବି ତୁଟିବ । ଗୁଡ଼ିଆ ଦୋକାନରୁ ମୁଁ ଏବେ ଚା' ପାଇଁ ପାଣି ନେଇଆସୁଚି । ଦିଅ କେଟ୍‌ଲ ।

ଦେବକୀ : (ବସି ବସି କେଟ୍‌ଲ ଉଠାଇ ଧରି) ନିଅ ।

ନାରାୟଣ : (କେଟ୍‌ଲ ଧରି) ଦିଅ, ଗିଲାସ ଦେଇଦିଅ । ଦୁଧ ବି ନେଇ ଆସିବି ତ !

ଦେବକୀ : କିଛି ଚିନି ମଧ୍ୟ ନେଇ ଆସିବ ।

ନାରାୟଣ : ଏଇ ପଅରିଦିନ ପରା ସେରେ ଚିନି ପଠାଇଥିଲି । ସାରି ଦେଲଣି ?

ଦେବକୀ : ପିଲାମାନେ କ'ଣ ଚିନିକୁ ଛାଡ଼ୁଛନ୍ତି ? ସେଥିପାଇଁ ତ ଅଧିକ ଘରେ

ରଖେ ନାହିଁ ।

ନାରାୟଣ : ଏବେ ସିନା ରେସନ୍ ଡିପୋ ଅଛି ଯେ କାମ ଚଳିଯାଉଛି । ଯଦି ଅନ୍ୟ-ମାନଙ୍କ ଭଳି ହିସାବରେ ମିଳୁଥାଆନ୍ତା ନା, ତେବେ ଫିକା ଚା' ପିଇବାକୁ ପଡ଼ନ୍ତା ।

ଦେବକୀ : ଦେଖିବା, ତମେ କେମିତି ଫିକା ଚା' ପିଇବ ? (ପ୍ରିତି ଆଡ଼କୁ ସଙ୍କେତ କରି) ଆଉ ତୁମ ବାପ କ'ଣ ଫିକା ଚା' ପିଇବେ ? ଗିଲାସକେ ପୂରା ଛ ଚାମଚ ଚିନି ପଡ଼ୁଚି '

ନାରାୟଣ : ଯା, ତମ ରୋଜଗାରରୁ ତ ଖାଉନାହାନ୍ତି ।

ଦେବକୀ : ମତେ ତ ଜୁଟେଇବାକୁ ପଡ଼ୁଚି । ତମ ସମସ୍ତଙ୍କ କଥା ବି ତ ଶୁଣିବାକୁ ହେଉଚି । କେବେ ଦୁଧ ଗିଲାସ କମ୍ ହେଲେ ତୁମ ବାପାଙ୍କର ଭଲ ନିଦ ହୁଏ ନାହିଁ । କୁନ୍ତଳାକୁ ଯେବେଠାରୁ ସ୍କୁଲ ପଠେଇଛ ସେଦିନୁ ରୋଜ ତା'ର ନୂଆ ବହି ଖାତା ଦରକାର ପଡ଼ୁଚି । ତୁମ ଡାଲ୍ ଟିକିଏ କମ୍ ଚକ୍‌ଚକିଆ ହେଲେ ତମେ ମତେ ଗାରଡ଼େଇ ଦିଅ । ଖାଲି ବଲୁର ପାଟି ଫିଟିନି ; ନ ହେଲେ ସେ ମତେ ଝୁଣ୍ଟି ଖାଆନ୍ତା ।

ନାରାୟଣ : ଓହୋ, ପାଗଳୀ ! ମୁଁ ତମର ସବୁ ଚିନ୍ତା ଦୂର କରିଦେବି । ହଉ, ଦାରୋଗାଙ୍କ ପାଇଁ କଡ଼ିଆ ଚା' ତିଆରି କରି ପଠାଇବ । ଯଦି ଶହେ ରେସନ କାର୍ଡ଼ ମୋ ଡିପୋକୁ ମିଳି-ଯାଏ ନା, ତେବେ ସାରା ଖର୍ଚ୍ଚ ପୂରା ହୋଇଯିବ । ଦିଅ, ଦୋକାନର ଚାବିଗୁଡ଼ା ଦିଅ—କୋଉଠି ଅଛି ?

ଦେବକୀ : ଦେଖିବ ଯେ, ଯେଉଁ ଦିନ ଶହେ କାର୍ଡ ତମ ସତର ନଂବର ଡିପୋକୁ ମିଳିବ, (ଉଠି ଯାଇ ତକିଆ ତଳୁ ଚାବିଗୁଡ଼ା କାଢ଼ି ଦେଲା)—ସେଦିନ ମତେ ସୁନାର ବଳା ତିଆରି କରିଦବ ।

ନାରାୟଣ : (ତା'ର ଚାବି ବଢ଼େଇ ଦେଉଥିବା ହାତକୁ ଧରି ନେଇ) ନିଶ୍ଚୟ ! ଶହେ କ'ଣ ମ ! ଯଦି ଅଉ ପଚାଶଟା କାର୍ଡ ମୋ ସତର ନଂବର ଡିପୋକୁ ମିଳିଯାଏ ନା, ତେବେ ତମ ପାଇଁ ବଳା ତିଆରି କରିଦେବି । ଏଇ ସେଦିନ ତ ତମପାଇଁ ଜାପାନୀ ପଙ୍ଖା ଆଣି ଦେଇ-ଥିଲି ।

ଦେବକୀ : ହଁଅ, କେତେ ଟଙ୍କା ହୋଇଗଲା । ଚାରି ଅଣାର ପଙ୍ଖା ଆଣିଥିଲ ନା ?

ନାରାୟଣ : ଯେଉଁ ଦିନ ଅଫିସରୁ ଅର୍ଡ଼ର ବାହାରିବ, ସେଦିନ ତୁମକୁ ବଣିଆ ଦୋକାନକୁ ନେଇଯିବି । ଆଉ ତମେ ତମ ମନପସନ୍ଦ ବଳା ବାଛିବ । ହେଲା—

ଦେବକୀ : ନା-ନା, (ହାତ ଛଡ଼େଇ ନେଇ) ହୁକୁମ ମିଳିଲା ପରେ ମୁଁ କଙ୍କଣ ତିଆରି କରିବି ନାହିଁ । ସରକାରଙ୍କ ଅର୍ଡ଼ର ଆଜି ମିଳିଲା ତ କାଲି ଯଦି କିଏ ପହଂଚିଗଲା, ଅର୍ଡର ଓଲଟିଗଲା । ଯେଉଁଦିନ ଶହେ ନୂଆ କାର୍ଡ ଆମ ଡିପୋରେ ହାଜର ହୋଇଯିବ, ମୁଁ ସେଦିନ କଙ୍କଣ ତିଆରି କରିବି ।

ନାରାୟଣ : ତମେ ଚିନ୍ତା କର ନାହିଁ । ମୁଁ ଦାରୋଗା ସହି ଆଜି କଥା ହେବି । (ପାଦରେ

ସିଗାରେଟ ମକଚ ଲିଭେଇଦେଲା ।

ଦେବକୀ : ଏବେ ଶୀଘ୍ର ଯାଅ । (ସିଡ଼ି ଆଡ଼କୁ ଇଙ୍ଗିତ କରି) ଲାଲଜୀ ଚା' ପାଇଁ ଡାକୁଛନ୍ତି ବୋଧେ ।

ନାରାୟଣ : (ବାହାରକୁ ଯାଉ ଯାଉ) ମୋ ପାଇଜାମାରେ ଡୋର ଲଗାଇ ଦେବ । [ଦେବକୀ ପାଇଜାମାରେ ଡୋର ଲଗାଇଲେ । ବାସନ କୁସନ ଠିକ୍ କରି ସଜେଇ ରଖିଲେ । ଚୁଲି ପାଉଁଶ କାଢ଼ି ବାହାର ଆସିଲେ । ସାତ ବର୍ଷ ବୟସ୍କ କୃଷ୍ଣା ବିଛଣାରେ ଉଠି ବସିଲା । ]

କୃଷ୍ଣା : (କୋଠରୀକୁ ଖାଲି ଦେଖି) ମା !

ଦେବକୀ : (ବାହାରୁ) ଯାଉଚି କୃଷ୍ଣା ! (ଭିତରକୁ ଆସି) ଶୋଇଯା, ଏବେ ତୋର ଉଠିବା ସମୟ ହୋଇନି ।

କୃଷ୍ଣା : ମା', ଭୋକ ହେଲାଣି ।

ଦେବକୀ : ତୋ ବାପା ଦୁଧ ଆଣିବାକୁ ଯାଇଚି । ଏବେ ଚା' ତିଆରି କରିଦେଉଚି ।

କୃଷ୍ଣା : (ଜିଦ କରି) ମା', ଏଇନା ଚନା ଟିକେ ଦିଅ ।

ଦେବକୀ : ଆରେ ତୁ ଚନା ପାଇଁ ଧାଡ଼ି ବାନ୍ଧି ଦଉଚୁ ; ଆଉ ବାପ ତୋର ମୋ ଉପରେ ଘୋଷା ହଉଚି !

କୃଷ୍ଣା : ଉଁ —ହୁଁ ···ହୁଁ !

ଦେବକୀ : (ଗୋଟାଏ ସିଗାରେଟ ଡବାରୁ ମୁଠାଏ ଚନା ଆଣି ତାକୁ ଦେଇ) ନେ, ମର । ଘଣ୍ଟାଏ ପାଇଁ ଆଉ ଏବେ ଉଠିବୁନି । ମତେ ଟିକେ ଧୀରେ ସୁସ୍ଥେ ଘରର କାମଧନ୍ଦା କରିବାକୁ ଦିଅ ।

[କୃଷ୍ଣା ଚନାତକ ପାଟିରେ ପକେଇ ଶୋଇଗଲା । ଦେବକୀ ଚୁଲିରେ କାଠ ଲଗାଇଲା । ହାଇ ମାରିଲା, ଯେପରିକି ଖୁବ୍ ଥକିଯାଇଛି । ଉଠିଯାଇ ଓଦା ଲୁଗାରେ ନିଜ ଆଖି ପୋଛୁଥିଲା ବେଳେ ନାରାୟଣ ପହଞ୍ଚିଲେ । ତାଙ୍କର ଗୋଟାଏ ହାତରେ କାମିଜ୍ କାନି ସହ ଧରିଥିବା କେଟ୍‌ଲି ଏବଂ ଅନ୍ୟ ହାତରେ ଗିଲାସ ।]

ନାରାୟଣ : (ଥଟ୍ଟାରେ) କ'ଣ ସଜବାଜ ଚାଲିଛି ! (ପ୍ରେମ ମିଶା ଗଳାରେ) ମୁହଁରେ ପାଉଡର ଲଗାଇବା ପାଇଁ ପ୍ରସ୍ତୁତ ହେଉଚ ?

ଦେବକୀ : ଗଲ ଏଠୁ । (ଚୁଲି ପାଖକୁ ଚାଲିଗଲା)—

ନାରାୟଣ : (ଆଗରେ ଗିଲାସ ଓ କେଟ୍‌ଲି ରଖି ସାରି ତା' ହାତ ଧରି ଟାଣିଲା)—ମୋ କଥା ଟିକେ ଶୁଣ ମ !

ଦେବକୀ : (ହାତ ଛଡ଼ାଇ) ଟିକେ ସମୟ ଅସମୟ ବାଛ-ବିଚାର କର । (ଚାପା କଣ୍ଠରେ) କୃଷ୍ଣା ଚାହିଁଛି । (ଚା' ତିଆରି କଲା)—

ନାରାୟଣ : ହଉ ହଉ ।

ଦେବକୀ : ତମେ ପରା କହୁଥିଲ, ଦାରୋଗା ଡିପୋ ଦେଖିବାକୁ ଆସୁଚ । ଖାତାକୁ ଠିକ୍-ଠାକ୍ କରିନିଅ ।

ନାରାୟଣ : ଆରେ ହଁ ତ ! ଠିକ୍ ସମୟରେ ମନେ ପକେଇ ଦେଇଚ ।

[ନାରାୟଣ ଟ୍ରଙ୍କ ଉପରୁ ଖାତା କଲମ ଦୁଆତ ଧରି ଖଟ ଉପରେ କାନ୍ଥକୁ ପିଠି ଲଗାଇ ବସିପଡ଼ିଲା । ଖାତାରେ କ'ଣ କିଛି ଲେଖିଲା ? ଦେବକୀ ପିତଳର ଘଇଟା ଗିଲାସରେ ଚା' ଭର୍ତ୍ତି କରି ନିଜ ଓଢ଼ଣୀକାନିରେ ଧରିଆଣି ଗୋଟାଏ ନାରାୟଣକୁ ଦେଲା, ଆଉ ଅନ୍ୟଟିକୁ ଉପରକୁ ନେଇଗଲା । ନାରାୟଣ ଆଙ୍ଗୁଠିରେ ହିସାବ କରି ବିରକ୍ତ ହେଲା ଭଳି ଜଣା-ପଡ଼ିଲା, ଯେମିତିକି ହିସାବଟା ଠିକ୍ ମିଶୁ ନାହିଁ ।]

ଦେବକୀ : (ଶୀଘ୍ର ଫେରୁ ଫେରୁ) ଏ ପର୍ଯ୍ୟନ୍ତ ଲାଲାଜୀ ଉଠିନାହାନ୍ତି । ଡାକେ ଦି' ଡାକେ ମୁଁ ଦେଲି । ପ୍ରତିଦିନ ସକାଳୁ ଉଠି ଜଙ୍ଗଲକୁ ନିତ୍ୟକର୍ମ କରିବାକୁ ସେ ଚାଲିଯାଆନ୍ତି । ଆଜି ଏ ପର୍ଯ୍ୟନ୍ତ···; ତମେ ଟିକେ ଦେଖ ତ !

ନାରାୟଣ : (ବିରକ୍ତ ସହକାରେ) ଓହୋ, ମୁଁ ତମକୁ କେତେଥର କହିଲିଣି, ହିସାବ ମଝିରେ ଗୋଳମାଳ କରିବନି ବୋଲି । ଅତି କଷ୍ଟରେ ଦବା-ନବାର ହିସାବଟା ମିଳି-ଯାଉଥିଲା । ଠିକ୍ ସେତିକିବେଳେ···

ଦେବକୀ : ସେତିକିବେଳେ ଉପରେ ତମ ବାପାଙ୍କର ହିସାବ ମିଳିଗଲା । (ନାରାୟଣ ଖାତା ପକେଇ ଦେଇ, କଲମ କାନରେ ଖୋଷି ଉପରକୁ ଚାଲିଗଲା । ଦେବକୀ ମୁଣ୍ଡରେ ହାତ ରଖି କହୁଥିଲା···) ଅଳ୍ପ ପଢ଼ୁଆ ସ୍ୱାମୀ ମଧ୍ୟ କିଛି କମ୍ ନୁହେଁ ।

[ଚୁଲି ପାଖରେ ବସି ଚା' ତିଆରି ଓ ଅନ୍ୟ କାମରେ ଲାଗିଲା । ନାରାୟଣ କିଛି ସମୟ ପରେ ବିବ୍ରତ ବିଚଳିତ ଅବସ୍ଥାରେ ଭିତରକୁ ଆସିଲେ ।]

ନାରାୟଣ : ଲାଲାଜୀଙ୍କର ନାଡ଼ି ବି ତ ଚାଲୁନି ।

ଦେବକୀ : ସତେ ?

ନାରାୟଣ : ଟିକେ ଯାଇ ଦେଖ ତ !

[ନାରାୟଣ ଏବଂ ତା' ପଛରେ ଦେବକୀ ଉପରକୁ ଚାଲିଗଲେ । ସେତିକିବେଳକୁ କୃଷ୍ଣା ବିଛଣା ଉପରେ ଉଠି ପଡ଼ି ବସିଗଲା । କୋଠରିରେ ମା-ବାପାଙ୍କୁ ନ ଦେଖି ଧୀରେ ବାହାରକୁ ଚାଲିଆସିଲା । ଡବାରୁ ମୁଠାଏ ଚିନି ପାଟିରେ ପକେଇ ପୁଣି ନିଜ ବିଛଣାରେ ଶୋଇବାର ଉପକ୍ରମ କଲା । କିଛି ସମୟ ପରେ ଦେବକୀ ଫେରିଲା ଏବଂ ଚା' ଦେଇସାରି ବାକି ବାସନ ଏକାଠି ଠାଙ୍କି ରଖିଦେଲା । ଚୁଲି ଉପରେ ଡାଓ୍ୱା ରଖିଦେଲା ପରେ ନାରାୟଣ ପ୍ରବେଶ କଲେ । ସେ ଦେବକୀ ପାଖରେ ତଳେ ବସିପଡ଼ି ଭେ-ଭେ ହୋଇ କାନ୍ଦିବାକୁ ଲାଗିଲା । ଦେବକୀ ତାଙ୍କ ପିଠି ଉପରେ ହାତ ବୁଲାଇ ସାନ୍ତ୍ୱନା ଦେବାକୁ ଲାଗିଲା । ନିଜ

ଆଖିରୁ ଲୁହ ପୋଛୁଥିଲା ।]

ନାରାୟଣ : (ଉଚ୍ଚ ସ୍ୱରରେ କାନ୍ଦି) ଲାଲାଜୀ ! ଆମକୁ ଛାଡ଼ି ଚାଲିଗଲ । (କୃଷ୍ଣା ବିଛଣାରେ ଉଠି ବସି ନିଜ ବାପ ଆଡ଼କୁ କଣେଇ ଚାହିଁଲା ।)

କୃଷ୍ଣା : ମା', ମତେ ଭୋକ ହେଲାଣି ।

[ଉଠିକରି ନିଜ ବାପ ପାଖକୁ ଆସିଲା । ନାରାୟଣ ତାକୁ କୋଳକୁ ଉଠେଇନେଲା । ସେ ପୁଣି ତା' ମା' ପାଖକୁ ଚାଲିଗଲା । ଦେବକୀ ତାକୁ ଚା' ଗିଲାସ ଧରେଇଦେଲା । କୃଷ୍ଣା ଚା' ପିଇ ଯାଉଥିଲା ଏବଂ ନିଜ ମା'-ବାପଙ୍କୁ ଦେଖୁଥିଲା । ପୁଣି ମା'କୁ ପଚାରିଲା—] ମା', ବାବା କାହିଁକି କାନ୍ଦୁଛନ୍ତି ?

ନାରାୟଣ : କୃଷ୍ଣା ! ଲାଲାଜୀ ଚାଲିଗଲେ ।

କୃଷ୍ଣା : (ମା'କୁ)ଲାଲାଜୀ ଚାଲିଗଲେ ? ମୁଁ ଲାଲାଜୀଙ୍କ ସାଙ୍ଗରେ ଯିବି । (ଦଉଡ଼ି ଯିବାକୁ ଉଦ୍ୟତ ହେଲାବେଳେ ଦେବକୀ ତାକୁ ଅଟକାଇଲା ।)

ନାରାୟଣ : ଦେଖି ଆସୁ ସେ ।

ଦେବକୀ : ଏକୁଟିଆ ତାକୁ କେମିତି ଛାଡ଼ିବ ? (ବୁଝେଇକରି) କୃଷ୍ଣା ! ଲାଲାଜୀ ମରିଗଲେ ।

କୃଷ୍ଣା : ମରିଗଲେ ! କିନ୍ତୁ ବାପା କାନ୍ଦୁଛନ୍ତି କାହିଁକି ? ଲାଲାଜୀ ତ ନିଜେ କହୁଥିଲେ, ତାଙ୍କୁ ଅଶୀ ବର୍ଷ ହେଇଗଲାଣି, ଦିନେ ସେ ମରିଯିବେ । (ଟିକିଏ ରହି)—ଅଶୀ ବର୍ଷ ହେଲେ ବାପା ମଧ୍ୟ ମରିଯିବେ ?

ଦେବକୀ : (କୃଷ୍ଣାକୁ ଉଠାଇ ବାଁ ପଟ ଦରଜା ଯାଏ ନେଇଗଲା)—ତୁ ବାହାରକୁ ଯା; ଖେଳ ।

କୃଷ୍ଣା : ମା', ମତେ ଚକଲେଟ୍ ଆଣିଦବ ନା ?

ଦେବକୀ : ହଁ-ହଁ, (ତାକୁ ବାହାରକୁ ବିଦା କରିଦେଲେ । ନାରାୟଣକୁ)—ଉଠି ଯାଇ ଜ୍ଞାତି କୁଟୁମ୍ବଙ୍କୁ ଏବେ ଖବର ଦିଅ ।

ନାରାୟଣ : ରାଜ ଆସିଲେ ନିଜେ ଖବର ଦେଇଦବ । ମୁଁ ଲାଲାଜୀଙ୍କ ପାଖରେ ବସିବି ।

ଦେବକୀ : ରାଜ ଉପରେ କୋଉ ବିଶ୍ୱାସ ? ଆଠ ଆଠ ଦିନ ତ ଘରକୁ ଫେରିନି । (ଟିକିଏ ରହି) ମରିବା ଖର୍ଚ୍ଚ ବିଷୟରେ କିଛି ଭାବିଛ ? ଘରେ ତ ଫଟା କଉଡ଼ିଟିଏ ନାହିଁ ।

ନାରାୟଣ : ଜ୍ଞାତି କୁଟୁମ୍ବ ତ କିଛି ଦେବେ ।

ଦେବକୀ : ଜ୍ଞାତି କୁଟୁମ୍ବ ଦେବେ କି ସ୍ତ୍ରୀ ଦିନ ନା ଶବଯାତ୍ରା ଦିନ ? (ଧୀରେ) ତମେ ଖୁବ୍ ଥିଲାବାଲା ନା, କୁଟୁମ୍ବମାନେ ତମ ମୁହଁକୁ ଏବେଳେ ଚାହିଁବେ ? ରାଜ ଅକର୍ମୀକୁ କିଏ ପଚାରିବ ? ସାରା ଦୁନିଆ ଜାଣେ ସେ ବଦଖର୍ଚ୍ଚୀ ଆଉ ଜୁଆଡ଼ୀ । ରୋଜଗାରେ

କଲବାଲା ତ ତମେ ଏକଲା । ଏବେ ଲାଲାଜୀ ସାରା ଜୀବନ ଭୋଗ କରି ସୁଖମରଣ ମଲେ । ଯଦି ଶବ ଉପରେ ରେଶମୀ କନା ନ ଢାଙ୍କିବ ନା; ନାକ କଟିଯିବ । ରାଜ ତ ଶେଷ ବେଳକୁ ବଣ୍ଟିଗ୍-କୁଣ୍ଟିଗ୍ କରିବାକୁ ଆସି ପହଞ୍ଚିବ । କହିବାକୁ ଆସିବ, ଲାଲାଜୀଙ୍କ ପଗଡ଼ି କନାରୁ ବି ମତେ ଅଧେ ଦେଇଦିଅ ।

ନାରାୟଣ : ତମେ କ'ଣ କହୁଚ କହିଲ ?

ଦେବକୀ : ମୋ କଥା ମାନିବ ତ, ଲାଲାଜୀଙ୍କ ବାକ୍ସ ଖୋଲି ଦେଖ ସେଥିରେ କ'ଣ ଅଛି ? ଆଉ ଏଥିରେ ଯାହା ଖର୍ଚ୍ଚ ହେବ, ରାଜ ଆସିବା ଆଗରୁ କାଢ଼ି ଆଣ ।

ନାରାୟଣ : ଏବେ କେତେ ଖର୍ଚ୍ଚ ହେବ ?

ଦେବକୀ : ଶହେ ଟଙ୍କାରୁ କ'ଣ କମ୍ ଲାଗିବ ? ମୋ ବାପା ଯେତେବେଳେ ମରିଥିଲେ, ଦି' ଶହ ଟଙ୍କା ବି କୁଲେଇଲା ନାହିଁ ।

ନାରାୟଣ : ତମେ ବାକ୍ସ ନେଇ ଆସ ।

[ଦେବକୀ ଉପରକୁ ଚାଲିଗଲା । ନାରାୟଣ ଉଠିପଡ଼ି ନୂଆ କାମିଜ୍ କାଢ଼ିଲା ଏବଂ ଅଲଗୁଣିରୁ ପୁରୁଣା କାମିଜ୍ କାଢ଼ି ପିନ୍ଧିଲା । ଦେବକୀ ସିନ୍ଦୁକ ଧରି ଆସିଲା ।]

ଦେବକୀ : (ତଳେ ବାକ୍ସ ରଖି) ଏଇ ନିଅ ଚାବି ।

ନାରାୟଣ : ଚାବିକୁ କୋଉଠୁ ଆଣିଲ ?

ଦେବକୀ : ଲାଲାଜୀଙ୍କ ତକିଆ ତଳେ ଥିଲା । (ନାରାୟଣ ଚାବି ଧରିବାକୁ ସଂକୋଚ କଲା; ଶେଷରେ କନ୍ତୁ ଧରିଲା ।) ମୁଁ ଭିତରୁ ଦରଜା ବନ୍ଦକରି ଆସୁଚି ?

[ବାଁ ପଟେ କୁରୁଣ୍ଡା ଲଗାଇଲା । ଦୁହେଁ ବସି ସିନ୍ଦୁକ ଖୋଲିଲେ ଏବଂ ଅନେକ ଜିନିଷ ପଦାକୁ କାଢ଼ିଲେ ।]

ନାରାୟଣ : ହେଇ ଦେଖ ବଟୁଆ । (ଖୋଲିକରି ନୋଟ୍ ଗଣିଲେ) ଏକ, ଦୁଇ, ତିନି, ଚାରି, ପାଞ୍ଚ, ଛଅ, ସାତ—ସବୁରି ଟଙ୍କା ହେଲା ।

ଦେବକୀ : ଅନ୍ୟ କଣଟା ଦେଖ ?

ନାରାୟଣ : ଏଥିରେ ଛଅଟଙ୍କା (କିଛି ନୋଟ୍ ଓ ସୁଉକ କାଢ଼ି) ଏବଂ ଏଗାର ଅଣା ଅଛି ।

ଦେବକୀ : ଛଅଦ୍ଧରି ଟଙ୍କା ଏଗାର ଅଣା—ଏଥିରେ ତ କାମ ଚଳିବନି । ଆଉ କ'ଣ ଅଛି ? (ଗୋଟିଏ ପୁଡ଼ିଆ ଖୋଲି) ନୋଥ ଅଛି; ପ୍ରାୟ ଅଧ ତୋଲାର ହେବ ।

ନାରାୟଣ : (ଅବଶୋଷ ସହିତ ନୋଥ ନେଇ) ଲାଲାଜୀ ମା'ଙ୍କର ଏଇ ଗୋଟିଏ ସନ୍ତକ ଯତ୍ନରେ ରଖିଥିଲେ । (ଗୋଟିଏ ବହି ଉଠେଇ ଧରି) ଇଏ ଲାଲାଜୀଙ୍କର ଗୀତା । (କେତେଟା ପୃଷ୍ଠା ଓଲଟେଇ ଦେଖିଲା ।)

ଦେବକୀ : ଦେଖ, ଏ ଶ୍ଳେଟ ବହିରେ ପେନ୍ସିଲ୍ ଅଛି । ଯଦି କୃଷ୍ଣାର ହାତ ବାଜିବ ନା,

ଆଉ ମିଳିବନି । (ଖଟ ଉପରେ ରଖି ଦେଇ) ଏଇଟା କ'ଣ ? (ଗୋଟିଏ ପୁଡ଼ିଆ ଖୋଲି) ମଥାମଣି ?

ନାରାୟଣ : ଏଇଟା ମୋ ବୁଢ଼ୀମା'ର ।

ଦେବକୀ : (ଦେଖି କରି) ଏହା ଉପରେ ସୁନା ପଥର ଚଢ଼ା ହୋଇଚି । କଣ୍ଟିର ମଧ୍ୟ ସୁନା ଭଳିଆ ମନେ ହେଉଚି । ସୁନା ତୋଳାଏ ଖଣ୍ଡେ ତ ନିଶ୍ଚୟ ହେବ । ଏହାକୁ ମାଆ ରାଜର ସ୍ତ୍ରୀ ପାଇଁ ରଖିଥିଲେ । କିନ୍ତୁ ରାଜ ତ ଗର୍ଣ୍ଣି ହେଲେଇ କୋଉଁ କାମଟିଏ କରୁନି; ଏ ମଥାମଣି ତା'ର କୋଉ କାମରେ ଅବା ଆସିବ ! ଏଇ ନିଅ ଟଙ୍କା; ମରିବା ଲୋକର ଖର୍ଚ୍ଚ ପାଇଁ ରଖି ନିଅ ।

ନାରାୟଣ : (ଟଙ୍କା ପକେଟ୍‌ରେ ପକେଇ) ଆଉ ବାକି ତକ ପାଇଁ କ'ଣ କରିବା ? ନୋଥ ବଣିଆ ଘରେ ବନ୍ଧକ ରଖି ପଚିଶ ଟଙ୍କା ଆଣିବା କି ?

ଦେବକୀ : ବଣିଆ ପାଖରେ କାହିଁକି ବନ୍ଧକ ରଖିବ ? ମୋ ପାଖେ ମୋ ଭଉଣୀର ଶହେ ଟଙ୍କା ଜମା ଅଛି । ସେଥିରୁ ପଚିଶ ଟଙ୍କା କାଢ଼ି ଦଉଚି ଏବଂ ନୋଥ ରଖି ଦଉଚି । ପରେ ନୋଥ ବଦଳେଇକରି ଭଉଣୀ ଟଙ୍କା ପୂରା କରିଦେବା ।

[ଉଠିଯାଇ ଖଟ ତଳୁ ଗୋଟାଏ ଟ୍ରଙ୍କ ଟାଣି ଆଣିଲା । ଖୋଲି କରି ସେଥିରେ ନୋଥ ରଖି-ଦେଲା ଏବଂ ଟଙ୍କା ବାହାରକଲା । ନାରାୟଣ ସିନ୍ଦୁକ ଖୋଲି ରଖିଥିଲା ।]

ନାରାୟଣ : ଏ ଡବାରେ କ'ଣ ଅଛି ? (ଡବାରୁ ତାସ୍ ଦି' ପଟ ବାହାର କରି ମୁଣ୍ଡରେ ଲଗାଇ) ବଗିଚାରେ ବସି ନିଜ ବନ୍ଧୁମାନଙ୍କ ସାଙ୍ଗରେ ଲାଲଜୀ ଏହି ତାସ୍ ଖେଳୁଥିଲେ । (ଶୁଖିଲା ହସ ହସି) ଡବା ଉପରେ ଲେଖା ହୋଇଚି, ଲାଲ କରପା ରାମ । ଲାଲଜୀ କେତେ କାଗଜପତ୍ର ଜମେଇ ରଖିଥିଲେ । (କାଗଜର ଫାଇଲରୁ ସୂତା ଖୋଲି) ଏହା ଲାଲଜୀଙ୍କର ଜାତକ । (ଖୋଲି କରି ଦେଖିଲା, ପୁଣି ଚଉତ ରଖିଦେଲା) ଏସବୁ କାକାଙ୍କର ଚିଠି । କପୁର୍‌ରେ ଆମର ଯେଉଁ ଘରଟା ଥିଲା ଏଇଟା ତାର ତଳ ଗ୍ରାଉଣ୍ଡର ଭଡ଼ା କବଲା । ଏଇଟା କଣ ? ଲାଲଜୀଙ୍କର ଆଙ୍ଗ୍ଲୋ ଭର୍ଣ୍ଣାକୁଲାର ପରୀକ୍ଷା ପାଶର ସାର୍ଟିଫିକେଟ୍; ଆଉ ଏଇଟା ରେସନ୍ କାର୍ଡ । (ଧ୍ୟାନ ସହକାରେ ଦେଖି) ଏଥିରେ ମୁଁ ଗଲା ମାସରେ ନିଜେ ସନ୍ତକ କରିଥିଲି । ବାସ୍, ଆଉ ଏବେ ଏହା ଉପରେ କିଛି କରାଯାଇ ପାରିବନାହିଁ ।

ଦେବକୀ : ଏଇ ରାତିରେ ତ ଲାଲଜୀ ତମ ନାଁ ଧରି କହୁଥିଲେ—ସକାଳୁ ରେସନ୍ କାର୍ଡଟା ମୋଠୁ ମାଗିନେବୁ ।

ନାରାୟଣ : ଆଜି ତାଙ୍କର ରେସନ୍ ନେବାର ଦିନ ଥିଲା ।

ଦେବକୀ : କେବଳ ଦୁଇ ଘଣ୍ଟାର ବ୍ୟବଧାନ ହେଲା । ନ ହେଲେ ଦୋକାନକୁ ଯିବା ସମୟରେ ତମେ କାର୍ଡଟାକୁ ସାଙ୍ଗରେ ନେଇ ଯାଇଥାଆନ୍ତ ଏବଂ ପିଲାଟା ହାତରେ ରେସନ୍ ଦେଇ ପଠାଇଥାଆନ୍ତ ।

ନାରାୟଣ : କଥାଟା ତ ସେଇଆ ଥିଲା ; କିନ୍ତୁ ପରମେଶ୍ୱରଙ୍କୁ ଏହା ମଂଜୁର ହେଲା ନାହିଁ ।

ଦେବକୀ : ଏବେ ରାଜ ଆସିଯିବ । ସନ୍ଧ୍ୟା ପୂଜା ପିଉସୀ ଆସି ପହଂଚି ଯିବ ଏବଂ ଅନ୍ୟ ଜ୍ଞାତି କୁଟୁମ୍ବମାନେ ମଧ୍ୟ ଆସିଯିବେ । ଯଦି ଲାଲାଜୀଙ୍କର ରେସନ୍ ଆସିଥାଆନ୍ତା ନା, ଅନ୍ତା, ଚିନ୍ତାର ଅସୁବିଧା ରହନ୍ତା ନାହିଁ ।

ନାରାୟଣ : କଥାଟା ଠିକ୍ ଯେ— (ଭାବି) ଆଉ ମଧ୍ୟ ଏ ଯାଏ କାହାକୁ ଅବା କୋଉ ଖବର ମିଳିଗଲାଣି କି ? ଯଦି ତମେ କହିବ, ମୁଁ ଦଉଡ଼ିଯାଇ ରେସନ୍ ନେଇ ଆସିବି କି ?

ଦେବକୀ : କ'ଣ ବଗିଚି ଯାଉଛ କି ? ତମେ ଯାଅ ; ଆଉ ମୁଁ ବାକ୍ସ ଯଥାସ୍ଥାନରେ ରଖିଦେଇ ଆସୁଛି । ଶୀଘ୍ର କରି ଆସ । ନଚେତ୍ ରାଜ ଆସିଯିବେ ।

ନାରାୟଣ : ଦରଜା ଭିତରୁ ବନ୍ଦ କରିଦିଅ ।

[ନାରାୟଣ ରେସନ୍ କାର୍ଡ, ଗାମୁଛା ଏବଂ ଖୁଣ୍ଟିରେ ଝୁଲୁଥିବା ବ୍ୟାଗ୍ ନେଇ ଚାଲିଗଲା । ଦେବକୀ ଦରଜା ଭିତରୁ ବନ୍ଦ କରି ଜିନିଷପତ୍ର ସଜେଇବାରେ ଲାଗିବା ସମୟରେ ପିଲା କାନ୍ଦି ଉଠିଲା । ତା'ପରେ ସେ ଯାଇ ପିଲାକୁ ଶୁଆଇବାକୁ ଚେଷ୍ଟା କଲା । ମାତ୍ର ପିଲାଟି ଆଉରି ଜୋର୍‌ରେ କାନ୍ଦିବାକୁ ଲାଗିଲା । ସେ ପିଲାକୁ ଉଠାଇ କୋଳକୁ ନେଲା ଏବଂ ଦୁଧ ଦେଲା । ପିଲାଟି ଟିକିଏ ଚୁପ୍ ହୋଇ ଯାଇ ପୁଣି ଚିତ୍କାର କରିବାକୁ ଲାଗିଲା । କାନ୍ଦୁଥିବା ପିଲାକୁ କାନ୍ଧରେ ଧରି ସେ ସିନ୍ଦୁକର ଜିନିଷପତ୍ର ସମ୍ଭାଳି ରଖିବାକୁ ଚେଷ୍ଟା କରିବା ସମୟରେ କିଏ କବାଟ ଠକ୍ ଠକ୍ କଲା । ସେ ଶୀଘ୍ର ଜିନିଷପତ୍ର ଏକାଠି କରି ରଖିବାକୁ ଚେଷ୍ଟା କଲା । କବାଟ ଆବାଜ ଆହୁରି ଜୋର୍‌ରେ ହେଲା । ଦେବକୀ ଜିନିଷପତ୍ର ସବୁ ସିନ୍ଦୁକରେ ଭରି ତାକୁ ଖଟ ତଳେ ଲୁଚେଇଦେଲା । ତା'ପରେ ଦରଜା ଖୋଲିଲା । ଜଣେ 24/25 ବର୍ଷୀୟ ଯୁବକ ଦରଜା ଟପି ଭିତରକୁ ଆସିଲା, ଯାହାର ଦାଢ଼ି ପାଞ୍ଚ ଛଅ ଦିନ ହେଲା କଟା ହୋଇନାହିଁ । ବାଳ ବିକ୍ଷିପ୍ତ । ଚିରା ଜାମା ପିନ୍ଧିଛି, ଯାହା ଭିତରୁ ମଇଳା ଅଣ୍ଡରୱେୟାର ଅଧା ବାହାରକୁ ଦିଶୁଛି । ଖାଲି ପାଦ ।]

ଦେବକୀ : (ଚୁପ୍ ହୋଇ ଯାଇଥିବା ପିଲାଟିକୁ ଖଟ ଉପରେ ଶୁଆଇ ଶୁଆଇ) ବହୁତ ଡେରିରେ ତମେ ଆସିଲ ରାଜ ।

ରାଜ : ଭାଉଜ, ପାଞ୍ଚଟା ଟଙ୍କା ଦେଲ ।

ଦେବକୀ : ରାଜ, ଲାଲାଜୀ ଚାଲିଗଲେ ।

ରାଜ : (ବିନା ଦ୍ୱିଧାରେ) କେବେ ? (ଖୁସି ହୋଇ) ସତେ ? ତା'ହେଲେ ତମେ ଏଥର ମତେ ପାଞ୍ଚ ଟଙ୍କା ନ ଦିଅ । ମୁଁ ଲାଲାଜୀଙ୍କ ବାକ୍ସରୁ ନେଇନେବି । (ଉପରକୁ ଯିବାକୁ ଲାଗିଲା ।)

ଦେବକୀ : (ବାଟ ଅବରୋଧ କରି) ତା' କରନି ରାଜ ! ଏବେ ଲାଲାଜୀଙ୍କର ଶରୀର ଥଣ୍ଡା ହୋଇନି । ମୁର୍ଦ୍ଦାରର ଧନ ଚୋରି କରାଯାଏନାହିଁ ।

ରାଜ : ହେଲେ ମୋର ଟଙ୍କା ଦରକାର । ମୋ ବାପ ମରିଛି ; ତମେ କାହିଁକି ଦୁଃଖ କରୁଚ ? ଘୁଂଚ ଯାଅ ମୋ ଆଗରୁ ।

ଦେବକୀ : ରାଜ, ତୁମ ଗୋଡ଼ ତଳେ ପଡ଼ୁଚି । (ନଇଁପଡ଼ି) ସେ ପାପ କର ନାହିଁ । ଏଇ ନିଅ, ପାଞ୍ଚ ଟଙ୍କା ମୋଠୁଁ ନେଇ ଯାଅ ।

ରାଜ : (ଭାବି) ହଉ ! (ରାଜ ଦେବକୀ ହାତରୁ ନୋଟ୍ ନେବା ସମୟରେ ନାରାୟଣ କାନ୍ଧରେ ପୁଟୁଳି ରଖି, ହାତରେ ବ୍ୟାଗ୍ ଝୁଲେଇ ଭିତରକୁ ଆସିଲା ।)

ନାରାୟଣ : ରାଜ !

ରାଜ : ଭାଇ ! (ରାଜ ଦୌଡ଼ିଯାଇ ନାରାୟଣଙ୍କୁ କୁଣ୍ଢାଇ ଧରିଲା । ନାରାୟଣଙ୍କ ହାତରୁ ବ୍ୟାଗ୍ ଖସିପଡ଼ିଲା ଏବଂ ତିନି ଚଟାଣ ଉପରେ ବିଂଚି ହୋଇ ପଡ଼ିଲା । ରାଜ ମୁଠାଏ ତିନି ନେଇ ପାକିଟରେ ପକାଇଲା ।) ଭାଇ, ଇଏ କ'ଣ ? (ନାରାୟଣଙ୍କ ହାତରୁ ରେସନ୍ କାର୍ଡ ଏବଂ ଚାବି ସବୁ ନେଇ ସେଗୁଡ଼ିକୁ ବାରଂବାର ଦେଖିଲା । ରେସନ୍ କାର୍ଡ ପଢ଼ି—) ଲାଲା କରମ୍ ଚାନ୍ଦ, ବୟସ 72 ସାଲ । (କାର୍ଡ ଫେରାଇ ଦେଇ) ଲାଲାଜୀଙ୍କ ରେସନ୍ ! ଭାଇ, ଏଇଟା ମଧ୍ୟ ଆପଣ ଠିକ୍ କରିଛନ୍ତି ? (ନାରାୟଣଙ୍କଠାରୁ ପୁଟୁଳି ନେଇ ହାତ ପୂରେଇ ଦେଖି) ଇଏ କ'ଣ ? ଅଟା ? (ହସିକରି ବ୍ୟାଗ୍‌କୁ ଚିପି) ଇଏ—ଅଟା ।

[ରାଜ ହସି ଉଠିଲା ଜୋର୍‌ରେ । ବ୍ୟାଗ୍‌କୁ ଓ ପୁଟୁଳିକୁ ଗୋଟାଏ ପଟକୁ ଘୁଂଚେଇ ଦେଲା । ପିଲଟି ଉପରୁ ଚାଦର ଟାଣି ନେଇ ତା'ର ପିଠି ଥାପୁଡ଼େଇ ଦେଲା । ନାରାୟଣ ଏବଂ ଦେବକୀଙ୍କୁ ଚାହିଁ ଚାହିଁ ବାହାରକୁ ଚାଲିଗଲା ।]

ଦେବକୀ : (ଖଟ ତଳୁ ବାକ୍‌ସ କାଢ଼ି) ଆଗ ଏଥିକୁ ନେଇ ଥୁଅ ।

ନାରାୟଣ : ତମେ ଏଥିକୁ ନେଇ ଥୋଇନ ?

ଦେବକୀ : ରଖନ୍ତି କେମିତି ? ତମେ ଯେମିତି ଯାଇଚ ବିଲୁ କାନ୍ଦିବାକୁ ଲାଗିଲା । ଇଆଡ଼େ ରାଜ ଦରଜା ଖଟ୍‌ଖଟ୍ ଆରମ୍ଭ କରିଦେଲା । କଷ୍ଟରେ ଜିନିଷପତ୍ରକୁ ଏକାଠି କରି ସିନ୍ଦୁକରେ ପୂରାଇ ଖଟ ତଳେ ଲୁଚେଇଦେଲି ।

ନାରାୟଣ : (ସିନ୍ଦୁକରେ ଜିନିଷପତ୍ରକୁ ସଜେଇ ତାକୁ ବନ୍ଦ କରିଦେଲା । ତା'ପରେ କିଛି କଥା ମନେ ପକାଇ) ତମେ ବି ଦୃଷ୍ଟି ଦେଲନି—ରାଜ ଦୋକାନ ଚାବି ସବୁ ଧରି ଚାଲିଗଲା ଯେ !

ଦେବକୀ : ଆଉ ସାଙ୍ଗରେ ଚାଦରଟା ବି…

ନାରାୟଣ : ସେ ତ ଏଇନା ସବୁ ଲୁଟି ଦବ । ମୁଁ ଯାଉଚି ।

[ସିନ୍ଦୁକଟାକୁ ତୁରନ୍ତ ସେ ଦେବକୀ ହାତରେ ଦେଇଦେଲା । ବାହାରକୁ ସେ ଧାଇଁ

ଯିବାକୁ ଚେଷ୍ଟା କରୁଥିଲା । ଦରଜା ଦେଇ ଭିତରକୁ ଆସୁଥିବା ଆଉ ଏକ ଲୋକ ସାଙ୍ଗରେ ତା'ର ଧକ୍କା ହେଲା । ସେ ଦାରୋଗା । ଅଧା ବୟସର ଲୋକ । ମୁଣ୍ଡରେ ଖାକି ପଗଡ଼ି ଏବଂ ହାତରେ ଷ୍ଟିକ୍ । ତାଙ୍କୁ ଦେଖି ଦେବକୀ ସିନ୍ଦୁକକୁ ଖଟ ତଳେ ଲୁଚେଇ ଦେଲା ଏବଂ ବନ୍ଦ ହୋଇ ପଡ଼ିଥିବା ଚନ୍ଦ ଉପରେ ଲୁଗା ଘୋଡ଼େଇ ଦେଲା ।]

ଦାରୋଗା : ଟିକିଏ ସମ୍ଭାଳି ଚାଲ ଭାଇ ନାରାୟଣ ଦାସ ! (ନାରାୟଣ ହାତ ଯୋଡ଼ି ପଛକୁ ଘୁଞ୍ଚି ଆସିଲା ।) କଥା କ'ଣ ?

ନାରାୟଣ : ନମସ୍ତେ ଦାରୋଗା ସାହେବ ! (ସିଡ଼ି ଆଡ଼କୁ ସଙ୍କେତ କରି) ଆଜ ସକାଳୁ ଲାଲାଜୀ ଚାଲିଗଲେ ।

ଦାରୋଗା : ଚାଲିଗଲେ ? କିନ୍ତୁ ତମେ ଏତେ ଧାଁ ଦଉଡ଼ କରୁଚ ଯେ, ଯେମିତିକି ଲାଲାଜୀଙ୍କର ଘୋଡ଼ା ଚଢ଼ିବାର ଅଛି ।

ନାରାୟଣ : ନା ଆଜ୍ଞା, ଏ ସମୟରେ ତ ହୋସ୍ ଉଡ଼ିଯାଉଚି ।

ଦାରୋଗା : ଓହୋ, ବହୁତ ଦୁଃଖର କଥା । (ଆସ୍ତେ) ମୁଁ ବାହାରୁ ଡାକିଲି; କିନ୍ତୁ କୌଣସି ଜବାବ ପାଇଲି ନାହିଁ । ପୁଣି ଭାବିଲି, କଥାଟା କ'ଣ—ଭିତରେ ଯାଇ ଦେଖି ଆସେ । ମୋର ଅଫିସରେ ଜରୁରୀ କାମ ଥିଲା । ଭାବିଲି, ତମକୁ କହି ଦେଇ ଯିବି ଯେ, ଆଜ ଆଉ ଡିପୋ ଦେଖିବାକୁ ଆସି ପାରିବି ନାହିଁ ।

ନାରାୟଣ : ଆପଣଙ୍କ ଦୟା । ଆମ ଭଳି ଗରିବଙ୍କ ପ୍ରତି ବଡ଼ ଶୁଭ ଦୃଷ୍ଟି ରଖିଛନ୍ତି ଆପଣ ।

ଦାରୋଗା : ବହୁତ ଦୁଃଖର କଥା ଭାଇ, ବହୁତ ଦୁଃଖର କଥା । ଖୁଡ଼, ସେ ତ ପୁରା ବୟସ ଭୋଗ କରିସାରିଥିଲେ ।

ନାରାୟଣ : ହଁ ଆଜ୍ଞା, ଅଶୀ ବର୍ଷରୁ ଅଧିକ ହୋଇସାରିଥିଲା ।

ଦାରୋଗା : ଖୁଡ଼, ତା'ହେଲେ ତାଙ୍କର ଯିବାର ହିଁ ଥିଲା । ତାଙ୍କର ସମୟ ପୁରା ହୋଇ ଯାଇଥିଲା । ତଥାପି ମା-ବାପ ତ ବଡ଼ । ଧୈର୍ଯ୍ୟ ଧର ନାରାୟଣ ! ଈଶ୍ୱର ତମକୁ ସାହସ ଦିଅନ୍ତୁ । (ଟିକିଏ ରହି) କୋକେଇ ନେଇ କେତେବେଳେ ଯିବ ?

ନାରାୟଣ : ଦ୍ୱିପହରକୁ ଯିବୁ ଆଜ୍ଞା ! ଏବେ ସୁଦ୍ଧା ସାଇ-ପଡ଼ଶା ଆଉ ଜ୍ଞାତି-କୁଟୁମ୍ବଙ୍କୁ ଖବର ମଧ୍ୟ ଦିଆହୋଇନି ।

ଦାରୋଗା : ଠିକ୍ ଅଛି । ଆଜି କିଛି ଅଧିକା କାମ ପଡ଼ିଗଲା । ଯଦି ଅଫିସରୁ ଶୀଘ୍ର ମୁକୁଳିବି ତେବେ ଏଇ ବାଟେ ନିଶ୍ଚୟ ଆସିବି ।

[ନାରାୟଣ ଦାରୋଗାଙ୍କ ଆଗରେ ହାତ ଯୋଡ଼ିଲା । ଦାରୋଗା ଯିବାକୁ ଉଦ୍ୟତ ହେଲା-ବେଳେ ରାଜ ମୁଣ୍ଡରେ ଗଣ୍ଠିଲି ଧରି ଭିତରକୁ ପ୍ରବେଶ କଲା ଏବଂ ଦାରୋଗାଙ୍କ ସାଙ୍ଗରେ ଧକ୍କା ଖାଇଲା ।]

ଦାରୋଗା : ଆବେ ଉହ । ଭଲ, ବାପ ମରିବା ଖୁସିରେ କ'ଣ ଏ ଧାଁ-ଦଉଡ଼ ଚଲେଇଚୁ ? କ'ଣ ଧରି ଆସିଚୁ ?

[ରାଜ ଗଣ୍ଠିଲି ତଳେ ଥୋଇଲା । ଦାରୋଗା ହାତ ମାରି ଦେଖିଲା ।]

ରାଜ : ନମସ୍ତେ ଦାରୋଗାଜୀ ! ମୁଁ ରେସନ୍ ଆଣିଛି ଆଜ୍ଞା...

ଦାରୋଗା : ଏତେଗୁଡ଼ା ଚାଉଳ ! କୋଉ କୁମ୍ଭକର୍ଣ୍ଣର ରେସନ୍ ଆଣିଲୁ କି ?

ରାଜ : ନାହିଁ ହଜୁର ! ଚାଉଳ କମ୍, ବାକି ତ ଅଟା ।

ଦାରୋଗା : କହୁ ଏ ରେସନ୍ କାହାର ?

ରାଜ : ଲାଲାଜୀଙ୍କର... (ଇଆଡ଼େ ସିଆଡ଼େ ଚାହିଁ)

ଦାରୋଗା : ଲାଲାଜୀଙ୍କ ରେସନ୍ ! ଆଜି ମୋ ବୁଦ୍ଧି-ବିବେକର କିଛି ହେଇଗଲା, ନା ତୁମ ଦୁହିଁଙ୍କର ମୁଣ୍ଡ ବିଗିଡ଼ି ଯାଇଛି ?

ରାଜ : ହଜୁର, ବିବାହ ସମୟରେ ତ...

ଦାରୋଗା : (ରାଗିଯାଇ) ଆବେ, ବାପର ଶବ-ସଂସ୍କାର କରି ନ ହେଉଣୁ ତୋର ଏବେଠୁଁ ବିବାହ ଚିନ୍ତା ଲାଗିଗଲା ? ଠିକ୍ କରି କହ, କଥା କ'ଣ ? ନାରାୟଣ, ତମେ କୁହ ।

ନାରାୟଣ : (ଚୁପ୍ ରହିଲା)

ରାଜ : ଦାରୋଗା ସାହେବ ! ମୁଁ କ'ଣ କହୁଥିଲି କି, ବିବାହ ଓ ମୃତକିଆ ସମୟରେ ବନ୍ଧୁମାନଙ୍କୁ ଭୁକ୍ତି ଖୁଆଇବା ନିମିତ୍ତ ପଚାଶ ଲୋକଙ୍କର ରେସନ୍ ମିଳୁଥିବା କଥା ଖବର-କାଗଜରେ ଛପା ହୋଇଥିଲା । ମୁଁ ତାହା ଆଣିଛି । ଏଇ କାର୍ଡ଼ ଦେଖି ନିଅନ୍ତୁ ।

(ନାରାୟଣ ତାକୁ ଅଟକାଇବା ନିମିତ୍ତ ଆଗେଇ ଯାଉଥିଲା । ମାତ୍ର ରାଜ ଜାଣିପାରିଲାନାହିଁ । ସେ କାର୍ଡ଼ଟିକୁ ଦାରୋଗା ହାତରେ ଦେଇଦେଲା ।)

ଦାରୋଗା : (କାର୍ଡ ପଢ଼ି) ଲାଲା କୃପା ରାମ ! ବୟସ 78 ସାଲ । (କାର୍ଡ ଓଲଟେଇ) କାର୍ଡବାଲା ମରିବା ପରେ 50 ଲୋକଙ୍କ ପାଇଁ ରେସନ୍ ଦିଆଗଲା । ନାରାୟଣ ଦାସ, ଡିପୋ ନଂବର 17 । ନାରାୟଣ ! ଏ ରେସନ୍ ତ ତମରି ଡିପୋରୁ ଆସିଚ । ହଁ, ଆଉ ତା' ସାଙ୍ଗରେ ବି ଏ ସପ୍ତାହର ରେସନ୍ ଦିଆହୋଇଛି । (ଭାବି) ରେସନ୍‌ର ସପ୍ତାହ ତ ଆଜିଠାରୁ ଆରମ୍ଭ ହେଉଛି; ଆଉ ତାରିଖ ତ ଆଜିର ପଡ଼ିଚ । ହସ୍ତାକ୍ଷର ଆଉ କାହାର ? ଏବେ ତ ରେସନ୍ ଡିପୋ ଖୋଲିବାର ସରକାରୀ ସମୟ ହେଇନ । ଏସବୁ କ'ଣ ? ଆବେ ସତ କହ, ତମ ବାପା ମରିଗଲେଣି ନା ଏବେ ଜୀବିତ ?

ରାଜ : (କଂପି କରି) ଆଜ୍ଞା, ମତେ ଜଣାନାହିଁ । ଆଠ ଦିନ ପରେ ଆଜି ସକାଳୁ ଘରକୁ ଆସିଚ । ଭାଉଜଙ୍କଠାରୁ ଏବେ ଶୁଣିଲି ଲାଲାଜୀ ଚାଲିଗଲେଣି ।

[ଦାରୋଗା ରାଜ ଓ ନାରାୟଣଙ୍କର କଥା ମନଧ୍ୟାନ ଦେଇ ଶୁଣୁଥିଲା । ସେତିକିବେଳେ ଦେବକୀ ସିନ୍ଦୁକଟି ଝଟିଆଡକୁ କାଢ଼ି ନିଜ ଓଢ଼ଣୀରେ ତାଙ୍କ ସିଢ଼ିରେ

ଉପରକୁ ଚାଲିଗଲା ।]

ନାରାୟଣ : ମହାଶୟ, ଲାଲଜୀ ଗାଡ଼ ନିଦରେ ହିଁ ଚାଲିଗଲେ । ଆପଣ ଉପରକୁ ଯାଇ ଦେଖନ୍ତୁ । ଆମେ ସକାଳୁ ଜାଣିଲୁ । ତାଙ୍କର ଏ ସପ୍ତାହର ରେସନ୍ ମୁଁ କାଲି ନେଇ ଆସିଥିଲି । ତାରିଖ ଆଜିର ପକେଇଥିଲି । କାଲିର ତାରିଖ ପକେଇଥିଲେ ଭୁଲ୍ ହୋଇଥାଆନ୍ତା ।

ଦାରୋଗା : ବାଃ ଭାଇ ବାଃ ! ଆଜିର ତାରିଖ ପକାଇବା ବେନିୟମ ହୋଇଥାଆନ୍ତା; କାଲୁ ସପ୍ତାହ ଆରମ୍ଭ ନ ହୋଉଣୁ ରେସନ୍ କେମିତି ନେଇ ଆସିଲ ? ଏଇଟା କ'ଣ ବେନିୟମ ନୁହେଁ ? ଏଇୟା କାହିଁକି କହୁନା ଯେ, ଗୋଟାଏ ବେନିୟମକୁ ଲୁଚାଇବା ପାଇଁ ଆଉ ଏକ ନିୟମ କରିଚୁ ।

ନାରାୟଣ : ହଜୁର ! ଘରେ ମୃତକିଆ ହେଲେ ଦୁଃଖରେ ଭାଗିଦାର ହେବାକୁ ଆସିଥିବା ବନ୍ଧୁ ବାନ୍ଧବମାନଙ୍କୁ ରୁଟି ଡାଲି ତ ଦେବାକୁ ପଡ଼ିବ । ସେଥିପାଇଁ ଲାଲଜୀଙ୍କର ରେସନ୍ ନେଇ ଆସିଥିଲି ।

ଦାରୋଗା : ଏଇ ଶୁଣ ' ତମେ କାଲିଠୁଁ କ'ଣ ଜାଣିଯାଇଥିଲ ଯେ ଲାଲଜୀ ଆଜି ମରିଯିବେ ? ଘରର ଡିପୋ କି ନା ! ଯାହା ମନକୁ ଆସିଲା, ଉପରତଳ କରିଦେଲ—କ'ଣ ଏଇୟା ନା ?

ନାରାୟଣ : ହଜୁର ! ଅଭାବ ସମୟରେ କାହାର କାହାରକୁ ସାହାଯ୍ୟ କରିବା ଦରକାର ।

ଦାରୋଗା : (କ୍ରୋଧରେ) ଆଉ ରାଜ ତମେ ? ବିନା ମଂଜୁରରେ ସରକାରୀ ଡିପୋରୁ ପରାଣ ଜଣଙ୍କର ରେସନ୍ ଉଠାଇ ଆଣିଲ । ତା' ସାଙ୍ଗେ ସାଙ୍ଗେ ଡିପୋ ହୋଲଡର୍‌ର ଜାଲ୍ ଦସ୍ତଖତ କରିଦେଲ । ବଡ଼ ସଙ୍ଗୀନ୍ ଅପରାଧ ଇଏ । ଏଇନା ତମ ଦୁ' ଭାଇଙ୍କୁ ମଜା ଚଖେଇ ଦଉଚି ରୁହ ।

ନାରାୟଣ : (ଦାରୋଗାର ପାଦତଳେ ପଡ଼ି) କ୍ଷମା କରନ୍ତୁ ହଜୁର ! ମୃତକିଆ ଦୁଃଖର ଦିନ । ସାରା ପଞ୍ଚାୟତ ଆଗରେ ଇଜ୍ଜତ ଚାଲିଯିବ ।

ଦାରୋଗା : (ଦୟା ସହ) ଠିକ୍ ଅଛି । ରାଜ, ଧର ଏ ରେସନ୍ କାର୍ଡ ଏବଂ ମୋ ସାଙ୍ଗରେ ଅଫିସ ଚାଲ । ମୁଁ ସେଇଠି ସବୁ ଠିକ୍ କରିଦେବି ।

ନାରାୟଣ : ଯା ରାଜ, ଶୀଘ୍ର ଯା ! ସାଙ୍ଗରେ ଗର୍ଣ୍ଣିଲିଟା ନେଇ ଯା । ଦାରୋଗା ସାହେବ ଯେମିତି କହିବେ, ସେମିତି କରିବୁ । (ରାଜ ଗର୍ଣ୍ଣିଲି ଉଠାଇଲା)···ଆପଣଙ୍କର ବହୁତ କୃପା ହଜୁର ! ଆମ ବାପାଙ୍କର ଶବ ଖରାପ ହେବାରୁ ରକ୍ଷା କରିଦେଲେ ।

[ସିଡ଼ିରେ ଦେବକୀର ଚିତ୍କାର ଶୁଣାଗଲା । ତା'ପରେ ସେ ଧାଇଁ ଆସୁଥିବାବେଳେ ସିନ୍ଦୁକ ସହ ପଡ଼ିଯାଇଛି ।]

ଦେବକୀ : (ଚିତ୍କାର କରି) ଲାଲଜୀ !

[ସେତିକବେଳେ ଅଶୀ ବର୍ଷର ବୁଢ଼ା ଗୋଟିଏ ହାତରେ ବାଡ଼ି ଏବଂ ଅନ୍ୟ ହାତରେ ଗିଲାସ ଧରି ଧୀରେ ଧୀରେ ସିଡ଼ିରୁ ଓହ୍ଲାଇ ଆସିଲେ । ବୁଢ଼ାର ପ୍ରତ୍ୟେକ ଜିନିଷ—ପ୍ରଚକ୍ଷୁ, କୁର୍ତ୍ତା, ଧୋତି ଆଦି ମଇଳା ଓ ଅସ୍ତବ୍ୟସ୍ତ । ଗ୍ରେଟ ଗ୍ରେଟ ଦାଢ଼ି । ସେ ଟିକିଏ ଥେଣ୍ଟାକାନ୍ ଏବଂ ଆଖିକୁ କମ୍ ଦିଶୁଥିଲା । ତାଙ୍କୁ ଦେଖି ସମସ୍ତେ ନିଜ ନିଜର ଜାଗାରେ ଠିଆ ହୋଇଗଲେ । ଦେବକୀ ଉଠିପଡ଼ିଲା ।]

ବୁଢ଼ା : (ବହୁତ ଧୀରେ ଧୀରେ ଅଟକି ଯାଉଥିବା କଣ୍ଠରେ) ବୋହୂର ଚତ୍କାର ଶୁଣା-ଯାଉଥିଲା । ସବୁ ଭଲ ତ ? (ଟିକିଏ ରହି) ଆଲୋ ମାଆ, ତୁ କେଉଁଠି ? (ଗିଲାସଥିବା ହାତକୁ ବଢ଼େଇ)—ଧର । ମୋ ଗୃ' ଗରମ କରିଦେ । ରଖି ରଖି ଥଣ୍ଡା ହୋଇଗଲାଣି । (ଡରି ଡରି ଦେବକୀ ଉଠି ଗିଲାସ ଧରିଲା । ସେତେବେଳକୁ ବୁଢ଼ା ସିଡ଼ିର ପ୍ରଥମ ପାହାଚ ପାଖରେ ପହଞ୍ଚିଥିଲା ।) ଆଜି ମୁଁ ଟିକେ ଡେରିରେ ଉଠିଲି । ଡାକ୍ତର ସୁରେଶ ସିଂହ କାଲି ଯେଉଁ ନିଦ ଔଷଧ ଦେଇଥିଲେ, ସେଇଟା ଖୁବ୍ କାମ ଦେଲା । ବଢ଼ିଆ ନିଦ ହେଲା; ଖୁବ୍ ଶୋଇଚି ମୁଁ । କିନ୍ତୁ ଦେହଟା ଟିକେ କେମିତି ଲାଗୁଚି । ଗରମ ଗରମ ଗୃ' ପିଇଦେଲେ ସବୁ ଠିକ୍ ହୋଇଯିବ । (ଶେଷ ପାହାଚରୁ ଓହ୍ଲେଇଲା ବେଳେ ସିନ୍ଦୁକକୁ ବାହାରିଥିବା ଏକ ଜିନିଷକୁ ଛୁଇଁଲା)—ଏ କ'ଣ ?

[ତଳକୁ ଗୃହିଁଲା ବେଳେ ନାରାୟଣ ନଇଁପଡ଼ି ଜିନିଷଟିକୁ ଉଠାଇନେଲା । ବୁଢ଼ା ଗୋଟିଏ ପାଦ ଆଗେଇଲା ବେଳେ ଆଉ କେଉଁ ଜିନିଷରେ ଧକ୍କା ଖାଇ ଚମକିପଡ଼ିଲା । ମାତ୍ର ନାରାୟଣ ପୁଣି ଗୃଲାକି କରି ପିତାଙ୍କର ପାଦ ଧରିନେଲା ।]

ନାରାୟଣ : ଲାଲାଜୀ ! ଔଷଧ ଦେବି ? ଆପଣଙ୍କୁ ଆଘାତ ଲାଗିଥାଇପାରେ ।

ବୁଢ଼ା : କିଛି ଦରକାର ନାହିଁ । (ଆଗକୁ ଗୃଲିଲେ । ଯେତେବେଳେ ସେ ସିନ୍ଦୁକର ବିଲକୁଲ ପାଖରେ ପହଂଚଗଲେ, ସେତେବେଳକୁ ଦେବକୀ ଓ ନାରାୟଣଙ୍କ ନିଃଶ୍ୱାସ ବନ୍ଦ ହେଇଗଲା ଭଳି ମନେହେଲା । ହଠାତ୍ ନାରାୟଣକୁ ଗୋଟାଏ ବୁଦ୍ଧି ଦିଶିଲା ।)

ନାରାୟଣ : ରାଜ ! ଲାଲାଜୀଙ୍କ ପାଇଁ ଚଉକି ଆଣ ତ ।

[ରାଜ ଉଠିବା ଆଗରୁ ଦେବକୀ ଚଉକି ଆଣି ଦେଲା । ନାରାୟଣ ସିନ୍ଦୁକ ଉପରେ ଚଉକି ପକାଇଦେଲା । ଲାଲାଜୀଙ୍କୁ ବସାଇ ସେ ତାଙ୍କ କାନ୍ଧ ଚପି ଦେବାକୁ ଲାଗିଲା ।]

ବୁଢ଼ା : ଘଷି ମୋଡ଼ି ଦେଲେ ଏଇନା କିଛି ହବ ନାହିଁ । ମୋର ଗୃ' ଗରମ ହେଲା କି ନାହିଁ ?

ଦେବକୀ : ସାଙ୍ଗେ ସାଙ୍ଗେ ଆଣୁଚି ।

[ଦେବକୀ ଅଡ଼ୁଆରେ ପଡ଼ିଥିଲା ଭଳି ଜଣାଯାଉଥିଲା । ଗିଲାସ ଉଠେଇ ନେଲାବେଳେ ସେ ରାଜକୁ ଧରି ତା' କାନ ପାଖରେ ଫୁସ୍ ଫୁସ୍ ହେଇ କ'ଣ କହିଲା । ରାଜ ଗିଲାସ ନେଇ ଖସିଗଲା ।]

ବୁଢ଼ା : (ଦାରୋଗାଙ୍କୁ ଦେଖି) କିଏ, ଦାରୋଗା ବାବୁ କି ?

ନାରାୟଣ : (ବୁଢ଼ାଙ୍କ ପଛରେ ଠିଆ ହୋଇ ଦାରୋଗାଙ୍କୁ ହାତ ଯୋଡ଼ି ମିନତି ହେଲା ।)

ଦାରୋଗା : (ସଲଜ ହୋଇ) ହଁ ଲାଲାଜୀ, ମୁଁ । କୁହନ୍ତୁ, ଦେହ କେମିତି ଅଛି ?

ବୁଢ଼ା : (ଉଠିବାକୁ ଚେଷ୍ଟା କରି) ଆପଣ ଠିଆ ହେଲେ କାହିଁକି ? ଆସନ୍ତୁ, ବସନ୍ତୁ । (ନାରାୟଣ ଆଶ୍ରା ଦେଇ ଧରିଲା)

ଦାରୋଗା : ନାହିଁ ଆଜ୍ଞା, ଆପଣ ବସନ୍ତୁ । ମୁଁ ଏଇଠି ବସୁଚି । (ଖଟିଆର ଗୋଟାଏ କଡ଼କୁ ସେ ବସିପଡ଼ିଲେ ।)

ବୁଢ଼ା : ମୋ ଦେହ ତ ଏ ବୟସରେ ଟୋକାଙ୍କ ଭଳି ହୋଇ ରହିନି । ବଂଚି ରହିଚି, ସେତିକି ଭଗବାନଙ୍କ ଦୟା । ଠିକ୍ ଭାବରେ ନିଦ ଆସୁ ନ ଥିଲା । କାଲି ମୁଁ ଡାକ୍ତର ସୁରେଶ ସିଂହ ପାଖକୁ ଚାଲିଯାଇଥିଲି । ସେଇ ସେ, ଯାହାଙ୍କ ଦୋକାନ ନାରାୟଣର ଡିପୋକୁ ଲାଗିଚି । (ଦେବକୀ ସନ୍ଧ୍ୟାକଥାର ସହିତ ଚଉକି ତଳେ ଥିବା ସିନ୍ଦୁକକୁ ଘୁଞ୍ଚେଇ ନେଇ ସେଥିରେ ଜିନିଷମାନ ଭର୍ତ୍ତି କରୁଥିଲା ।) ମୁଁ କହିଲି, ଡାକ୍ତର ସାହେବ ! ନିଦ ଆସୁନି । ତା'ପରେ ସେ ଗୋଟାଏ ଔଷଧ ପ୍ରସ୍ତୁତ କରିଦେଲେ । କହିଲେ, ଯଦି ମୋଟେ ନିଦ ନହେବ, ତେବେ ପୂରା ଚାମଚ ଔଷଧ ଖାଇବାକୁ ହେବ । କାଲି ରାତିରେ ପଡ଼ୋଶୀ ଘରେ କୋଉଠି ବାହାଘର ହେଉଥିଲା । ତେଣୁ ଅଧରାତି ଯାଏ ପାଟିତୁଣ୍ଡ ଲାଗିରହିଥିଲା । କେତେ ଔଷଧ ଖାଇଲି, ସେଥିରେ କି ନିଦ ହୁଏ ? ଅଧ ରାତି ପରେ ମୁଁ ପୂରା ଚାମୁଚେ ଔଷଧ ଖାଇଦେଲି । ଡାକ୍ତର ତ କହିଥିଲେ, ମୋଟେ ନ ଆସିଲେ ପୂରା ଚାମୁଚେ ଖାଇବ ।

[ସିନ୍ଦୁକରେ ଥିବା କୌଣସି ଗୋଟାଏ ଜିନିଷ ଉପରେ ବୁଢ଼ାର ଆଖି ପଡ଼ିଗଲା । ଦେବକୀ ସେ ଆଡ଼କୁ ସଙ୍କେତ କରି ନାରାୟଣର କାମିଜ୍ ଟାଣୁଥିଲା । ନାରାୟଣ ଜିନିଷଟିକୁ ଉଠେଇ ଧରିନେଲା ।]

ବୁଢ଼ା : କ'ଣ ?

ନାରାୟଣ : କିଛି ନୁହେଁ ଲାଲାଜୀ ! ଲୁଗା ପଡ଼ିଯାଇଥିଲା ।

ବୁଢ଼ା : ବୁଝିଲେ ଦାରୋଗାବାବୁ ! ଯୋଉ ଡାକ୍ତରର ଔଷଧ ଖାଇବେ ନା, ତାଙ୍କର କହିବା ମୁତାବକ ଚଳିବା ଦରକାର । ନ ହେଲେ ଔଷଧ କାମ ଦବନି । ତା'ପରେ ଔଷଧ ଖାଇ ଦେଲି ପରେ ଗହିରିଆ ନିଦ ଆସିଗଲା । ତେଣୁ ସବୁଦିନ ଅପେକ୍ଷା ଟିକିଏ ବିଳମ୍ବରେ ଉଠିଲି । ନାରାୟଣର ସ୍ତ୍ରୀ ସକାଳୁ ସକାଳୁ ମୋ ମୁଣ୍ଡ ପାଖରେ ଚା' ଗିଲାସ ରଖି ଆସେ । ଆଜି ମଧ୍ୟ ରଖି ଆସିଥିଲା ; କିଂତୁ ମୁଁ ଡେରିରେ ଉଠିଲି । ସେଇଥିପାଇଁ ଚା' ଥଣ୍ଡା ହୋଇଗଲା । ଭୁଲଟା ତ ମୋର ; ତା'ରବା ଦୋଷ କ'ଣ ! (ଟିକିଏ ହସିଲା । ଦେବକୀ ସିନ୍ଦୁକ ଉଠେଇ ଆଣିଲା ।) କ'ଣ ବୋହୂ, ଚା' ଗରମ ହେଲା ନା ନାହିଁ ? (ଚୁଲି ଆଡ଼କୁ ଚାହିଁ) କିଂତୁ ଦେବକୀ ତ ଏଠି ନାହିଁ । ଆଉ ଚୁଲିରେ ତ ଆଜି ନିଆଁ ମଧ୍ୟ ନାହିଁ । ଦେବକୀ କେଉଁଠି

କି ନାରାୟଣ ?

ନାରାୟଣ : (ବିଚଳିତ ହୋଇ) ଏଇଠି କୋଉଠି ଥିବ, ଲାଲଜୀ !

ବୁଢ଼ା : ଆଜି କ'ଣ ଚୁଲି ଲଗିନି ?

ନାରାୟଣ : ଚୁଲି ତ ଲଗିଥିଲା । ଦେବକୀ ଲିଭେଇ ଦେଇଥିବ । ଆପଣ ଆଜି ବହୁତ ଡେରିରେ ଉଠିଲେ । ଆଉ ଆଜିକାଲି ଚୁଲିର ଜାଳ ତ ଶୀଘ୍ର ଲିଭିଯାଉଚି ।

ବୁଢ଼ା : ମୁଁ ବେଶି ଡେରିରେ ତ ଉଠିନି ! କେତେ ବାଜିଲା କି ଦାରୋଗା ସାହେବ ?

ଦାରୋଗା : (ପକେଟରୁ ଘଡ଼ି କାଢ଼ି) ସମୟ ଲାଲଜୀ··· ··ମୋ ଘଡ଼ିରେ ତ ଏବେ ସାଢ଼େ ଛଅଟା ବାଜିଚି । (ନାରାୟଣ ହାତ ଯୋଡ଼ିକରି ଦାରୋଗାଙ୍କୁ ଅନୁନୟ ହେଲା । ଦାରୋଗା ଘଡ଼ିକୁ କାନ ପାଖକୁ ନେଇ) ଏଃ, ମୋ ଘଡ଼ି ତ ବନ୍ଦ ହେଇ ଯାଇଛି ।

ବୁଢ଼ା : (କାନ ପାଖକୁ ଆଣି) କ'ଣ କହୁଚନ୍ତି ଦାରୋଗା ବାବୁ ?

ଦାରୋଗା : ମୋ ଘଡ଼ି ବନ୍ଦ ହେଇ ଯାଇଛି ।

—(ଟିକିଏ ନୀରବତା)—

ବୁଢ଼ା : ମୁଁ ତଳକୁ ଆସିଲା ବେଳକୁ ରାଜ ଭଳି କିଏ ଜଣାପଡ଼ୁଥିଲା ।

ନାରାୟଣ : ହଁ ଆଜ୍ଞା, ସେ ଏଇଠି ଥିଲା । ଏଇନା ଆସିଯିବ ।

ବୁଢ଼ା : ଆଉ ତୁ ଆଜି ଦୋକାନ ଖୋଲିବୁନି କି ?

ନାରାୟଣ : ଖୋଲିବ ଲାଲଜୀ !

ବୁଢ଼ା : (ତୁରନ୍ତ ସ୍ୱରେ) ତୁ ମତେ କାହିଁକି ଘର୍ଷି ମୋଡ଼ି ଦଉଚୁ ? ଆଗରୁ ତ ଏମିତି କେବେ କରୁ ନ ଥିଲୁ । (ଟିକିଏ ରହି) ଏସବୁ କ'ଣ ହେଉଚି ? ମୋ ଦେହ ଘୋଳି ହେଉଚି; ଅଥଚ ମତେ କେହି ଗ୍ଧ' ଦଉନାହାନ୍ତି । ଦେବକୀର କୁଆଡ଼େ ଦେଖାଦର୍ଶନ ନାହିଁ ।(ଦେବକୀ ସିଡ଼ି ଦେଇ ଆସୁଥିଲା । ଏ ବାକ୍ୟ ଶୁଣି ସେଇଠି ଅଟକିଗଲା ) ରାଜ ଏବେ ଏଇଠି ଥିଲା; ସେ ବି କୁଆଡ଼େ ଛପିଗଲାଣି । ତୁ ମୋ ମୁଣ୍ଡ ଉପରେ ଏମିତି ଠିଆ ହେଇଚୁ ଯେ, ମନେ ହଉଚି କାମଧାମ ସବୁକୁ ଜଳାଂଜଳି ଦେଇ ଦେଲୁଣି । ଦାରୋଗାସାହେବଙ୍କ ଘଡ଼ି ବନ୍ଦ ହେଇ ଯାଇଛି । ଚୁଲି ଆଜି ଜଳନାହିଁ । (ଠିଆହୋଇପଡ଼ି) କହ, କଥା କ'ଣ ? (ସମସ୍ତଙ୍କ ଆଡ଼କୁ ଚାହିଁଲା । ଦ' ତିନି ପାଦ ଚାଲି ମଂଚ ମଝିରେ ଠିଆ ହୋଇଗଲା । କେହି ହଲଚଲ ହେଲେ ନାହିଁ ।) ଆଜି କ'ଣ କିଏ ମରିଗଲା ?

[ସମସ୍ତେ ପଥର ଭଳି ସ୍ଥିର ହୋଇ ଠିଆ ହୋଇଥିଲେ । କୃଷ୍ଣା ବାହାରୁ ଧାଇଁ ଧାଇଁ ଭିତରକୁ ଆସି ବୁଢ଼ାର ଗୋଡ଼ରେ ଝୁଲିପଡ଼ିଲା । ବୁଢ଼ା ତା'ର ପିଠି ଉପରେ ହାତ ବୁଲାଇଲା ।]

କୃଷ୍ଣା : (ପଛକୁ ହଟିଯାଇ) ଲାଲଜୀ ! ଆପଣ ତ ମରିଯାଇଥିଲେ । ମରିଗଲା ପରେ ଲୋକ

ଯୋଉଠିକି ଯାଆନ୍ତୁ ସେଠିକାର କାହାଣୀ ମତେ ଶୁଣେଇବ ନା ?

[ବୁଢ଼ା ଚଉକି ଖୋଜିବାକୁ ଲାଗିଲା । ସେ ଚଉକି ଧରିଲା ବେଳକୁ ତାହା ଭେଡ଼ା ହୋଇଯାଉଥିଲା । ଦେବକୀ, ନାରାୟଣ ଓ ଦାରୋଗା ତାଙ୍କୁ ସାହାଯ୍ୟ ଦେବାକୁ ଆଗଭର ହେଉଥିଲେ ।]



## ପାତ୍ର

ଶେରୁ
କରମୋ
ନମ୍ବରଦାର୍
ଅମ୍ମୋ
କରମ ସିଂହ
ରାଜା (ଭଣ୍ଡାରି)

[ଗୋଟାଏ ଗାଆଁର ମଝାମଝି ଏକ ଭଙ୍ଗା ଦଦରା ଘର, ଯାହାର ମୁଖ୍ୟ ଦ୍ୱାରଟି ପୂର୍ବ ପଟକୁ ଅଛି । ତାହା ମଧ୍ୟ ଦୁର୍ଗନ୍ଧ ଓ ଆବର୍ଜନାପୂର୍ଣ୍ଣ ଗଳି ଆଡ଼କୁ ଖୋଲେ । ଅଗଣାରେ ନିମଗଛଟିଏ । ଗଛ ମୂଳରେ ଗୋଟିଏ ଦୀର୍ଘକାୟା ସୁନ୍ଦରୀ ନାରୀ । ବୟସ ତିରିଶ ବର୍ଷ । ପିଢ଼ାରେ ବସି ସେ ଆଖିରେ କଜ୍ଜଳ ମାଖୁଥିଲା । ସେ ନୂଆ ଲୁଗା ପିନ୍ଧିଛି; ମାତ୍ର ମଝିରେ ମଝିରେ ତା' ମୁହଁରେ ଦୁଃଖର ଛାୟା ଖେଳିଯାଉଥିଲା । ଅଇନା ଉଠାଇ ମୁହଁ ଦେଖି ସେ ଖୁସି ହେଉଥିଲା । ଦ୍ୱାରରେ ବାହାରୁ କାହାର ଆବାଜ ଶୁଣାଗଲା । ସାଙ୍ଗେ ସାଙ୍ଗେ ଦର୍ପଣ ଓ କଜଳପାତିକୁ ସେ ପିଢ଼ା ତଳେ ଲୁଚେଇ ଦେଇ ଶିକୁଳି ଖୋଲିବାକୁ ଉଠିଗଲା ]

ବାହାରୁ ସ୍ୱର : ଅମ୍ବୋ ! ଅମ୍ବୋ !! ମୁଁ ପଚାରୁଚି, ତମେ ପ୍ରସ୍ତୁତ ହେଲଣି କି ନାହିଁ ?

ଅମ୍ବୋ : (ଓଢ଼ଣାରେ ମୁଣ୍ଡ ଓ ମୁହଁ ଢାଙ୍କି ଶିକୁଳି ଖୋଲିଲା) ପ୍ରସ୍ତୁତ କ'ଣ ହେବି ମ ? କୋଉ ଘୋଡ଼ାଚଢ଼ା କାମ ଅଛି ଯେ !

(ଶେରୁ ତିରିଶ ବର୍ଷର ସୁସ୍ଥ ଯୁବକ । ତାହାର ଗଳାରେ କଣ୍ଠି, ଅଣ୍ଟାରେ ଲୁଙ୍ଗୀ, ମୁଣ୍ଡରେ ପଗଡ଼ି । ମୁହଁ ଏବଂ ଦାନ୍ତ ଅତରରେ ସୁଗନ୍ଧିତ ।)

ଶେରୁ : (ଦାନ୍ତରେ ହାତ ମାରି) ଆଃ ! କ'ଣ ଦିଶୁଚ ତମେ ?

ଅମ୍ବୋ : ଭିତରକୁ ଆସ । ଦରଜା ପାଖରେ କାହିଁକି ଠିଆ ହୋଇଚ ?

ଶେରୁ : (ସ୍ମିତ ହସି) ମୁଁ ଭାବୁଥିଲି ତମେ ବୋଧେ ଚିହ୍ନି ପାରୁନ ?

ଅମ୍ବୋ : ତମକୁ ଚିହ୍ନିବି ନାହିଁ ତ ଆଉ କାହାକୁ ଚିହ୍ନିବି ?

ଶେରୁ : ତା'ହେଲେ ଓଢ଼ଣା ଟାଣିଛ କାହିଁକି ? ଘର ଲୋକର ଆଖି ପଡ଼ିବନି ବୋଲି ? ଓଢ଼ଣା ଉଠାନା, ମୁଁ ଟିକେ ଦର୍ଶନ କରେ ।

ଅମ୍ବୋ : (ଓଢ଼ଣା ଉଠାଇ ହସିଲା) ତମକୁ ଦେଖି ମତେ ଆଜି ଭାରି ଲାଜ ମାଡ଼ୁଚି ।

ଶେରୁ : (ଏକଧ୍ୟାନରେ ତା' ଆଡ଼କୁ ଚାହିଁରହି) ଅମ୍ବୋ ! ମୋ ଆଡ଼କୁ ଟିକେ ଚାହିଁ !

ଅମ୍ବୋ : କହୁନ, କ'ଣ କହିବ ?

ଶେରୁ : ମୁଁ ଭାବିଲି, ଶଙ୍କା ତୁଟେଇ ଦିଏ । ଯେମିତି ଆଉ କିଏ ହୋଇଥିବ ତମଛଡ଼ା । ଗୁଣ ଖାଉଚି, ଆଜି ସବୁ କିଛି ବଦଳିଯାଇଛି । ତମେ ଆଜି ଏମିତି ତୋଫା ଦିଶୁଚ, ଠିକ୍ ଯେମିତି ବର୍ଷା ପରର ନୈନାଂ ଦେବୀଙ୍କ ମାବଲି ମନ୍ଦିର ।

ଅମ୍ବୋ : (ହସି ହସି କେତେ ଅଙ୍ଗଭଙ୍ଗୀ ସୃଷ୍ଟି କରି) ସତେ !

ଶେରୁ : ମୋର ମନେହେଉଚି ସରଗରୁ କୋଉ ପରୀ ଓହ୍ଲେଇ ଆସିଚି, ପରୀ !

ଅମ୍ବୋ : ବାସ୍, ସେତିକି ଥାଉ । ଆଉ ମତେ 'ଲଜ୍ଜିତ କରନା ।

ଶେରୁ : ମିଛ ନୁହେଁ, ଆଜି ପ୍ରଥମଥର ତମକୁ ଏତେ ଖୁସି ହେବାର ଦେଖୁଚି ।

ଅମ୍ବୋ : ତମକୁ ଦେଖି ମୋ ମନରେ କ'ଣ ନାହିଁ କ'ଣ ଭାବନା ଆସୁଚ । ଏ
ମନେ ହେଉଚ, ଯେମିତକ ଚଉଦ ବର୍ଷର ଦୁଃଖ ପୂରାପୂର ଖୁସିରେ ବଦଳଯାଇଛୁ ।

ଶେରୁ : ଅମ୍ବୋ ! ତମେ ଏ ଯାଏ କ'ଣ ବା ଦେଖିଲ ? ତମେ ପାଗଲୀଟିଏ
ହେଇଥିପାଇଁ ଆଳୁଯାଏ ନର୍କରେ ପହଁରୁଥିଲ ।

ଅମ୍ବୋ : (ଦୀର୍ଘଶ୍ୱାସ ନେଇ) ଏଥିରେ କଛୁ ମିଛ ନାହିଁ ! ନରକ ଭଳିଆ ନରକ !

ଶେରୁ : ତମର ଝୁମୁକା, ଚୂଡ଼ି ଆଉ ଲୁଗାପଟା ସବୁ ଠିକ୍‌ଠାକ୍ କରଚ ତ ?

ଅମ୍ବୋ : ତମେ ଯାହା ଆଣିଛ ସବୁ ଠିକ୍ ଅଛୁ ।

ଶେରୁ : କୋଉ କଥାରେ କମ୍ ତ ହେଇନ ? ହଁ, ଆଗ କୁହ ତ, ଘଡ଼ଚେନ୍ କେ
ଅଲଙ୍କାରର ନାଁ ?

ଅମ୍ବୋ : ତମେ କୋଉଠୁ ଏ ନାଁ ଶୁଣିଲ ?

ଶେରୁ : କାଲ ଯେତେବେଳେ ମୁଁ ସହର ଯାଇଥିଲ, ଆମ ଘୋଡ଼ାଗାଡ଼ିରେ ଦୁଇ
ସହରୀ ସ୍ତ୍ରୀଲୋକ ବସିଥିଲେ । ଜଣେ କହୁଥିଲ, ମୁଁ ମୋ ବୋହୂକୁ ଘଡଚେନ୍ ତଆର କ
ଦେଇଚ । ତଆର କଲବାଲ ବଣିଆର ବହୁତ ପ୍ରଶଂସା କରୁଥିଲ ।

ଅମ୍ବୋ : (ହସିକର) ଗୋଟାଏ ପ୍ରକାର ସୁନା ଅଲଙ୍କାର । ହାତର ଗଣ୍ଠି ପାଖ
ବନ୍ଧାଯାଏ; କନ୍ତୁ ତା'ପାଇଁ ତ ବହୁତ ପଇସା ଲଗେ ।

ଶେରୁ : ତମେ ପଇସା ଚନ୍ତା କରନା—ଜମିବାଡ଼ି ବନ୍ଧା ପଡ଼ୁ ପଛେ; ତମକୁ ଘଡ଼ଚେ
ନଶ୍ଚେ ତଆର କରଦେବ । ନଚେତ୍ ତମେ କେମିତ ବୁଝିବ, ସେ ଶୁଣିଆ ଜଣକ ସାଙ୍ଗ
ସମ୍ବନ୍ଧ ପଡ଼ିଥିଲ ବୋଲି ।

ଅମ୍ବୋ : ମୋର କୌଣସି ଜନଷ ଦରକାର ନାହିଁ । ତମର ସାଙ୍ଗରେ ସବୁ କ
ଆସିଯାଇଛୁ ।

ଶେରୁ : ସମସ୍ତ ବଡେଇବାକୁ ଏଠିକ ଆସିନ । ଖାଇବା ଆଉ ପିନ୍ଧବା—ଦୁଇଟା ଜନ
ଅଛୁ ଏ ଦୁନଆରେ । ଦେହକୁ ସୁଖୀ ଓ ମନକୁ ଖୁସି ରଖିବା ହିଁ ମୁଁ ଜାଣେ । ଅଢ଼େ
ଧନର ଜୀବନଟାକୁ ମଜାରେ—ମଜାରେ ନ କଟେଇ ବୁଢ଼ାକୁ କାହିଁକ ଧଂଦହେବା !

ଅମ୍ବୋ : (ପିଢ଼ା ଦେଇ) ତମେ ଟିକେ ବସ ।

ଶେରୁ : ବସିବ, ନୂଆ କୂଅ ଉପରେ, ଶିଂଶପା ଗଛରେ ବସିବ । ତମେ ଯେତେବେ
ରୁଟି ଧର ଆସୁଥିବ ଆଉ ମୁଁ କ୍ଷେତରେ କାମ କରୁଥିବ ।

ଅମ୍ବୋ : (ଦୀର୍ଘଶ୍ୱାସ ଛାଡ଼ି) ଯୋଉଠି ମୁଁ ବାହାଘର ଗୀତ ଶୁଣୁଥିଲ ?

ଶେରୁ : ପଛ କଥା ଛାଡ଼ । ଏବେ ତମେ ସେହି କ୍ଷେତର ରାଣୀ ହେବ, ରାଣୀ ।

ଅମ୍ବୋ : ଆଉ ତମେ, ରାଜା ।

**ଶେରୁ : ତମର ସାଙ୍ଗରେ ତ ରୁମର ବାଦ୍‌ଶାହା । ମୁଁ ମାନୁଚ ଯେ, କାମିକା ସ୍ତ୍ରୀଲୋ**

ବିନା ବଞ୍ଚିବାର କୌଣସି ମୂଲ୍ୟ ନାହିଁ । (ମଉଆଳ ନଜରରେ ତାକୁ ଚାହିଁ)

'ଯୋଡ଼ିଆଁ ଜଗଯୋଡ଼ିଆଁ ଦେଁ ନରଡ଼ ବଦେରେ' (ଭଲ ଯୋଡ଼ି ଦୁନିଆରେ କମ୍ ମିଳନ୍ତି ଆଉ ମନ୍ଦ ଅନେକ)

ଅମ୍ବୋ : (ହସି ହସି ତା' ହାତ ଧରି) ସତ କହୁଚ, ନା ମନ ଭଲେଇବାକୁ କହୁଚ ?

ଶେରୁ : ଅମ୍ବୋ ! ପିଲାଟି ଦିନୁ ମୋର ଗୋଟାଏ ଗଧ ଥିଲା ।

ଅମ୍ବୋ : କି ଗଧ !

ଶେରୁ : ଏଇ, ସାଥୀ ହେବ ତ ମନପସନ୍ଦିଆ । ନହେଲେ ନାହିଁ । ମୋ କଥା ଠାକୁରେ ଶୁଣିଛନ୍ତି ।

ଅମ୍ବୋ : (ଲମ୍ବା ଗମ୍ଭୀର ପ୍ରଶ୍ୱାସ ନେଇ) ମାତ୍ର ଝିଅମାନଙ୍କର ମନ କଥା ମନରେ ରହି-ଯାଏ । ମା-ବାପ ଯାହାକୁ ତାଙ୍କର ଇଚ୍ଛା ଯୋଡ଼ିଦିଅନ୍ତି ।

ଶେରୁ : ବାସ୍ତବରେ ଭଗବାନ ତମକୁ ମୋ ପାଇଁ ସୃଷ୍ଟି କରିଥିଲେ । ହେଲେ ଭାଗ୍ୟ ଦୋଷରୁ କିଛି ଗୋଟାଏ ବିଘଟଣ ଘଟିଗଲା । ଭଗବାନଙ୍କୁ ଧନ୍ୟବାଦ ଦିଅ ।

ଅମ୍ବୋ : (ଆଖି ଛଳଛଳ କରି) ସତ କହିବାକୁ ଗଲେ, ବାପ-ମା'ଙ୍କ ପ୍ରତି ମୋର ଖୁବ ରାଗ ହେଉଚ—ଯେଉଁମାନେ ଜାଣିଶୁଣି କରି ଗୋଟାଏ ମଦୁଆ ସାଙ୍ଗରେ ମତେ ବାନ୍ଧି ଦେଇଥିଲେ ।

ଶେରୁ : (ଆଶ୍ୱାସନା ଦେଇ) ଏବେ ସବୁ ଠିକ୍ ହେଇଗଲା ଅମ୍ବୋ ! ଚଉଡ଼ଭିତର ଇଟା ପୁଣି ନିଜ ଜାଗାକୁ ଆସିଗଲା ।

ଅମ୍ବୋ : ମତେ ଡର ଲାଗୁଚ, ପୁଣି କେବେ ନର୍ଦ୍ଦମାରେ ଯାଇ ପଡ଼ିବନି ତ !

ଶେରୁ : ଛାଡ଼ ! ପାଗଳ କୋଉଠିକାର ! (ଉପରକୁ ଚାହିଁ) ଦେଖ୍, ଯେମିତି ଜମର ନୂଆ ପତ୍ର ଦେଖାଦେଇଚ, ସେମିତି ତମର ହେଇଚ ନୂଆ ଜନମ ।

ଅମ୍ବୋ : (ଦୀର୍ଘଶ୍ୱାସ ନେଇ) ଇଏ ତ ପ୍ରତି ବର୍ଷ କଅଁଳୁଚ । ମାତ୍ର ମୋ ଆଶାର ତ ଗଲା ଚଉଦ ବର୍ଷରେ ଥରେ ହେଲେ ପତ୍ର କଅଁଳିନି !

ଶେରୁ : ଭଗବାନ ସବୁ ମଙ୍ଗଳ କରିବେ । ଏଣିକି ପ୍ରତି ବର୍ଷ ତମ ଆଶା ଫୁଲ ଧରିବ ।

—(ଦୁହେଁ ହସି ଉଠିଲେ)—

ଅମ୍ବୋ : ଆଜି ତମେ ମୋ ଆଖିରେ ସେଇ ଦିନ ଭଳି ଖୁସି ଥିବା ଜଣାପଡ଼ୁଚ ।

ଶେରୁ : କୋଉଦିନ ଭଳି ? କୁହ, କୁହ ମୋ ରାଣ । ହଉ ନ କହିଲେ ନାହିଁ !

ଅମ୍ବୋ : ସେଇ ମେଳା ଦିନ ଭଳି । ତମେ କୂଅମୂଳେ ଗୋରୁଙ୍କୁ ପାଣି ପିଆଉଥିଲ, ଆଉ ମୁଁ ପାଣି ଆଣିବାକୁ ଯାଇଥିଲି ।

ଶେରୁ : ବିଶ୍ୱାସ କର, ସେଇଦିନୁ ତମ ପ୍ରତି ମୋର ଦୁର୍ବଳତା ଦେଖାଦେଇଛି । ତମେ ମାଠିଆ ଧରି ଚାଲିଆସିଲ । ମୁଁ ତମରି ଅବସ୍ଥାକୁ ମନେ ପକେଇ ବହୁତ ବେଳଯାଏ

କାନ୍ଦିଲି । ମନରେ ଏତେ ଦୁଃଖ ହେଲା ଯେ, ମୁଁ ମେଳାକୁ ବି ଗଲି ନାହିଁ ।

ଅମ୍ମୋ : (ଆଶ୍ଚର୍ଯ୍ୟ ହୋଇ) ସତରେ ?

ଶେରୁ : ସେଇଦିନ ମୁଁ ମନରେ ସଂକଳ୍ପ କରିଥିଲି, ଯା ନାଇଁ ତା' ହେଉ ପଛେ— ଅମ୍ମୋର ଦୁଃଖକୁ ମୁଁ ନିଶ୍ଚୟ ଦୂର କରିବି । ସବୁ ଜିଦ ଛାଡ଼ିଦେଲି; ଏପରିକି ଗରିବ ଦାସ ପାଲଟିଗଲି । ମୋର ଯାହା ନ କରିବା କଥା ତମ ପାଇଁ ତା' ପାଖରେ ନେହୁରା-ନିମନ୍ତ ହେଲି । ତେବେଯାଇଁ ଗାଆଁ ବାଲା ମାନିଲେ !

ଅମ୍ମୋ : (ଭାବାବେଶରେ) ତା'ହେଲେ ତ ମୋ ପାଇଁ ତମେ ବହୁତ କଷ୍ଟ ସହିଚ ?

ଶେରୁ : କିନ୍ତୁ ସେଇ ଦୁଃଖ ଭିତରେ ଯୋଉ ମଜା, ତାହା ମତେ ହିଁ କେବଳ ଜଣା । ନିଶା ଥିଲା, ପ୍ରଥମ ସର୍ବୀର ନିଶା ।

ବାହାରୁ ସ୍ୱର : ଚୌଧୁରୀ ସାହେବ !

ଶେରୁ : କିଏ ? ରାଜା କରେ, ରାଜା ?

ରାଜା : (ବାହାରୁ) ଚୌଧୁରୀଜୀ, ସାରା ଗାଆଁ ବୁଲି ଆସିଲିଣି; ଆପଣଙ୍କୁ ଖୋଜି ଖୋଜି ।

ଶେରୁ : ଭାଇ, ଆଉ କେତେ ଡେରି ଅଛି ?

ରାଜା : ସେଠି ସମସ୍ତେ ବସି ଆପଣଙ୍କୁ ଅପେକ୍ଷା କରିଛନ୍ତି ।

ଶେରୁ : ତେବେ ଚାଲ୍ । ମୁଁ ତୋ ପଛେ ପଛେ ଯାଉଛି । (ଅମ୍ମୋକୁ) ତମେ ଭଲା କାହିଁକି ଡରିଯାଉଥିଲ ?

ଅମ୍ମୋ : ସେ ଦରଜା ଖଟ୍‌ଖଟ୍ କରିବା ମାତ୍ରେ ମୋ ମନ ଭିତରଟା ଥରିଉଠିଲା । ମୁଁ ଭାବିଲି ମୋ ନଣନ୍ଦ ଆସିଛି । ମୋର ଛାତି ଏତେବେଳଯାଏ ଧଡ଼କୁଚି !

ଶେରୁ : ଆସୁ ସେ । ତାକୁ ଗୋଟା କ ଡର ?

ଅମ୍ମୋ : ତମେ ଜାଣିନ । ସେ ଗୋଟାଏ ବିପଦର କାଳନାଗୁଣୀ ।

ଶେରୁ : ମିଆଁ ବିବି ରାଜି, ନା କ୍ୟା କରେଗା କାଜି ! ଏବେ ଆଉ କିଛି ହେଇପାରିବ ନାହିଁ । ଯାହା ହବା କଥା ହେଇଯାଉ ।

ଅମ୍ମୋ : ମୋ ଲୁଗାପଟା ଘରେ ପହଞ୍ଚେଇଦିଅ । ନଚେତ୍ ସତକୁ ସତ ଯଦି ସେ ଆସିଯାଏ ?

ଶେରୁ : ମୁଁ ଏଠୁ କିଛି ନେଇ ଯିବିନି । ତମେ ମୋତେ ଭୟ କରନା । ଜିନିଷରେ ଘର ଭର୍ତ୍ତି କରିଦେବି । (ଯାଉ ଯାଉ) ପ୍ରସ୍ତୁତ ହେଇ ଶୀଘ୍ର ଆସିବ ।

ଅମ୍ମୋ : ମୁଁ ଏଠି କ'ଣ କରିବ ? ବାସ୍, କେବଳ ଗୋଟାଏ ଘାଗରା ମୋର ପିନ୍ଧିବାକୁ ଅଛି ।

( ଅମ୍ମୋ ଆଡ଼ୁଆଳକୁ ଚାଲିଗଲା । ଏତିକିବେଳେ ଖୁବ୍ ବେଗରେ ଗୋଟିଏ ସ୍ତ୍ରୀଲୋକ ପ୍ରବେଶ କଲା । ସେ ବହୁତ ବିବ୍ରତ ଥିବା ଜଣାପଡ଼ୁଥିଲା । )

କରମୋ : (ଛିଆଡ଼େ ହିଆଡ଼େ ଚାହିଁ) ଭାଉଜ ! ଭାଉଜ ଅମର କଉର !!

(ଅମ୍ବୋ ଘାଗରୀ ହାତରେ ଧରି ବାହାରକୁ ଆସିଲା । କରମୋକୁ ସାମ୍ନାରେ ଦେଖି ସେ ଥରି ଉଠିଲା ।)

ଅମ୍ବୋ : ତମେ କୁଆଡ଼େ ଭଉଣୀ !

କରମୋ : ତତେ କ'ଣ କହିବି ଲୋ ଭାଉଜ ! ବାଟରେ ମୁଁ ଗୋଟାଏ ଉଡ଼ା-ଖବର ଶୁଣିଲି । ସତ କି ମିଛ, ମୋର ତ ଦାନା-ପାଣି ପାଟିକି ଗଲାନି ।

ଅମ୍ବୋ : (ନିର୍ଭୟ ହୋଇ) ମିଛ କାହିଁକି, ସତ ।

କରମୋ : ହେ ଭଗବାନ୍ ! ତୁ ଇଏ କ'ଣ କଲୁ !!

ଅମ୍ବୋ : ପଞ୍ଚାୟତକୁ ଯାଇ ପଚାର, ଯିଏ ଏସବୁ କରାଇଛି ।

କରମୋ : ଆଲୋ ତୁ ମତେ କହ, ତୋର ଦୁଃଖ କୋଉଥିପାଇଁ ?

ଅମ୍ବୋ : ଭଉଣୀ ! ତମେ ମୋ'ରି ଭଳିଆ ବିଧବା ହୋଇଥିଲେ, ମୁଁ କହିଦିଅନ୍ତି ମୋର କୋଉ କଥାକୁ ଦୁଃଖ ।

କରମୋ : (ଜଙ୍ଘରେ ହାତ ପିଟି) ଆଲୋ, ତୋ ଉପରେ ଆକାଶ ଛିଣ୍ଡି ପଡ଼ୁ ଲୋ ! ଅଲକ୍ଷଣୀ ! ମୋ ଭାଇ ବଞ୍ଚି ଥାଉ ଥାଉ ତୁ ତାକୁ ମାରିଦଉଚୁ !

ଅମ୍ବୋ : ଯିଏ ଘରୁ ବାର ବର୍ଷ ହେଲା ଗଲାଣି---ଚିଠି-ପତ୍ର, ପଇସା-କଉଡ଼ି ଯିଏ ପଠାଉନାହିଁ, ମୋ ପାଇଁ ସେ ମରିହଜିଗଲାଣି ।

କରମୋ : ଆଲୋ, ତୁ ତ ନିଜ ଲୋକକୁ ଖାଇଦେଲୁଣି । ମତେ କହ, ତୋର କୋଉ କଥାରେ କମି ହେଉଛି ?

ଅମ୍ବୋ : ବାପର କୋଉ ଜାଗିର ପଡ଼ିଛି, ଯାହାକୁ ବସି ଭୋଗକରିବି ? ଜାଣେନା, କେମିତି ସେ ଅଭାବ ଭିତରେ ମୁଁ ଦିନ କାଟୁଛି । ଆଜି ତମେ ନିଜ ଭାଇର ଦାବୀ ପ୍ରମାଣ କରିବାକୁ ଆସିଛ । ସେତେବେଳେ କୋଉଠି ଥିଲ, ଯେତେବେଳେ ମୁଁ ଚକି ଚଳେଇ, ଗୋବର ଚକଟି ପେଟ ପୋଷୁଥିଲି ?

କରମୋ : (ଅଗଣା ଆଡ଼କୁ ଚାହିଁ) ଆଲୋ ପୋଡ଼ାମୁହିଁ ! କୋଉ ରଇଜଲା ପାଖରେ ଘର ଲୁଟିଦେଲୁ ?

ଅମ୍ବୋ : ଘରେ କ'ଣ ବା ଥିଲା ଯେ---ସାତଟା ଚୁଲିର ପାଉଁଶ ? ଯାହା କିଛି ଅବା ଥିଲା ତାକୁ ତ ମଦନିଶାରେ ଖର୍ଚ୍ଚ କରିଦେଇଥିଲା---ଉଜାଡ଼ି ଦେଇଥିଲା ।

କରମୋ : ଦେଖ, ସମୟ କ'ଣ ହେଲା ଆସି ! ଆଗକାଳର ମାଇକିନିଆ ନିଜ ଗେରସ୍ତକୁ ଅପେକ୍ଷା କରି ସାରା ଜୀବନ ବିତେଇ ଦଉଥିଲେ···

ଅମ୍ବୋ : ମୁଁ ଅବା କୋଉ କମ୍ କରିଛି କି ? ଗୋଟା ଗୋଟା ଦିନ ଗଣି ବାରବର୍ଷ ବିତେଇ ଦେଇଛି । କହିବା ବହୁତ ସହଜ ଭଉଣୀ ! ସମୟ କଟେଇବାକୁ ପଡ଼ୁଥିଲେ ଜାଣନ୍ତ-

ଥାଆନ୍ତି ।

ରାଜା : (ବାହାରୁ) ବୋହୂ, ବହୁତ ଡେରି କରି ଦେଲୁଣି । ସମସ୍ତେ ତୋ'ରି ଅପେକ୍ଷାରେ ବସିଛନ୍ତି ପରା ।

ଅମ୍ବୋ : ଆପଣ ଚାଲନ୍ତୁ; ମୁଁ ଯାଉଚି । (ଘାଗରି ହାତରେ ଧରି) ଘାଗରି ଛାଡ଼, ଭଣ୍ଡାରି ବାରମ୍ବାର ଆସୁଚି । ଲୋକମାନେ କ'ଣ ଭାବୁଥିବେଟି !

କରମୋ : (ନମ୍ରତାପୂର୍ବକ) ଭାଉଜ ! ମୋ କଥା ମାନ । ଯୋଉଠି ପ୍ରଥମରୁ ଏତେ ସମୟ କଟେଇଚୁ, ସେଠି ଆଉ ଦି'ଚାରି ମାସ ଅପେକ୍ଷା କର; ନିଜକୁ ବୋଧ ଦେ ।

ଅମ୍ବୋ : ବୋଧ ଦେବାର ତ ଗୋଟାଏ ସୀମା ଅଛି । ଏମିତି ଅପେକ୍ଷା କରି କରି ମୋ ସୁନା ଦେହକୁ ଚୂନା କରିଦେଇଛି---ଯୌବନକୁ ଜାଳିପୋଡ଼ି ଦେଇଛି । ଆଉ ପୁଣି କିଏ ଆସି ମତେ ଗାଦି ଉପରେ ବସେଇବ ମ ? ସେଇ ମାରଧର ହବ ।

କରମୋ : ତୋର ରଙ୍ଗଢଙ୍ଗ ତ ପ୍ରଥମରୁ ଖରାପ ଜଣାପଡ଼ୁଥିଲା···ଆଜି ତ ନୂଆ କିଛି ନୁହଁ ।

ଅମ୍ବୋ : ସେଇପରି ହୋଇଥିଲେ ମୁଁ ଏ ଅପନ୍ତରାଟାରେ ଚଉଦ ବର୍ଷ ବସି ନ ଥାନ୍ତି ମ । କେବେଠାରୁ ମୋ ବାଟ ମୁଁ ଧରିସାରନ୍ତିଣି ।

କରମୋ : (କିଛି ବାଟ ନ ପାଇ, ଚିଡ଼ିକରି) ଅମରୋ, ତୁ ଦୁଆରବନ୍ଧରେ ଝୁଲି ମଲୁନି ? କେମିତି ତୁ ଏଠି ମୁଣ୍ଡ ଟେକି ବସିରହି ଆମ ମୁହଁରେ କାଳି ବୋଳୁଚୁ ? ମୁଁ ସେ ଲଫଙ୍ଗା ପଞ୍ଚାୟତ ସାମ୍ନାରେ ଯାଇ ତତେ ପିଟିବି । ଦେଖିବି, କିଏ ପିଠିରେ ପଡ଼ିବ । (ଚାଲି ଯିବାକୁ ବସିଲା)

ନମ୍ବରଦାର : (ରାଗରେ) ମୁନ୍ନୀ ! ଏଠି ତୁ କ'ଣ କରୁଚୁ ? ସାରା ଗାଆଁ ତେଣେ ଅପେକ୍ଷା କରିଛନ୍ତି ପରା ।

ଅମ୍ବୋ : ଦଦେଇ, ଇଏ ମତେ ଯିବାକୁ ଦେଉନାହାନ୍ତି । ମୁଁ କ'ଣ କରିବି କୁହ ?

କରମୋ : (ଖୁବ୍ ଜୋର୍‌ରେ ପାଟିକରି) ଅମରୋ ' ତୁ ଯେମିତି ଆମ ନାକ କାଟିଚାଲିଚୁ —ତତେ ଜଳ ପାତାଳରେ ଠାଇ ମିଳିବନେଇଁ ।

ନମ୍ବରଦାର : ଛିଅ ଲୋ ! ପାଗଳ ହେଇଗଲୁ କି ? ତା' ଘାଗରି ଛାଡ଼ । ପାଟିତୁଣ୍ଡ କରନା ।

କରମୋ : ଦଦେଇ ! ଇଏ ତ ବଦମାସ୍ ପୋଡ଼ାମୁହିଁଟାଏ ! ଆପଣମାନେ ବି କିଛି ଚିନ୍ତା କଲେ ନାହିଁ ?

ନମ୍ବରଦାର୍ : ହରେ ରାମ ! ସ୍ତ୍ରୀ ଭଲ ସୁଶୀଳ ତ ସାରା ଦୁନିଆରେ ମିଳିବେ ନାହିଁ । ଇଏ ଯେତେ କଷ୍ଟରେ ଦିନ କାଟିଚି, କିଏ କାଟି ପାରିବ ? ଦି' ବିଘା ଜମି ଅଛି; ସେଥିରୁ କେତେ ଅବା ମିଳିବ ! ସେ ବଦମାସ୍ ତ ସ୍ତ୍ରୀକୁ ଟିକେ ମନେପକେଇଲାନି—ଇଏ ମଲା କି

ଗଲା । ଇଏ ଏଠି ମରୁଚ ।

କରମୋ : ସେ ଯିବାର କେତେ ଦନ ହେଇଗଲାଣି । ଯୋଉଦନ ଲେଉଟିବ ନା, ଘରଦ୍ୱାର ସବୁ ପୂର୍ଣ୍ଣ କରଦବ ମୋ ଭାଇ । ଆପଣ ତାକୁ କ'ଣ ଭାବୁଚନ୍ତ ମ ?

ନମ୍ବରଦାର : ମୁଁ ତା'ର ରୋଜଗାର କଥା ଭଲ ଭାବରେ ଜାଣେ ।

ଶେରୁ : (ଆସି) ଅମ୍ମୋ ' ତମେ କ'ଣ କରୁଚ ବସି ? କେତେ ଥର ଭଣ୍ଡାରକୁ ପଠେଇଲଣି । (ନମ୍ବରଦାରଙ୍କୁ ଦେଖି) ଦଦେଇଙ୍କୁ ବ କଷ୍ଟ କରବାକୁ ପଡ଼ଲା ।

ନମ୍ବରଦାର : କଏ କ'ଣ କରବ ? କରମୋ ତ ତାକୁ ଯିବାକୁ ଦଉନ ।

ଶେରୁ : ତାକୁ ଅଟକେଇବାକୁ କରମୋ କଏ ?

ନମ୍ବରଦାର : ତୁ ଚୁପ୍‌ରହ ପୁଅ ! ମୁଁ ନଜେ ବୁଝିବ ଏକଥା ।

କରମୋ : ଯା ବେ ଯା, ନଜ ମା' ଭଉଣୀ ପାଖରେ ଯାଇ ବହପ କାଢ଼ିବୁ । ଖବରଦାର, ମତେ ମନ୍ଦ କଏ କହୁଛୁ କୁହେ !

ନମ୍ବରଦାର : ତୁ ଚୁପ୍‌କର । ତତେ କେହି କଛୁ କହୁନାହାନ୍ତ ।

ଶେରୁ : ତା'ହେଲେ ସ୍ୱଲୂନ କାହିଁକ ? ଡେରି କୋଉଥି ପାଇଁ ?

ନମ୍ବରଦାର : ତରତର କରନା, ଯାଉଚ । ବୁଝେଇ ଶୁଝେଇ ମତେ ନେବାକୁ ଦେ । କରମୋ ! ବାଟ ଛାଡ଼ । ବୋହୂକୁ ଯିବାକୁ ଦେ ।

(ଦୁଆରପଟେ କଏ କାଶିଲା । ସମସ୍ତେ ସେ ଆଡ଼କୁ ଚାହିଁଲେ । ଗୋଟାଏ ରୋଗିଣା ବ୍ୟକ୍ତ ପ୍ରବେଶ କଲା ।)

କରମ ସିଂହ : (ସମସ୍ତଙ୍କୁ) ବାଃ ରେ ଠାକୁରଙ୍କ ଦୟା ' ନମ୍ବରଦାର ମହାଶୟ, ସବୁ ଭଲ ତ ?

ନମ୍ବରଦାର : ଆରେ କରମ !

କରମ : ନମ୍ବରଦାରଜୀ ! ମୁଁ ଆଜ ତ ଆସୁଚ । କରମୀ, ସବୁ କୁଶଳ ତ ଭଉଣୀ ? ଆରେ ଚୁପ୍ ହ, କନ୍ଦାକଟା କରନ୍ତ ନାହିଁ ପାଗଲୀ !

କରମୋ : (କୁଣ୍ଢେଇପକେଇ) ଖୁବ୍ ଭଲ ହେଲା ଭାଇ, ତୁ ଆସିଗଲୁ । କନ୍ତୁ ତୁ ତ ଖବରଅନ୍ତର ଟିକେ ଦେଲୁନ । ଅପେକ୍ଷା କର କର ଏମିତଅ ଦନ ଆସି ପହଞ୍ଚିଲା ।

କରମ : ମୁଁ ଏବେ ତ ଆସିବାକୁ ସ୍ଥିର କର ନଥିଲ । କନ୍ତୁ ଦ'ଦନ ହେଲା ବେମାରି ଖୁବ୍ ଜୋର୍‌ରେ ଧରପକେଇଲା ।

ନମ୍ବରଦାର : ଆଗ ଏକଥା କହ ଭଦ୍ରଲୋକ ! ତୁ କଛୁ ଖବରଅନ୍ତର କାହିଁକ ଦଉ ନଥିଲୁ ଆଜଯାଏ ? ତୋର ଏଠୁ ଯିବାର କେତେ ବର୍ଷ ହେଇଗଲାଣି ?

କରମ : ନମ୍ବରଦାରଜୀ ! ତମେ ତ ମତେ ଜାଣ । ମୁଁ କଛୁ ବଦଳାଯାଇନ । (କାଶିବା)

କରମୋ : କ'ଣ ହେଲା ଭାଇ ?

ନମ୍ବରଦାର : ଦମା କାଶ । ନିଶା ଖାଇବାର ଅଭ୍ୟାସଟା ଏଯାଏ ଯାଇନି ?

କରମ : ମୁଁ ଯାଉ ବୁଢ଼ା ବୁଲିଆସିଲେ ବି ମୋର ଅବସ୍ଥା ଏଇୟା ହିଁ ରହିବ ।

କରମୋ : ଭାଇ ' ଜିନିଷପତ୍ର ପଛରେ ଘୋଡ଼ାଗାଡ଼ିରେ ଅଛି ନା କ'ଣ ?

କରମ : (ହସି) ମୋ ସାଙ୍ଗରେ ଜିନିଷ କୁଆଡ଼ୁ ଆସିବ ? ଏଇ ପିନ୍ଧିଥିବା ଲୁଗା ଦ'ଟା ।

ନମ୍ବରଦାର : ଯେମିତି ଯାଇଥିଲା, ସେମିତି ଫେରିଆସିଲା ।

କରମୋ : (ଦୀର୍ଘଶ୍ୱାସ କାଢ଼ି) ଛାଡ଼ ହେ, ଭାଇ ଆସିଗଲା--ସବୁ କିଛି ମିଳିଗଲା ।

(ସ୍ତବ୍ଧ ହୋଇ ଶେରୁ ଓ ଅମ୍ମୋ ଜଣେ ଅନ୍ୟ ଜଣକ ଆଡ଼କୁ ଚାହିଁ ଥିଲେ । ଅମ୍ମୋ ଭିତରକୁ ଚାଲିଗଲା । ଶେରୁ ବାହାରକୁ ଚାଲିଯାଉଥିଲା ।)

କରମ : ଆଉ ନମ୍ବରଦାରଜୀ ! ଗାଁର ଖବରଅନ୍ତର କୁହନ୍ତୁ । କିଛି ନୂଆ ଖବର ?

ନମ୍ବରଦାର : ସବୁ ଠିକ୍ ଅଛି । (ଅବସ୍ଥାକୁ ଛପେଇ ଦେଇ) କରମୋ ! ପାଣି-ଫାଣି ଟିକେ ଭାଇକୁ ପିଇବାକୁ ଦେ । ପରେ ଅନ୍ୟ କଥାବାର୍ତ୍ତା ।

କରମ : ତୁ କେବେ ଆସିଚୁ କରମୋ ?

କରମୋ : ଭାଇ, ମୁଁ ତ ଏବେ ଆସି ଠିଆ ହେଇଚି । ଜୋତା ପର୍ଯ୍ୟ ଏଯାଏ ଖୋଲିନି ।

କରମ : ତୁ ଆସିଯାଇଚୁ, ଖୁବ୍ ଭଲ ହେଲା ।

କରମୋ : ଭାଇ, ପିଢ଼ା ଉପରେ ବସିଯା । ଭାଉଜ, ଅମର କଉର, ଆରେ ବାହାରକୁ ଆ । ଖୁସିରେ ଟିକେ ପାଣି-ଫାଣି ପିଇବାକୁ ଦେ ।

କରମ : ଅମର କଉର ! ସେ ବଞ୍ଚିଚି ? ନାଁ, ମୁଁ ଭାବୁଥିଲି ସେ ମରି ପୋଡ଼ି ପାଉଁଶ ହେଇଯିବଣି ।

କରମୋ : (ଦୁଆର ଭିତରକୁ ମୁହଁ ନୁଆଇଁ) ଭାଇ, ଦଉଡ଼ିଆସ !

କରମ : (ଦେଖି) ମୋ ଅପେକ୍ଷାରେ ସେ ଏଡ଼େ ସୁନ୍ଦର ପୋଷାକ ପିନ୍ଧିଥିଲା ?

କରମୋ : ନା ଭାଇ, ଆଗ ଧର । ମୁଁ ତା' ମୁହଁରେ ପାଣି ଦିଏ !

କରମ : ସେ ହତଭାଗୀ ମୋର ଅପେକ୍ଷାରେ ଥିଲା ।

(କରମ ସିଂହ ତାକୁ ଦେଖି କମ୍ପି ଉଠିଲା । ଅତୀତ ଜୀବନ କାହାଣୀ ତା' ଆଖି ସାମନାରେ ନାଚିଗଲା । ଦୋଷୀ ଭଳି ତା' ମୁହଁକୁ ଦେଖି ସେ ଭୟଭୀତ ହୋଇଗଲା । କରମୋ ତା' ମୁହଁରେ ପାଣି ଛିଞ୍ଚୁଥିଲା ।)

■□□

# ପାତ୍ର

ସୁରଜୀତ୍ : ନାୟକ
ଦୀପା : ପତ୍ନୀ
ଲଜୋ : ଭଉଣୀ
ସୁନ୍ଦର : ବନ୍ଧୁ
ପିଉସୀ



[ ନଈକୂଳର ଗୋଟିଏ କୁଡ଼ିଆ । ଆବ୍ଦୁଲ୍, ଦଉଡ଼ି ଏବଂ ଜାଲ ଦୃଷ୍ଟିରେ ପଡ଼େ । ମଂଚ ଉପରର ପଛପଟକୁ ଛୋଟ ଖଟିଆ ଉପରେ ପିଉସୀ ବେମାରରେ ପଡ଼ିରହିଛି । ଦୀପା ଓ ଲଚ୍ଚୋ ବସି କଥାବାର୍ତ୍ତା କରୁଛନ୍ତି । ଦୀପା ଚୁଲି ଫୁଙ୍କୁଚି । ]

ଲଚ୍ଚୋ : ଦୀପା !

ଦୀପା : ଉଁ ।

ଲଚ୍ଚୋ : ପିଉସୀ କାଶରେ ଛଟପଟ ହେଇ ମରୁଚି । ବୋଧେ ତା'ର ନିଃଶ୍ୱାସ ବନ୍ଦ ହେଇ ଯାଉଚି । କେବେ କେବେ ଶ୍ୱାସରୁନ୍ଧ ହେଇଗଲେ ନିଃଶ୍ୱାସ ଫେରିବା ବଡ଼ କଷ୍ଟ ହେଇପଡ଼େ, ପାଚନ ଫୁଟିଲାଣି କି ?

ଦୀପା : ଏତେ ଫୁଙ୍କିଲିଣି ; କିନ୍ତୁ ଆଜି ଯେମିତି ଚୁଲି ଜଳିବାକୁ ନାରାଜ । ଏ ପର୍ଯ୍ୟନ୍ତ ପାଚନ ସିଝିନି ।

ଲଚ୍ଚୋ : ପାଚନ ପିଆଇବା ଆଜିକୁ ଦୁ' ଦିନ ହେଇଗଲାଣି; କିଛି ଫଳ ମିଳି ନାହିଁ । ବରଂଚ ନିଃଶ୍ୱାସ ବୃଦ୍ଧି ହେଇଯାଉଚି । କାଶୀ ବଇଦଠାରୁ ଯାଇ ଔଷଧ ଆଣ, ଯାହା ସେ ପଛ ଥରକ ଦେଇଥିଲା ।

ଦୀପା : ରାତି ତ ଅନେକ ହେଲାଣି । ସେଥିରେ ପୁଣି ନଈ ବଢ଼ିଚି । କେମିତି ଯିବି ?

ଲଚ୍ଚୋ : ଆଉ କାହାକୁ ପଠେଇ ହବ ? ଘରେ ତ କେହି ନାହିଁ ।

ଦୀପା : କିନ୍ତୁ ମୁଁ କେମିତି ଯିବି ?

ଲଚ୍ଚୋ : ଏଇ ପାଚନ ପେଇଦେଇ ତା' ଗୁଡରେ ମାଲିସ୍ କରିଦେ । ବୋଧହୁଏ ସେଥିରେ କିଛି ଆରାମ ମିଳିପାରେ । ମୁଁ କାହାକୁ ଗୋଟେ ଦେଖେ । (ବାହାରକୁ ଯାଇ) ଆହା ' ନଈପାଣି କେତେ ବଢ଼ିଗଲାଣି ! ଲହଡ଼ି ଆମ କୁଡ଼ିଆ ପାଖରେ ଆସି ପହଂଚ-ଗଲାଣି । ତୁ ଡଙ୍ଗାକୁ ଭିଡ଼ି କରି ଗଛରେ ବାନ୍ଧିଥିଲୁ ନା ?

ଦୀପା : ତାହା ଠିକ୍ ରୂପେ ବନ୍ଧାହେଇଚି । ତା'ର କିଛି ହେବନି ।

( ଗୀତ ଶୁଣାଗଲା )

ଭେଲା ପାରି କରି ଦେ ମୋର, ରେ ...... '
ପାଦ ମୋର ଗଲାଣି ଥକି, ଆଶା ଧରି ଖୋଜେ ଏ ଆଖି
ଜାଣେ ନାହିଁ ମୁହିଁ କେଉଁଠି ଘର ।
ଭେଲା ପାରି କରି ଦେ ମୋର ......

ଲଚ୍ଚୋ : ଏ ବେଳରେ କିଏ ଗୀତ ଗାଉଛି ?

ଦୀପା : କେଜାଣି କିଏ ?

ଲଚ୍ଚୋ : ଆବ୍ଦୁଲର ଚବଚବ ଶବ୍ଦ ତ ଶୁଭୁଚି ?

ଦୀପା : ହଁ ।

ଲଜୋ : ଗାଆଁର ସବୁ କେଉଟ ନିଜ ନିଜ ଡଙ୍ଗାକୁ ଏକବାରେ କୂଳକୁ ନେଇଯାଇଛନ୍ତି । ଇଏ କଅଣ ହୋଇପାରେ ?

ଦୀପା : ଜଣାପଡ଼ୁନି । ନଈର ସ୍ରୋତ ବହୁତ ଫୁଲିଚି ।

ଲଜୋ : ହଁ । ପବନର ସାଇଁ ସାଇଁ ଶବ୍ଦ କେଡ଼େ ପ୍ରଚଣ୍ଡ । ଯେମିତି କି ସବୁକିଛି ଉଡ଼େଇ ନେଇ ଯିବ ।

ଦୀପା : ଲଜୋ ! ମୋର ତୋଫାନ୍‌କୁ ଖୁବ ଡର ।

ଲଜୋ : ତୋଫାନ ସାଙ୍ଗରେ ମୋର ସେଦିନର ଘଟଣା ମନେପଡ଼ିଯାଉଚି, ଯୋଉଦିନ ମୋ ଭାଇ ତତେ ସ୍ରୋତ ବାହାରିଯାଇଥିଲା ।

ଦୀପା : ସେଦିନ କଥା ମନେପକାନା, ଲଜୋ !

ଲଜୋ : ମୁଁ ତ ସେଦିନକୁ ଭୁଲିପାରୁନି । ମୁଁ କେତେ ଥର କହିସାରିଲିଣି, ଏ କୁଡ଼ିଆ ଘର ଗୋଟାଏ ଭୂତଖାନା । ଆମକୁ ଏଇଟା ଛାଡ଼ିବାକୁ ହେବ । ହେଲେ ତୁ ତ ମାନୁନୁ ।

ଦୀପା : ଏ କୁଡ଼ିଆ ଘରକୁ କେମିତି ଛାଡ଼ିବ ଲୋ ? ପୂରା ଛ' ବରଷ ମୁଁ ଏଠି କଟେଇଚି । ତୋ'ର ଭାଇ ମତେ ଏଇଠିକି ସବାରରେ ବସାଇ ଆଣିଥିଲା । ଆଉ ଏଇ ଲଣ୍ଠନ ଆଲୁଅରେ ତୁ ମୋର ଓଢ଼ଣା ଟେକି ମୁହଁ ଦେଖିଥିଲୁ । ଏଇ କୁଡ଼ିଆ ଘର ଭିତରକୁ ତୁ'ଇ ମତେ ଆଣିଥିଲୁ । ମୁଁ ଏଇ କୁଡ଼ିଆ ଘରର ପ୍ରେମରେ ପଡ଼ିଯାଇଛି । ଏଇଠି ମୋର ଅନେକ ସ୍ମୃତି ବନ୍ଧେଇ ହୋଇ ପଡ଼ିଚି ।

ଲଜୋ : ଏଇ ଭୂତଖାନାରେ ତ ତୋର ପୁଅ ମରିଗଲା ।

ଦୀପା : ହଁ ; ମୋର ଏକୋଇର ବଳା ବାଁକେସିନ ଏଇଠି ଜନ୍ମି ଥିଲା ; ଆଉ ଏଇଠି ଆଖି ବୁଜିଦେଲା । ସୂର୍ଯ୍ୟ ମାଅକୋଳକୁ ଯାଇସାରିଥିଲେ ; ଦୀପ ଜଳିସାରିଥିଲା । ମୁଁ ତାକୁ ଏଇ ହାତରେ ଉଠେଇ ନେଇ ଦଶ ଖୋଜ ଦୂରର ମଶାଣି ପଦାକୁ ଯାଇଥିଲି । ମୁଁ ଏଠୁ କେମିତି ଚାଲିଯିବି ?

ଲଜୋ : ମୋ ମନକୁ ତ ପାପ ଛୁଉଁଚି । ନିଜ ଛାଇ ଭୂତ ଭଳି ଗୋଡ଼ାଉଚି ।

ଦୀପା : ଆଜି ସକାଳେ ତା'ର ଛୋଟିକି କବରକୁ ଦେଖିବାକୁ ଯାଉଚି । ମୋ ଗର୍ଭର ସ୍ପନ୍ଦନ ତ ସେଇଠି କବର ନେଇଚି । ମୋ ମନଟା ବି ଗୋଟାଏ ବଡ଼ଟ କବର––ଯୋଉଠି ଅସଂଖ୍ୟ ଆଶା ଓ ସ୍ମୃତି ପୋତି ହୋଇ ପଡ଼ିଛନ୍ତି ।

ଲଜୋ : ଛାଡ଼ ସେ କଥାସବୁକୁ । ଯା, ଲଣ୍ଠନ ନେଇ କାଶୀ ବଇଦଠାରୁ ଔଷଧ ନେଇଆ । ମୁଁ ପିଇସୀ ପାଖରେ ବସିଚି ।

ଦୀପା : ଲଣ୍ଠନ ଆଲୁଅ ଠାକିବ ନାହିଁ । ଦେଖୁନୁ, ପବନ କେମିତି ସାଇଁ -ସାଇଁ ଗର୍ଜୁଚି ।

ଜିନିଷଗୁଡ଼ାକର ସ୍ମୃତି କାନ୍ଥରେ ଥରୁଛି । ଏଇ କୁଡ଼ିଆରେ କେତେ ଜିନିଷର ସ୍ମୃତି ଅଛି । ସବୁ ସମୟରେ ମୁଁ ସ୍ମୃତିର ଗୁମ୍ଫା ତଳେ ପୋତି ହୋଇ ପଡ଼ୁଛି ।···ଏଇ ଜାଲ, ଏଇ ଦଉଡ଼ି, ଏଇ ଦରଭଙ୍ଗା ଆହୁଲା । ଏଇ ଆହୁଲା ସାହାଯ୍ୟରେ ତୋର ଭାଇ କେତେଥର ଆରପାରିକୁ ଯାଇଥିଲେ ।

ଲଜୋ : ସେ ତୋ'ର ଗୁଲ୍ ପାଖରେ ହାରିଯାଇ ଗ୍ଲଲିଗଲା ।

ଦୀପା : ମୋ ଗୁଲ୍ ?

ଲଜୋ : ଆଉ କ'ଣ ? ତୁ ତ ଜାଣିଥିଲୁ ସୁରଜିତ୍ ଭାଇ ତତେ ବହୁତ ଭଲପାଏ । ଏକଥା ଜାଣି ତୁ କେମିତି ସୁନ୍ଦରର ପ୍ରେମରେ ପଡ଼ିଗଲୁ ? ଗାଆଁ ସାରା କେଉଟ ଗୋଟାଏ ପଟେ, ଆଉ ସୁରଜିତ୍ ଭାଇ ଗୋଟାଏ ପଟେ । ସମସ୍ତଙ୍କର କୁହାବୋଲା ପରେ ବି ସେ ତତେ ଆଣିଥିଲା ।

ଦୀପା : ମୁଁ ବି ତ ସମସ୍ତଙ୍କୁ ଛାଡ଼ି, ସାରା ଗାଆଁର ସୁନ୍ଦର ଯୁବକଙ୍କୁ ତ୍ୟାଗ କରି ତାଙ୍କର ପଛେ ପଛେ ଚାଲିହୋଇ ଆସିଲି ।

ଲଜୋ : ସେତେବେଳେ ସେ ତ ତୋ'ରି ପାଇଁ ଜୀବନ ଦେଇଦେଉଥିଲା । ସେ ତୋର ସବୁ କଥାକୁ କ୍ଷମା କରିଦେଉଥିଲା । କିନ୍ତୁ ତୁ ତା'ରି ଅନ୍ତରଙ୍ଗ ବନ୍ଧୁକୁ ପ୍ରେମ କରିବାରେ ଲାଗିପଡ଼ିଲୁ··· ! ତା ଆଣି ବି ଗୋଟାଏ ଘର ଛାଡ଼ି ଦିଏ ।

ଦୀପା : ଲଜୋ ! ଭଗବାନ ଦୁହାଇ, ତୁ ଚୁପ୍ ହୁଅ !

ଲଜୋ : ତୋର ଏଇ କୁକର୍ମ ମୋ ଭାଇକୁ ସବୁଦିନ ପାଇଁ ମୋ'ଠୁଁ ଅଲଗା କରିଦେଲା ।

ଦୀପା : ଲଜୋ ! ମତେ ନଉକା ରାଣ, ଘାଟ ରାଣ—ସୁନ୍ଦର ପ୍ରତି ମୋର ଏମିତିଆ କିଛି ପ୍ରେମ ନ ଥିଲା ।

ଲଜୋ : ପାଗଳୀ ! ପ୍ରେମ କଣ କେତେ ପ୍ରକାରର ଅଛି କି ? ଲୁଗା ବା ଫୁଲ ଭଳି ପ୍ରେମ ଅଲଗା ଅଲଗା ପ୍ରକାରର ଅଛି ? ପାଗଳୀ ! ପ୍ରେମ ହିଁ ପ୍ରେମ—ଯେମିତିକି ସତଲୁଜ(ଶତଦ୍ରୁ)ର ପାଣି ହେଉଛି ପାଣି । ତୋର ସୁନ୍ଦର ପ୍ରତି ପ୍ରେମ ଥିଲା ।

ଦୀପା : ନା—ନା ।

ଲଜୋ : ମୁଁ ଜାଣେ ।

ଦୀପା : ତୁ ମତେ ବେଇଜତି କରନା ଲଜୋ ! ତୁ ତ ନିଜେ ପ୍ରେମରେ ପଡ଼ି ମଲୁଣି; ତୋ ପ୍ରେମିକ ବେମାରରେ ପଡ଼ି ମଲା । ସେଥିପାଇଁ ତୁ ଆଜିଯାଏ ବାହା ହଉନୁ । ତତେ ତୋ ପ୍ରେମ ରାଣ, ତୁ ଏମିତି କହନା ।

ଲଜୋ : ଏବେ ବି, ଯେତେବେଳେ ସୁନ୍ଦର ଆଖି ଆଗକୁ ଆସୁଛି, ତୁ କମ୍ପିଉଠୁଛୁ । ଦୂରରୁ ତା' ପାଟି ଶୁଣିଲେ ତୋର ଆଙ୍ଗୁଠିଗୁଡ଼ା ଓଠରେ ଦବି ରହୁଛି । ଆଉ ତୋର କାନ ଭୟଭୀତ ଘୋଡ଼ା ଭଳି ଠିଆ ହୋଇ ରହୁଛି ।

ଦୀପା : ଲଜୋ !··· ଲଜୋ !

ଲଜୋ : ନାରୀ ଯେକୌଣସି ଜଣକର ହୋଇ ରହିବା ଦରକାର ।

ଦୀପା : (ଲୁହଝରା ଦୀର୍ଘ ନିଃଶ୍ୱାସ ସହ) ମତେ ଜଣାଅଛି ।

ଲଜୋ : ମୁଁ ତୋ'ଠି ଏଇ ଲୁହ କେତେ ଥର ଦେଖିଲିଣି । ମତେ ମଧ୍ୟ ଭଲକରି ଜଣା-ଅଛି, ତୁ ଏ ଲୁହ କାହା ପାଇଁ ବୁହାଉଚୁ ।

ଦୀପା : ଲଜୋ !

ଲଜୋ : ମୁଁ ଯାହା କହୁଚି, ସତ ।

ଦୀପା : ଲଜୋ ! କୌଣସି ପରମଣିଷ ପାଇଁ ମନରେ ଟିକିଏ ଦୟା-ଜନ୍ମେଇବା କ'ଣ ପାପ ? କେଡ଼େ ଛୋଟିଆ ମନ, ଆପଣାଛାଏଁ ଉଛୁଳି ପଡ଼ୁଥିବା ଭାବ···

ଲଜୋ : ହଁ ।

ଦୀପା : କିନ୍ତୁ ହାୟ ! ମୁଁ ଏ ମନର କ'ଣ କରିପାରିବି ? ମୁଁ ତ ତାକୁ ବାନ୍ଧି ରଖିଛି—ଟାଣିକରି, ତୋଫାନ କବଳରୁ ବଂଚେଇ କରି, ଲହରିଠାରୁ ହଟେଇ କରି । ଘାଟକୂଳର ଗୋଟାଏ ଜାଗା, ସେଇ ଡଙ୍ଗା ଭଳି—ଯାହାକୁ ନଈର ଲହଡ଼ି ଛୁଉଁଚି; କିନ୍ତୁ ଠେଲି ନେଇ ପାରୁନି । ତାଆରି ପ୍ରତି ସୁରଜଭାନ୍ଙ୍କର ଈର୍ଷା କାହିଁକି ? ସେ ତ ଜାଣିଥିଲେ ମୁଁ କେବଳ ତାଙ୍କର ।

ଲଜୋ : ପ୍ରେମରେ କୌଣସି ପୁରୁଷର ମନ ଧୋକା ଖାଏନି । ତୁ ସୁନ୍ଦରକୁ ପ୍ରେମ କରୁଥିଲୁ । ତୋ ଆଖିରେ ପ୍ରେମର ସେଇ ଉଦ୍‌ବେଗ ଅଛି, ଯାହା ଯେକୌଣସି ମରଦକୁ ସାରା ଜୀବନ ପାଇଁ ପାଗଳ କରିବାକୁ ଯଥେଷ୍ଟ । ତୁ ସୁନ୍ଦରକୁ ପ୍ରେମ କରୁଥିଲୁ ।

ଦୀପା : ମାତ୍ର ମୋର ସେଥିରେ ଦୋଷ କ'ଣ ? ମୋ ମନ ତ ସେମିତିଆ । ଭଗବାନ ତାକୁ ସେମିତି ଗଢ଼ିଛନ୍ତି । ତୁ ଭଲା କହ, ଏଥିରେ ମୋର ଦୋଷ କ'ଣ—ଯଦିବା ମୋ କାନ ଶାମୁକା ଭଳି ହେଲା, ନାକ ଛୋଟିଆ ହେଲା ବା ବେକ ଲମ୍ବା ହେଲା ? ମୋ ମନଟା ତ ସେମିତି—ଆବେଗରେ ଭରିଯାଇଛି । ଯଦି ମୋ ନାକ ଲମ୍ବା ହୋଇଥାଆନ୍ତା, ମୋ ମୁହଁରେ ବସନ୍ତର ଦାଗ ଥାଆନ୍ତା ଏବଂ ମଥାରେ ଯଦି କିଛି କଳାଚିହ୍ନ ଥାଆନ୍ତା, କେବେ ତ ମତେ କେହି ପ୍ରେମ କରି ନ ଥାନ୍ତେ । ଏପରିକି ସୁନ୍ଦର ବି ନୁହେଁ ।

ଲଜୋ : ଏଭଳି କାଳକଥା ତୁଣ୍ଡରେ ଧରନ୍ତୁନି ।

ଦୀପା : ମତେ ଜଣା ନାହିଁ ସୁନ୍ଦରର ପ୍ରେମରେ କ'ଣ ଅଛି । ସେ ସମସ୍ତଙ୍କଠାରୁ ଅଲଗା । ସେ କମ୍ କଥା କହେ; ବାସ୍, ଠିଆ ହୋଇ ରହେ । ହେ ଭଗବାନ୍ ! ମତେ କ୍ଷମା କର ! ମୁଁ କେମିତିଆ କଥା ସବୁ କହିବସିଲିଣି ।

ଲଜୋ : ସୁନ୍ଦର ସହ ତୋର କେବେ ମିଳନ ହୋଇନି ?

ଦୀପା : କେବେ ନୁହେଁ । ସେ ପାଖଦେଇ ଚାଲିଯାଏ । ମୁଁ ଘାଟର ଡଙ୍ଗା ଠେଲି ତା' ପାଖରୁ ଚାଲିଆସେ । ବାସ୍, ତାକୁ ଦେଖିଦେଲା ପରେ ମୋର ସାରା ଶରୀରରେ ରୋମାଞ୍ଚ

ଖେଳିଯାଏ । କିଭି ଯାଇ ତାଙ୍କୁରେ ଲାଗେ । ଆଉ ମୁଁ ତାକୁ କେବେ ଡାକିବିନି । ମତେ ଡରମାଡ଼ୁଚି ।

ଲକୋ : ତୁ ତାକୁ ଡରୁଚୁ ?

ଦୀପା : ନା, ନିଜେ ନିଜକୁ । ନିଜ ଆବେଗକୁ । ନିଜ ଭାଗ୍ୟକୁ ମୁଁ ଡରୁଚି ।

ଲକୋ : କାହିଁକି ?

ଦୀପା : ସେ ରାତି କଥା ତୋର ମନେଅଛି—ଯେଉଁଦିନ ସୁରକ୍ଷିତ୍ ତାମସା ଦେଖିବାକୁ ଯାଇଥିଲି ? ଆଖଡ଼ାରେ ବଡ଼ ବଡ଼ ମଶାଲ ଧରି ମଶାଲଧାରୀ ତାମସା ଦେଖାଉଥିଲା । ମୁଁ ସେତେବେଳେ ଘରେ ଥିଲି । ସେତିକିବେଳେ ସୁନ୍ଦର ଆସିଲା । ସେଦିନ ନଈ ବଢ଼ିଥିଲା । ସେ ଜାଲ ଆଉ ଆହୁଲା ଏଇଠି ରଖିଲା । ସେ ଆସି ମୋ ପାଖରେ ଠିଆହେଇଗଲା । ଦୀପ ଆଲୁଅରେ ତା' ହାତର ମାଛଗୁଡ଼ା ଚକ୍‌ଚକ୍ ଦିଶୁଥିଲେ । ମୁଁ ତା'ର ହାତ ଛୁଇଁ ଦେଖିଥିଲି ।

ଲାକୋ : ପାଗଳୀ !

ଦୀପା : ସେତିକି, ମୁଁ ତା'ଠି ଟିକେ ହାତ ଦେଇ ଦେଖିଥିଲି । ପଥର ଭଳି କଠିନ ବାହା । ମନ ହଉଥିଲା ତାକୁ ଖାଇଯାଆନ୍ତି ।

ଲକୋ : ପାଗଳୀ ! ଏହା ହିଁ ତ ପ୍ରେମ ।

ଦୀପା : ସେମିତି ମୁଁ ଟିକେ ତାକୁ ଛୁଇଁଚି । ସେ ମୋର ଗାଲ ତଳକୁ—ଏଇ ବେକ ପାଖରେ, ଯେଉଁଠି କିଛି ବାଳ ଅଲରା ହୋଇ ପଡ଼ିଥିଲା—ନିଜ ଆଙ୍ଗୁଠି ଦ୍ୱାରା ଛୁଇଁଥିଲା । ସେଦିନ ରାତିରେ ଝଡ଼-ତୋଫାନ ଏତେଭଳି ହେଉଥିଲା, ଆଉ ନଈପାଣି ଏମିତି ବଢ଼ିଥିଲା । ତା' ପରଶରେ ମୋର ଶିରା-ପ୍ରଶିରା କଂପି ଉଠିଥିଲା···ତା'ର ପହିଲି ପରଶ···ଆଉ ମୁଁ ଆଖି ବୁଜି ତା'ର ଛାତି ଉପରେ ମଥା ରଖିଦେଇଥିଲି । ସେତିକିବେଳେ ପଛ ଅଡ଼ୁ ତୋ ଭାଇ ଆସି ଠିଆହେଇଗଲେ । ତାଙ୍କ ଆଖିରେ ନିଆଁ ଜଳୁଥିଲା । ତାଙ୍କ ହାତରେ ଅହୁଲା ଥିଲା । ମତେ ଦେଖି ସେ ଉପରକୁ ଆହୁଲା ଉଠାଇଲେ—ତାଙ୍କ ଦେହ ଝାଳେଇଯାଇଥିଲା, ବିରୂପ ହୋଇଯାଇଥିଲା—ପାଗଲଙ୍କ ଭଳି ଚିତ୍କାର କଲେ—ତା'ପରେ ସେ ଆହୁଲାକୁ କାନ୍ଥରେ ପିଟିଦେଲେ । ଆହୁଲା ଦି'ଖଣ୍ଡ ହୋଇ ସେଇଠି ଖସିପଡ଼ିଲା···

ଲକୋ : ଆଉ ତା'ପରେ ସେ ଚାଲିଗଲା ।

ଦୀପା : ମୁଁ ତାଙ୍କ ପଛରେ ଦଉଡ଼ିଗଲି । ତାଙ୍କ କାମିଜ ଧରିଲି । ତାଙ୍କୁ ମିନତି ହେଲି । ବିନମ୍ର ହୋଇ କହିଲି, ସୁନ୍ଦର ଆଉ ମୋ ଭିତରେ କୌଣସି କଥା ହୋଇନାହିଁ; କିନ୍ତୁ ସେ ମୋ କଥା ମାନିଲେ ନାହିଁ ।

ଲକୋ : ଯେଉଁଠି ପ୍ରେମ ଅଧିକ, ସେଠି ସନ୍ଦେହ ବି ଅଧିକ ।

ଦୀପା : ସେ ଡଙ୍ଗା ଖୋଲି ତୋଫାନରେ ଠେଲିଦେଲେ । ସେଇ ରାତିରେ ମା' ତାଙ୍କୁ ଅପେକ୍ଷା କରି ରହିଲେ । ପାଣି ପଥର ଦେହରେ ପିଟି ହୋଇ ଗର୍ଜନ କରୁଥିଲା, ଗଦା ଗଦା

ଫେଣ ଛାଡ଼ୁଥିଲା; କିନ୍ତୁ ତାଙ୍କର କୌଣସି ଠିକଣା ମିଳିଲା ନାହିଁ । ନଈପାଣି କମିଲା ପରେ ତାଙ୍କର କୋଟ, ଲୁଙ୍ଗି ଆଉ ପଗଡ଼ି କୂଳରେ ଭାସୁଥିବା ଅବସ୍ଥାରେ ମିଳିଲା । କାଦୁଅରେ ତାହା ଲଟ୍‌ପଟ ହୋଇଥିଲା । ମୁଁ ତାଙ୍କର ସେଇ ତିନୋଟି ଜିନିଷକୁ ଆଣି ଶୁଖେଇ କରି ଟ୍ରଙ୍କରେ ରଖିଦେଲି । ସେଇଥିପାଇଁ ମୁଁ ଏହି କୁଡ଼ିଆକୁ ଛାଡ଼ି କୁଆଡ଼େ ଯାଉନାହିଁ । ମୁଁ କେବେ ବି ସୁନ୍ଦରକୁ କୁଡ଼ିଆକୁ ଆସିବାକୁ ଦେଇନାହିଁ । ମନେ ମନେ ଶୁଭ ମନାସୁଚି, ଯଦି କେବେ ସୁରଜିତ୍ ଫେରିଆସି ଦେଖିବେ ଆଉ ବୁଝିବେ ମୁଁ ତାଙ୍କୁ କେତେ ମନେ-ପକାଉଚି ।

ଲଜୋ : ଏବେ ତ ତା'ର ସ୍ମୃତି ତୋଠି ପୂରିରହିଛି । ହେଲେ ସେ ଆଉ କେବେ ଲେଉଟିବ ନାହିଁ । (ପିଉସୀ ଜୋର୍‌ରେ କାଶିଲେ ) କାଶୀ ବଇଦ ପାଖକୁ ଯାଇ ଟିକେ 'ଓଷଦ ନେଇଆ । ଏ ରାତିରେ ତା' ନିଃଶ୍ୱାସ ବନ୍ଦ ହୋଇ ନ ଯାଉ । ପିଉସୀକୁ କାଶୀ ବଇଦର ଓଷଦ କାଟୁ କରେ ।

ଦୀପା : ନଈପାଣି ବହୁତ ଉପରକୁ ଉଠିଆସିଲାଣି । କାଶୀ ବଇଦର ଘର ଗଡ଼ାଣି ପାରି ହେଲେ ପଡ଼େ--ଆଉ ଗଡ଼ାଣିଟା ତ ପାଣିରେ ବୁଡ଼ିଗଲାଣି ।

( ଗୀତ ଭାସିଆସିଲା ଦୂରରୁ )

"· ·ଭେଲା ପାରିକରି ଦେ ମୋର"···

ଦୀପା : ଇଏ ତ ସୁନ୍ଦରର ସ୍ୱର । ନିଜ ଡଙ୍ଗା ଟାଣିକରି ଗଛରେ ବାନ୍ଧୁଚି ।

ଲଜୋ : ତାକୁ କହ, କାଶୀ ବଇଦକୁ ଡାକିଆଣୁ ।

ଦୀପା : ତୁ କହି ଦେ ।

ଲଜୋ : (ଉଚ୍ଚ ସ୍ୱରରେ) ସୁନ୍ଦର !

ଦୀପା : ମୋ ମନ ଅଥୟ ହେଉଚି । ମୋ ପାଦ ତଳେ ଭୂମିକଂପ ହେଲା ଭଳି ଲାଗୁଚି ।

ଲଜୋ : ତୁ ଯାଇ ପିଉସୀ ମୁଣ୍ଡରେ ପଟି ବାନ୍ଧ । ମୁଁ ସୁନ୍ଦରକୁ କହୁଚି, ସେ କାଶୀ ବଇଦକୁ ଡାକିଆଣୁ । ସେ ମୋ କଥା ଭାରି ବାନ୍ଧ । ଏଇନା ବିଜୁଳି ଚମକିଥିଲା । ଘାଟ ପାଖରୁ ସେ ଇଆଡ଼େ ଆସୁଚି । ସେ ତ ସୁନ୍ଦର ।

ଦୀପା : ବୋଧେ ବର୍ଷା ହେଉଚି ?

ଲଜୋ : ଏମିତି ଟିକେ ଟିକେ । ବୋଧେ ନଈର ଲହଡ଼ିର ଜଳକଣା । ଲଣ୍ଠଣ ଦେଖା ତ; ମୁଁ ତାଟି ଖୋଲିଦିଏ ।

ଦୀପା : ଲଣ୍ଠନଟା ଜୋର୍‌ରେ ଜଳିବା ଯୋଗୁଁ ଚିମନିଟା କଳା ପଡ଼ିଯାଇଚି । ଆଣ, ଟିକେ ସଫା କରିଦିଏ ।

ଲଜୋ : ନାଇଁ, ବାହାରେ ଖୁବ୍ ଅନ୍ଧାର । ଏତିକ ଆଲୁଅ ଯଥେଷ୍ଟ ହେବ ।

ଧୀପା : ହଉ । ତା'ହେଲେ ମୁଁ ପିଉସୀକୁ ଦେଖିବାକୁ ଯାଉଚି ।

(ଲକୋ ଡାଟି ଖୋଲିଲା । ସୁନ୍ଦରର ପ୍ରବେଶ ।)

ସୁନ୍ଦର : ଓହୋ···ହୋ···ହୋ··· ! ନଈରେ ଘୋର ତୋଫାନ ପିଟୁଚି । ପାଣି ଆସି ପୂରା ଗାଆଁକୁ ବୁଡ଼େଇବାକୁ ବସିଲାଣି ।

ଲକୋ : ହେ ଭଗବାନ !

ସୁନ୍ଦର : ହଁ, ଗାଆଁ ଲୋକେ ଗାଈଗୋରୁ ଧରି ଆଗେ ଆଗେ ଗଲେଣି । ସେମାନେ ଉଚ୍ଚ ଜାଗାରେ ଥିବା ପଡ଼ୋଶୀ ଗାଆଁରେ ଯାଇ ରହିବେ ।

ଲକୋ : ବୁଢ଼େବାଲ ?

ସୁନ୍ଦର : ହଁ, ବୁଢ଼େବାଲ ।

ଲକୋ : ସେଠି ଧୀପାର ବାପଘର ।

ସୁନ୍ଦର : ମଗର ନଈ ବାହାରକୁ ଗୁଳିଆସିଛୁ ଏବଂ କୂଳରେ ଆସି ଘୂରୁଛୁ ।

ଲକୋ : ଡମ ଡଙ୍ଗା ?

ସୁନ୍ଦର : ରକ୍ଷାକରି ଦେଇଚି । ଦେଵୀ ଗଛରେ ବାନ୍ଧି ଦେଇ ଆସିଛୁ ।

ଲକୋ : ପିଇସୀ ବହୁତ ବେମାର । ତା' କାଶ ଆରମ୍ଭ ହେଇଗଲେ ବହୁତ କଷ୍ଟରେ ବନ୍ଦ ହୁଏ । ତମେ ଟିକେ ଯାଇ କାଶୀ ବଇଦଠୁଁ ଓଷଦ ଆଣିଦିଅ ।

ସୁନ୍ଦର : ହଉ, ଯାଉଚି । କିନ୍ତୁ କାଶୀ ବୋଧହୁଏ ପଳେଇଯିବଣି ।

ଲକୋ : ତା' ଘର ତ ଉଚ୍ଚ ଜାଗାରେ । ସେ କୁଆଡ଼କୁ କାହିଁକି ଯିବ ? ସେ ତୋଫାନକୁ ଡରି କରି କେବେ କୁଆଡ଼େ ଯାଏ ନାହିଁ । ବାର ବର୍ଷ ପୂର୍ବେ ଯେତେବେଳେ ବଢ଼ି ଆସିଥିଲା, ସେତେବେଳେ ସାରା ଗାଁ ଉଠିଯାଇଥିଲେ; କିନ୍ତୁ ସେ କୁଆଡ଼େ ଯାଇ ନଥିଲା । ହୁଣ୍ଡା-ରାମଟା । ଭାଙ୍ଗ ଘୋଟିବାର ସଉକ ଟିକେ ଅଛି ତ ' ଏବେ ମଧ୍ୟ ଭାଙ୍ଗ ଟେଳାଏ ପକେଇ ଘରେ ଗଡ଼ୁଥିବ । ତମେ ଯାଇ ତା'ଠୁଁ ଓଷଦ ଆଣିଦିଅ । ତା'ର ପୁଡ଼ିଆ ଭଲ କାମ ଦିଏ । ସେ ରୋଗର ମସ୍ତକୁ ଛୁଏଁ । ପିଉସୀକୁ ତା' ଓଷଦ ଛଡ଼ା ଅନ୍ୟ କାହାର ଓଷଦ କାଟୁ କରେ ନାହିଁ ।

ସୁନ୍ଦର : ଆଚ୍ଛା ! ମୁଁ ଡଙ୍ଗା ଖୋଲିଆଣେ । ପାଣିର ସୁଅ ଛୁଟିଚି । ମୁଁ ଯାଉଚି । ଶୀଘ୍ର ଫେରିଆସିବି । ଡଙ୍ଗା ଖୋଲି ନେଇ ଯାଉଚି । କାଶୀକୁ ଡଙ୍ଗାରେ ବସେଇ ନେଇ-ଆସିବି ।

ଲକୋ : ଯଦି ସେ ନିଜେ ନ ଆସିବ, ତେବେ ଓଷଦ ଧରି ଆସିବ । ଓଷଦ ସେ ଜାଣେ । ସେ ଗତ କୋଡ଼ିଏ ବର୍ଷ ହେଲା ଏ ପରିବାର ସହ ଚିହ୍ନା-ଜଣା । ସେ ପୁଡ଼ିଆ ତିଆରି କରି ରଖିଚି; କିନ୍ତୁ ତନଦନ ହେଲାଣି ତ ନଈରେ ପାଣି ବଢ଼ୁଚି । ଆମ ଭିତରୁ କେହି ହେଲେ ଯାଇପାରୁନୁ । ଆଗରୁ ପିଉସୀ ଯେବେ ତା' ଓଷଦ ଖାଇଚି, ସେ ଆରାମ ପାଇଚି ।

ସୁନ୍ଦର : ହଉ, ମୁଁ ଯାଉଚି ।

(ସୁନ୍ଦର ଚାଲିଗଲା । ଲଜୋ ଡାଟି ବନ୍ଦ କଲା । ଖଟ ଉପରେ ଶୋଇଥିବା ପିଉସୀ ଜୋର୍‌ରେ କାଶିବାକୁ ଲାଗିଲା ।)

ଲଜୋ : (ପାଟିକରି) ଦୀପା ! ନିଆଁରୁ ପଥର ବାହାର କରି ଆଣ । ପିଉସୀଙ୍କୁ ସେକ ଦେବାକୁ ପଡ଼ିବ । ଶୁଣ, ପିଉସୀଙ୍କି କହିବୁନି ଯେ, ସୁନ୍ଦରକୁ ଔଷଧ ଆଣିବାକୁ ପଠାଯାଇଚି । ଯଦି ସେ ଏକଥା ଜାଣିଯାଏ ନା, ଆଉ ମୋଟେ ଔଷଧ ଖାଇବନି । ସୁନ୍ଦର ଉପରେ ସେ ଚଢ଼ିଚି ।

(ଖଟ ଉପରେ ଥାଇ ପିଉସୀ କାଶିଲା ।)

ପିଉସୀ : କାଶୀ ପାଖକୁ ଔଷଧ ଆଣିବାକୁ କିଏ ଗଲା ?

ଲଜୋ : ପଡ଼ିଶା ଘରର ନତ୍ଥୁକୁ ମୁଁ କହିଚି ।

ପିଉସୀ : ନତ୍ଥୁ ତ ରାସ୍ତାରେ ଔଷଧ ପୁଡ଼ିଆକୁ ଫିଙ୍ଗିଦେଇ ଆସିବ । ସେଦିନ ତାକୁ କହିଥିଲି, ଡଙ୍ଗାକୁ ଠେଲି ଆଣି ଗଛରେ ବାନ୍ଧି ଆସିବୁ । ସେ ଆମ୍ଭଙ୍କୁ ଫିଙ୍ଗି କରି ଆସିଥିଲା ।

ଲଜୋ : ତୁ ବ୍ୟସ୍ତ ହଅନା । ସେ ପୁଡ଼ିଆ ଧରି ଆସିବ ।

ପିଉସୀ : ଜୀବନକୁ କହିଲୁନି, ସେ ନେଇଆସିଥାନ୍ତା ।

ଲଜୋ : ଜୀବନ ତ ଗାଡ଼ି ଆଉ ବଳଦ ସହିତ କାଲି ସଞ୍ଜରୁ ଗାଆଁ ଛାଡ଼ି ଗଲାଣି । ତା'ର ପିଲା, ସ୍ତ୍ରୀ ଆଉ ସବୁଘର ଅନ୍ୟ ଗାଁକୁ ଚାଲିଗଲେଣି । ପଛ ଘରେ ଲେଙ୍ଗଡ଼ା ବଳଦଟା ରହିଯାଇଛି—ସେଇ ଏକୁଟିଆ ଗୁହାଳରେ ଠିଆ ହୋଇ ବଗୁରି ଚିତ୍କାର କରୁଚି ।

ପିଉସୀ : ଭଗବାନଙ୍କୁ ଜଣା, ସେ ଏ ଗାଆଁ ଉପରେ କି ପ୍ରକାର ପ୍ରତିଶୋଧ ନଉଛନ୍ତି । ପ୍ରତି ଚାରି ବରଷରେ ଏଇଭଳି ବଢ଼ିଆସୁଚି । ପାଣି ଦାମନାରେ କାହାର କୋଉ କଥା ଚାଲିଲାଣି ଭଲା ? ଓହୋ···! ହେ ଭଗବାନ, ତୁ ବୁଝ !

ଲଜୋ : (ଦୀପାକୁ) ତୁ ଚୁଲିରେ ଆଲୁ ପକେଇଚୁ ?

ଦୀପା : ହଁ ।

ଲଜୋ : କେଇଟା ?

ଦୀପା : ତିନିଟା । ମତେ ଭୋକ ହଉନି ।

ଲଜୋ : ମୋର ତ ଭୋକରେ କରଡ଼ି ଜଳିଲାଣି ।

ଦୀପା : ପିଉସୀ ଶୋଇଗଲାଣି କି ?

ଲଜୋ : ବଗୁରିକୁ ନିଦ ଆସିଗଲା, ଭଲହେଲା । ଟିକେ ହେଲେ ଆରାମ କରିବ ।

ଦୀପା : ନିଃଶ୍ୱାସ ତ ଏବେ ବି ଜୋର୍‌ରେ ଛାଡ଼ୁଚି ।

ଲଜୋ : ବଗୁଲି ! ସାରା ଜୀବନ ବିପଦରେ ବୁଡ଼ିରହିଲା । ମୁଁ ଛୋଟିଆଟିଏ ହୋଇଥିଲି, ମା' ମରିଗଲା । ପିଉସୀ ଆମ ଦିହିଁଙ୍କି ପାଳପୋଷି ମଣିଷ କରିଚି । ମୋର ମନେଅଛି, ରାତିରେ ଯେତେବେଳେ ଜୁଳୁଜୁଳିଆ ପୋକ ଘାସ ଉପରେ ଚମକୁଥିଲେ, ପିଉସୀ ସେତେବେଳକୁ ଆମକୁ ରଜା-ରାଣୀ କାହାଣୀ ଶୁଣାଉଥିଲା । କେବେ କେବେ ଯାଦୁକର ଓ ଦେବୀଙ୍କ କାହାଣୀ କହୁଥିଲା । କେବେ କେବେ ସମୁଦ୍ର ଆଉ ମାଛଙ୍କର । ସୁରଜିତ୍ ନଈ ଆରପଟକୁ ମାଛ ଧରିବାକୁ ଗଲେ, ଖାଲେଇ ବୋଝେଇ କରି ମାଛ ଆଣୁଥିଲା । ପିଉସୀ ମାଛ ଭାଜୁଥିଲା । ତୁ ମାଛ ଭାଜିଲୁଣି ?

ଦୀପା : ନା, ଘଡ଼ିରେ ସେମିତି ପଡ଼ିଚି ।

ଲଜୋ : ମୁଁ ପିଉସୀଠୁଁ ମାଛ ଭାଜି ଶିଖିଥିଲି । କେତେଥର ସୁରଜିତ୍ ନଈରେ ପହଁରିବାକୁ ଯାଇ ଆଖି ଆଢ଼ୁଆଳକୁ ଚାଲିଗଲେ, ପିଉସୀ ଭଙ୍ଗା ଠେଲି ନେଇ ତା' ପିଛୁ ଧରେ । ଶେଷରେ ବଗୁଲି ତାକୁ ସାଙ୍ଗରେ ଧରି ଫେରେ । ଏବେ ତ ଟିକେ ହଲଚଲ ହୋଇ ପାରୁନି ।

ଦୀପା : କିଛି ତ ଖାଇପାରୁନି । କାଲି ମୁଁ ଡାଲି ତିଆରି କରି ଦେଲି ଯେ; ସେ ତାଟିଆକୁ ହାତରେ ଘୁଞ୍ଚେଇ ଦେଲା ପଛକୁ ।

( କବାଟରେ ଆଘାତ ଶୁଣାଗଲା । ଲଜୋ ଯାଇ ତାଟି ଖୋଲିଲା । କାଦୁଅ-ସରପଟ ହୋଇ ସୁନ୍ଦର ଆସିବାର ଦେଖାଗଲା । )

ଦୀପା : ଔଷଧ ଆଣିଲ ?

ସୁନ୍ଦର : ହଁ; ଏଇ ତିନୋଟା ପୁଡ଼ିଆ ଦେଇଚି । ତିନି ତିନି ଘଣ୍ଟା ଅନ୍ତରରେ ଦିବ ।

ଲଜୋ : କୋଉଥିରେ ?

ସୁନ୍ଦର : ଗରମ ପାଣି ବା ପାଚନ ସାଙ୍ଗରେ ।

ଲଜୋ : ଧନ୍ୟ । ଭଗବାନ ତମର ମଙ୍ଗଳ କରନ୍ତୁ ।

( ସୁନ୍ଦର ଚାଲିଗଲା । ଲଜୋ ପୁଡ଼ିଆ ଧରି ପିଉସୀ ପାଖକୁ ଗଲା । )

ଲଜୋ : ଦୀପା ! ପାଚନ ସିଝି ଗଲାଣି ?

ଦୀପା : ହଁ, ଅନେକ ବେଳହେଲା ଫୁଟୁଚି ।

ପିଉସୀ : (ଦୁଃଖରେ ଭାଙ୍ଗି ପଡ଼ି) ମତେ ନେଇଯାଅ ହେ ଭଗବାନ !

ଦୀପା : କାହିଁକି ମ ଅପା—କଷ୍ଟ ହଉଚି ବେଶି ?

ପିଉସୀ : (କାଶିଉଠି) ମୁଁ ଅସହାୟା ଏ ଘରେ ପଡ଼ିରହିଛି । କାଶ ଆଉ ପୀଡ଼ାରେ ରାତି ଦିନ କଟୁଚି । ନଈର ଲହଡ଼ି ଭଳି ଆସୁଚି ଏବଂ ଚାଲିଯାଉଚି ।

ଦୀପା : ଅପା ! ବୁଲିଲ ଟିକେ । ତମ ପିଠିରେ ସେକ ଦେଇଦିଏ ।

ଲଜୋ : ପଥର ବେଶି ଗରମ ହେଇନି ତ ଦୀପା ?

ଦୀପା : ନାଇଁ, ପାଣି ଛିଞ୍ଚାଡ଼ି କରି ଆଣିଚି । ଆଉ କନା ଗୁଡ଼େଇ ଆଣିଚି ।

ଲଜୋ : ଅପା ! ଦରଜ ଟିକେ କମିଲା ?

ପିଉସୀ : ଏବେ ତ ସେମିତ ଅଛି ।

ଲଜୋ : ନେ, କାଶୀ ବଇଦ ପୁଡ଼ିଆ ପଠେଇଦେଇଚ ।

ପିଉସୀ : ବୋଧେ ଏଇ ଓଷଦରେ କଷ୍ଟଟା କମିଯିବ ।

ଲଜୋ : ଇଏ ଛଅଟା ପୁଡ଼ିଆ, ଛଅ ଘଣ୍ଟା ଅନ୍ତରେ ଖାଇବୁ ।

ଦୀପା : କୋଉଥିରେ ?

ଲଜୋ : ଗରମ ପାଣି ବା ପାଚନ ସାଙ୍ଗରେ ।

ଦୀପା : ଅପାଙ୍କ ଗ୍ରହରେ ଏ ଗରମ ପଥର ଏମିତ ଲଗିରହିଥାଉ । ଆରାମ ଦେବ । ବାପ୍, ତାଙ୍କୁ ଗୋଟାଏ ପୁଡ଼ିଆ ଏଇନା ଦେଇ ଦେ; ବାକି ପରେ ଦବୁ ।

ଲଜୋ : ମୁଁ ଅପାକୁ ଓଷଦ ଦଉଚ ।

ଦୀପା : ତୁ ବୋଧେ ତାଟି ବନ୍ଦ କରନୁ । ନଈରୁ ଉଡ଼ିଆସୁଥିବା ଜଳକଣା ଘର ଭିତରକୁ ଚାଲିଆସୁଚ ।

ଲଜୋ : ଯା, ତାଟି ବନ୍ଦ କରିଦେଇ ଆ ।

( ଲଜୋ ପଛ ଘରକୁ ଓଷଦ ତିଆରି କରିବାକୁ ଚାଲିଗଲା । ଦୀପା ତାଟି ବନ୍ଦ କରିବାକୁ ଆସିଲା । ସେ ବାହାରକୁ ଟିକିଏ ନିରୀକ୍ଷଣ କଲା । )

ଦୀପା : (ଧୀର ଗମ୍ଭୀର ସ୍ୱରରେ) ସୁନ୍ଦର ! ତମେ ଏଠି ଏଯାଏ ଠିଆହେଇଚ ?

ସୁନ୍ଦର : ହଁ । ମୁଁ ଯାଉଥିଲି ।

ଦୀପା : ତମ ଡଙ୍ଗା କେଉଁଠି ?

ସୁନ୍ଦର : ବାହାରେ । ଏମିତ ତମକୁ ଟିକେ ଦେଖିବାକୁ ଅଟକିଗଲି ।

ଦୀପା : ହଉ, ଏବେ ଯାଅ ।

ସୁନ୍ଦର : ଯାଉଛି ।

ଦୀପା : (ଚମକ ପଡ଼ି) ଆରେ ! ତମ ମୁଣ୍ଡରେ ଏ ଖଣ୍ଡିଆ କେମିତ ହେଲା ?

ସୁନ୍ଦର : ରାସ୍ତା ବହୁତ ଅନ୍ଧାର ହେଇଥିଲା । ଗୋଟାଏ ଜାଗାରେ ଗୋଡ଼ ଖସିଯିବାରୁ ପଡ଼ିଗଲି । ଗୋଟାଏ ମୋଟା କାଠଗଡ଼ ରାସ୍ତାରେ ପଡ଼ିଥିଲା । ମୁଣ୍ଡଟା ସେଇଥିରେ ପିଟି ହୋଇଗଲା ।

ଦୀପା : ଓଃ ! ତା'ହେଲେ ତମେ ଶୀଘ୍ର ଯାଅ ।

ସୁନ୍ଦର : ସେଇଦିନ ରାତିରୁ ମୁଁ ତମ ଘରକୁ କେବେ ଆସି ନ ଥିଲି । ରାସ୍ତାରେ ଯିବା ଆସିବା କଲାବେଳେ ତମକୁ ଦେଖେ ।

ଦୀପା : ଏତେବଡ଼ ତୋଫାନରେ ତମେ କୁଆଡ଼େ ଯାଇଥିଲ ?

ସୁନ୍ଦର : ଜେଟିରୁ ସରଦାରର ଘୋଡ଼ା ଖସିପଡ଼ିଥିଲା । କୁଆଡ଼େ ଗଲା ଜଣାପଡ଼ିଲାନ, ପାଣି

ସୁଅରେ କୁଆଡ଼େ ଯାଇ ହଜିଗଲା । କିଛି ଠିକଣା ମିଳିଲାନି । ମୁଁ ତାକୁ ଖୋଜିବାକୁ ଯାଇଥିଲି ।

ଦୀପା : ପୁଣି କ'ଣ ମିଳିଲା ?

ସୁନ୍ଦର : ନା ।

ଦୀପା : ତମେ କାହିଁକି ଘୋଡ଼ା ଖୋଜିବାକୁ ଯାଉଥିଲ ? ଯଦି କୌଣସି ଅଘଟଣ ଘଟି-ଥାଆନ୍ତା ! ଗାଆଁର ଅଧିକାଂଶ ଲୋକ ତ ଚାଲିଗଲେଣି । ତମେ କାହିଁକି ଯାଉନ ? ତମର କୋଉ ଗାଈଗୋରୁ ଅଛନ୍ତି ଯେ, ସେମାନଙ୍କୁ ଉଦ୍ଧାର କରିବାକୁ ବସିରହିଛ ?

ସୁନ୍ଦର : ମୁଁ ତୋଫାନକୁ ଡରୁନି । ମୁଁ ଏମିତି ମନେ ମନେ ଭାବୁଥିଲି, କାଳେ ତମ ସାଙ୍ଗରେ ଦେଖା ହୋଇ ପାରିବନି । କିଏ ଜାଣେ, ତୋଫାନ ଆସିଲେ ମତେ କେହି ଯଦି ଏଇ କୁଡ଼ିଆ ଘରୁ ଆବାଜ ଶୁଣାଇ ଡାକିବ ।

ଦୀପା : (ବିବ୍ରତ ହୋଇ) ପଛ ଥରକ······ନା-ନା,···ତମେ,···ତମେ ଯାଅ ।

ସୁନ୍ଦର : ପଛ ଥରକ,···ହଁ—ସେଇ ରାତି—ସେଇ ତୋଫାନ । ତମର ସେଇ ପରଶ ମୋର ସାରା ଶରୀରକୁ ଝିମିଝିମି କରି ଦେଇଥିଲା । ସବୁଦିନପାଇଁ ତମର ସେଇ ଚିହ୍ନ ମୋ ମନରେ ଆଙ୍କି ହୋଇ ରହିଯାଇଚି ।

ଦୀପା : ମୁଁ ସୁରଜିତ୍‌କୁ ଭୟ କରୁଚି । ସେଇ ଦିନଠାରୁ ତାଙ୍କ ଡର ମୋ ମନରେ ଆହୁରି ବଢ଼ିଯାଇଛି ।

ସୁନ୍ଦର : ତମର ଭ୍ରମ ଜନ୍ମିଛି ।

ଦୀପା : କେତେ ଥର ତମକୁ ଡାକିବାକୁ ଇଚ୍ଛା ହୋଇଚି; କିନ୍ତୁ ସେ ଡାକରା ମୋ'ର କଣ୍ଠ ଭିତରେ ସୀମିତ ହୋଇ ଯାଇଛି । ମୋର ମନେ ହୋଇଚି, ମୁଁ ତମକୁ ଡାକଦେଲା ମାତ୍ରେ ନଈ ଆରପାରିରୁ ସୁରଜିତ୍ ପାଟିକରି ଉଠିବ ।

ସୁନ୍ଦର : ତମେ ପାଗଳୀ ! କେତେ ବର୍ଷ ବିତିଗଲାଣି ସେଇ ରାତିଟି ପରେ ?

ଦୀପା : ଚାରିବର୍ଷ ।

ସୁନ୍ଦର : ଏମିତି ମନେ ହେଉଚି, ସତେକି କାଲିର କଥା । ଯେମିତି ସେ ମୁହୂର୍ତ୍ତଟା ଏବେ ବିତିଯାଇଛି । ସେ ରାତି ଆଉ ଏଇ ରାତି ଭିତରେ ସତେ ଯେମିତି ମୋଟେ ଫରକ ନାହିଁ । ଦୀପା, ତମେ ଆଉ ସେମିତି କହିବ ନାହିଁ । କେତେ ଥର ରାତିରେ ମୁଁ ଏଇ କୁଡ଼ିଆ ଆଖ-ପାଖରେ ତମକୁ ଦେଖିବା ପାଇଁ ଘୂରିବୁଲିଚି । ଶୀତଦିନର ଥଣ୍ଡା ରାତିରେ ମୁଁ ଦୂର ଓଦା ବାଲିରେ ଘଣ୍ଟା ଘଣ୍ଟା ଧରି ଠିଆହୋଇଚି । ଶୀତ ମୋର ତଳପାରୁ ତାଳୁକୁ ଫୁଟେଇ ପକାଏ । ମୋର ସପନଗୁଡ଼ା ସେଇ ବାଲିରେ ଟିକି ଟିକି ହୋଇ ଦଗ୍ଧୀଭୂତ ହୋଇ ପଡ଼େ ।

ଦୀପା : ସୁନ୍ଦର, ତମେ ରାତିର ଅନ୍ଧାରକୁ ଭୟ କରନା ? —ଆଉ ଏ ବଢ଼ୁଥିବା ନଈ-ପାଣିକୁ ବି ଡରନା ?

ସୁନ୍ଦର : ପାଣି ସବୁ ଜାଗାକୁ ଏକ କରିଦେଇଛି ।

ଦୀପା : (ଥରଉଠି) ଜାଣେ ନା, ପାଣି ତଳେ କ'ଣ ଲୁଚିରହିଛି ? କିଛି ତ ଆଖିରେ ପଡ଼େ ନାହିଁ ।

ସୁନ୍ଦର : ଅନ୍ଧାରରେ ମତେ ତମର ଆଖି ଚକ୍‌ମକ୍ ହେଇ ଦିଶେ—ଓଦା ଓଦା ଆଖି···

ଦୀପା : ମତେ ଛୁଅଁନା । ମୁଁ ସେ ରାତକୁ ଭୁଲିପାରିନାହିଁ ।

ସୁନ୍ଦର : ସୁରଜିତ୍ ତ ଏବେ ଫେରିବ ନାହିଁ । ତମେ ତ ଗୋଟାଏ ଖିଆଲକୁ ନଜର କରି ବସିଛ । ତମେ ଦିନରାତି ସେଇ ଘରଯିରେ ବୁଡ଼ିରହି, ସେଇ ଭୟର ଗ୍ରୀଷ୍ମ ତଳେ ନିଜ ସୁନା ଦେହକୁ ଚୂନାକରିବାରେ ଲଗିଛ । ତା'ର ଯିବା ଗୃରବର୍ଷ ହେଇଗଲଣି । ତା'ର ପଗଡ଼ି, ଜୋତା ଓ ଲୁଙ୍ଗି ମିଳିଥିଲି—ପାଣିରେ ଓଦା ହୋଇଥିଲି; କାଦୁଅ-ସରପଟ ହେଇଥିଲି । ନିଶ୍ଚୟ ତାକୁ ମଗର ଖାଇ ଯାଇଥିବେ । ତମ ହାତ କାହିଁକି ଥରୁଛି ?

ଦୀପା : ଡର ଯୋଗୁଁ ।

ସୁନ୍ଦର : ତମର କାହାକୁ ଡର ?

ଦୀପା : ଏଁ ! ଇଏ କାହାର ସ୍ୱର ?

ସୁନ୍ଦର : (ହସିଉଠି) ଇଏ ଘାଟରେ ବନ୍ଧାହେଇଥିବା ନାଆର ଜଞ୍ଜିରର ଧ୍ୱନି; ଆଉ ପାଣିର ଛପାକ୍-ଛପ ସ୍ୱର—ଯାହା ତାକୁ ଅତିକ୍ରମ କରି ଯାଉଛି ।

ଦୀପା : ମୋର ଯେମିତି ମନେହଉଛି, କିଏ ଜଣେ ପାଣିରୁ ଉଠିଆସୁଛି । ଯେମିତି କି କାଦୁଅ ଜୁଡ଼ୁବୁଡ଼ୁ ହେଇଥିବା କୌଣସି ଜିନିଷ—କିଏ ତାକୁ ଉପରକୁ ଟାଣିଆଣୁଛି—ଏ ମନରେ ଅଜବ ଚିନ୍ତାସବୁ ଜନ୍ମ ହେଉଛି ।

ସୁନ୍ଦର : ଏସବୁ ମିଛ—ଭ୍ରମ ।

ଦୀପା : ସେ କିଏ ?

ସୁନ୍ଦର : କେହି ନୁହେଁ, କେବଳ ତମର ଚିନ୍ତା, ଯାହା କୁଦା ମାରି ଉପରକୁ ଗୁଲି ଆସିଥିଲି ।

ଦୀପା : ତମର ହାତପରଶ କେତେ ଆନନ୍ଦ ଦଉଛି ସତେ !

ସୁନ୍ଦର : ତମ ହୃଦୟର ସ୍ପନ୍ଦନ ମତେ ଏଠିକି ଶୁଭୁଛି ।

ଦୀପା : କେତେଥର ମୋର ମନେହୁଏ, ଥରେ ମୋ ଛାତି ଜୋର୍‌ରେ ଚମକି ଉଠିବ, ଏବଂ ତା'ପରେ ବନ୍ଦ ହେଇଯିବ । ତମ ପରଶ ମୋ ଅଙ୍ଗ-ପ୍ରତ୍ୟଙ୍ଗରେ ତରଙ୍ଗ ଖେଳେଇ ଦେଇଛି । ଚଳଚଞ୍ଚଳ ତରଙ୍ଗ,···ଯାହାର କୌଣସି ଆଦି ଅନ୍ତ ନାହିଁ । (ଅଭିମାନରେ ଭାବବିହ୍ୱଳ ହୋଇ) ସୁନ୍ଦର !

ସୁନ୍ଦର : ଉଁ ।

ଦୀପା : ସୁନ୍ଦର ! ମୋ ମୁଣ୍ଡ ଭାରି ହେଇ ଉଠୁଛି । ଆଖି ଆଗରେ ଅସଂଖ୍ୟ ଜୁଳୁଜୁଳିଆ

ପୋକ ନାଚ କରୁଚନ୍ତି । ତମର ଛାତରେ ମୁଣ୍ଡ ରଖି ମୋ ଛାତି ଅଧିକ ଦୁଲୁକୁଚି ।

ସୁନ୍ଦର : ଦୀପା !

ଦୀପା : (ଭାରସ୍ୱରରେ) ମୋ ରକ୍ତରେ କିଏ ଜଣେ ନାଆ ଠେଲିନେଉଚି । ମୋର ଶିରା-ପ୍ରଶିରାରେ କିଏ ଚକ୍କର ମାରୁଚି, ବୁଲୁଚି । କାଶୀ ବଇଦର ପୁଡ଼ିଆରେ ପିଇସୀର କଷ୍ଟ ଦୂର ହୋଇଗଲା । ଏମିତି କିଛି ଓଷଦ ନାହିଁ, ଯାହା ଦ୍ୱାରା ନଈର ପ୍ରବାହ ବନ୍ଦ ହୋଇଯାଆନ୍ତା; ଆଉ ତୋଫାନ ବନ୍ଦ ହୋଇ ଯାଆନ୍ତା ! ଏମିତି କିଛି ଓଷଦ ନାହିଁ, ଯା' ଦ୍ୱାରା ମୋ ମନରେ ଦେଖାଦେଇଥିବା ତୋଫାନ୍ ଦବିଯାଆନ୍ତା ।

ସୁନ୍ଦର : ସେଇ ତୋଫାନର ପ୍ରତୀକ୍ଷାରେ ତ ମୁଁ ଖରା-ବର୍ଷାକୁ ଏକ୍ କରିଦେଇଚି ।

ଦୀପା : ଏଇ ତୋଫାନ ମୋର ଗୁରୁବର୍ଷର ଜୀବନ-ଭୂମିକୁ ପାଣିରେ ବୁଡ଼େଇ ଦେଇଚି ।

ସୁନ୍ଦର : ସେଇ ରାତି ଆଉ ଏ ରାତି ଭିତରେ କୌଣସି ତଫାତ୍ ନାହିଁ । ସମସ୍ତ ଗୋଟାଏ ଗ୍ରେଟିଆ ବୃତ୍ତରେ ମିଶିଯାଇଚି । ଯେମିତି ସେ ରାତିଟା ଲମ୍ବା ହୋଇ ଏ ରାତିର ମଥା ଉପରେ ଆସି ବସିଯାଇଚି । ···ତମର ଅସ୍ଥିର ଭାଷା ମୋର ନିଷ୍ଠୁର ସ୍ୱପ୍ନକୁ ଦ୍ରବୀଭୂତ କରି ଦେଇଚି । ତମର ଉଷ୍ମ ସ୍ପର୍ଶରେ, ତମର ସ୍ପନ୍ଦନଭରା ଛାତିରେ···

( ନେପଥ୍ୟରେ ନଈ ଲହଡ଼ିର ପ୍ରତିଧ୍ୱନି ଭଳି ହସ ଭାସିଆସିଲା । କ୍ରମଶଃ ସ୍ପଷ୍ଟ ଶୁଣାଗଲା । ଦୀପା ଚମକି ପଡ଼ିଲା । )

ସୁନ୍ଦର : କିଏ ? ଦୀପୁ, ତମେ ଭୟଭୀତ କାହିଁକି ହେଉଛ ? କିଏ ସେ ?

ଦୀପା : ସୁରଜିତ୍ ! ଅନ୍ଧାରରେ ବିଜୁଳି ଯେତେବେଳେ ଚମକି ଉଠିଲା, ମୁଁ ଦେଖିଲି ଘାଟ ପାଖରୁ ସେ ଚାଲି ଚାଲି ଆମର ଆଡ଼କୁ ମାଡ଼ିଆସୁଚି ।

ସୁନ୍ଦର : ସେମିତି ତମର ଏଇଟା ଭ୍ରମ ହୋଇପାରେ ।

(ହସ ପୁଣି ଶୁଣାଗଲା ।)

ଦୀପା : ନା, ଇଏ ନିଶ୍ଚୟ ସୁରଜିତ୍ । ତମର ପିଠିପଟେ ସୁରଜିତ୍ ଠିଆ ହୋଇଚି । ସୁରଜିତ୍ !

( କାଦୁଅ-ସରପଟ ହୋଇ ସୁରଜିତ୍ ଭିତରକୁ ଆସିଲା । )

ସୁରଜିତ୍ : ହଁ, ମୁଁ — ସୁରଜିତ୍ । କ'ଣ ହେଲା ? ମତେ ଦେଖି ବିବ୍ରତ ହୋଇଗଲୁ କାହିଁକି ?

ଦୀପା : ସୁରଜିତ୍ !

ସୁରଜିତ୍ : ମତେ ଜଣାଥିଲା, ମୁଁ ଯାହା ଦେଖିପାଇଥିଲି ତାହା ଠିକ୍ ।

ଦୀପା : ନା ସୁରଜିତ୍, ନା । (ମିନତି ହୋଇ) ନା ।

ସୁରଜିତ୍ : ମୁଁ ଏଠୁ ଚାଲିଗଲି ନଈର ଆରପଟକୁ । ମୋର ପଗଡ଼ି, କୋତା, ଲୁଙ୍ଗି

ଆଉ ଅନ୍ୟ ଲୁଗାକୁ ନଣ୍ଡ ରଖିନେଲ—ଲଜ୍ଜାର ଝାଙ୍କିନେଲା । ମୁଁ ସମସ୍ତଙ୍କ ଆଖି ଅନ୍ତରାଳରେ ଆରପାରକୁ ଚାଲିଗଲି । ସମସ୍ତ ଔଦ୍ଧତ୍ୟ, ଖିଆଲକୁ ଛାଡ଼ି···କିନ୍ତୁ ମୁଁ କ'ଣ କରନ୍ତି ? ଚାରି ବର୍ଷ ପର୍ଯ୍ୟନ୍ତ ତମର ଶେଷ ଚିତ୍କାର ତମର ଲୁହଭରା ସ୍ୱର ମୋ କାନ ପାଖରେ ପ୍ରତିଧ୍ୱନି ତୋଳିଲା···

ଦୀପା : ( କାନ୍ଦ ଉଚ୍ଛନ୍ନ ହୋଇଉଠି) ମୁଁ···

ସୁରଜିତ୍ : ତମର ଆକୁଳତା ମୋ ମନରେ ଶାମୁକା ଭଳି ପହଁରିବାକୁ ଲାଗିଲା । ମୁଁ ଭାବିଲି, ବୋଧହୁଏ ତମେ ଠିକ୍ କହୁଥିଲ—ମୁଁ ଭୁଲ ଭାବିଥିଲି । ତମେ ସତ, ମୁଁ ମିଛ । ହୁଁ-ହୁଁ-ହୁଁ, ମୁଁ ଚାରି ବରଷ ଧରି ଫେରିଲି ନାହିଁ । ମୁଁ ମୋ ଭାଗ୍ୟର ନିଷ୍ଠୁରତିକୁ ଉପଭୋଗ କରୁଥିଲି । ମୁଁ ମନରେ ଆଶା ପୋଷଣ କରିଥିଲି, ଗୋଟାଏ ଶ୍ରେଷ୍ଠ ଫୁଲଙ୍କୁ ଉଷ୍ମ ରଖିବି । ମୁଁ ଆଗରୁ ଆସିଥିଲେ ଏ ଆଶା ମରିଯାଇପାରନ୍ତାଣି । ତମର ଶେଷ ନିବେଦନ ମୋ ମନରୁ ପୋଛି ହୋଇ ନ ଥିଲା । ମୁଁ ଯେତେ ଦୂରକୁ ଯାଉଥିଲି, ସେତିକି ପ୍ରତ୍ୟାଘାତ ହୋଇଯାଉଥାଏ ତମର ଅନୁନୟଭରା ଚିତ୍କାର । ଚାରି ବରଷ କାଳ ଯେଉଁଠି ମୁଁ କାମ କରିଚି, ସେଠି ତମର ସ୍ୱର, ତମର ହସ, ତମର ପରଶ କାମ ମଝିରେ ଆସି ଠିଆ ହେଉଥିଲା । କ୍ଷେତର ପାଣିରେ ତମର ପ୍ରତିଛବି ମତେ ଦେଖାଯାଉଥିଲା । ବଳଦ ଅଡ଼େଇବା ବେଳର ଘଣ୍ଟି ଶବ୍ଦ ସହ ତମ ହସର ଧ୍ୱନି ଶୁଭିଯାଉଥିଲା···କିନ୍ତୁ ହେ ଭଗବାନ ! ମୁଁ ଫେରିଲି କାହିଁକି ?

ଦୀପା : (ସେଇଭଳି ବିକଳଭରା ସ୍ୱରରେ) ମୋ କଥା ଟିକେ ଶୁଣ ! ମୋ କଥା ଶୁଣ—ମୋ କଥା । ତମେ ଯାହା ଦେଖୁଛ, ମିଛ । ତାହା ମିଛ ! ତମେ ମୋ ଉପରେ ଭରସା କର ।

ସୁରଜିତ୍ : ତମ ଉପରେ ଭରସା କରିବି ? —ଆଉ ନିଜ ଆଖିକୁ ନୁହେଁ ? ନିଜ ମନରେ ପ୍ରସାରିତ ଓ ସଙ୍କୁଚିତ ହେଉଥିବା ଭାବନା ଉପରେ ନୁହେଁ ? ଆଉ ସୁନ୍ଦର ଉପରେ ନୁହେଁ ?

ଦୀପା : ସୁନ୍ଦର ତ ପିଉସୀଙ୍କ ପାଇଁ ଔଷଧ ଧରି ଆସିଥିଲା । ଔଷଧ ଦେଇ ଏବେ ଯାଉଥିଲା । ମୁଁ ତାଟି ବନ୍ଦ କରିବାକୁ ଆସି ତା ସାଙ୍ଗରେ କଥାବାର୍ତ୍ତାରେ ଲାଗିପଡ଼ିଲି । ଚାରି ବରଷ ପରେ ଏଇ ପ୍ରଥମ ଥର···

ସୁରଜିତ୍ : ହାଃ ହାଃ···ହାଃ··· !!

ଦୀପା : ଏଥିରେ ସୁନ୍ଦରର କିଛି ଦୋଷ ନାହିଁ । ମିଁ ତାକୁ ଡାକିଥିଲି । ବାସ୍, ସେ ଔଷଧ ଆଣିବାକୁ ଯାଇଥିଲା, ଆଉ···

ସୁରଜିତ୍ : ହାଃ-ହାଃ-ହାଃ ! ସୁନ୍ଦର !—ଯିଏ ମୋର ପିଲାଦିନର ସାଙ୍ଗ ଥିଲା, ମୋ ସାଙ୍ଗରେ ଯିଏ ଡଙ୍ଗା ଠେଲୁଥିଲା, ଯିଏ ମୋ ଡଙ୍ଗାର ଜଗୁଆଳ ଥିଲା, ଯିଏ ମୋ ଡଙ୍ଗାକୁ ପ୍ରତ୍ୟେକ ଝଡ଼ରୁ ରକ୍ଷା କରୁଥିଲା; ଯିଏ ମୋର ବନ୍ଧୁ ଥିଲା—ସେ ମୋ ବାଦ୍···

ସୁନ୍ଦର : କିନ୍ତୁ ମୁଁ ...

ସୁରଜିତ୍ : (ବାଧାଦେଇ) ତୁ କିଛି କହନା ସୁନ୍ଦର ! ତୋର କିଛି କହିବା ଦରକାର ନାହିଁ । ତୁ ମୋ ଆଗରେ କେବେ ମୁଣ୍ଡ ଟେକି ନ ଥିଲୁ; ଆଉ ଆଜି ମଧ୍ୟ ଉଠାନା ।

ଦୀପା : (ଆଖିରେ ଲୁହଭରି) ମୁଁ ଏଇ ମୁହୂର୍ତ୍ତିକୁ ଭୟ କରୁଥିଲି—ଯେପରି ଏଇ ଅନାଗତ ଝଡ଼ ଆଉ ସ୍ରୋତ ପଛରେ, ମତେ ଧରିବା ପାଇଁ ଏକ ଅଜଣା ଭିଡ଼ା ଆସି ଠିଆ ହୋଇଥିଲା ।

ସୁରଜିତ୍ : ମୁଁ ଚାରିବର୍ଷକାଳ ତମରି ମଥାର ସିନ୍ଦୂରକୁ ଗ୍ଲାନିରେ ଲଗାଇ ଦେଖୁଥିଲି । ଶେଷଥର ତମର ଲାଜେଇଯାଇଥିବା ମୁହଁରେ ସୁନ୍ଦରର ପ୍ରେମ-ଚିହ୍ନ ଝଲକୁଥିଲା; ଲକ୍ଷେ ଥର ଲିଭେଇଲେ ବି ଲିଭୁ ନ ଥିଲା । ତାକୁ ଲିଭେଇବା ପାଇଁ ମୁଁ ଫେରିଆସିଚି ।

ଦୀପା : (ଅନୁନୟ କରି) ଚୁନ୍ନି, ଟିକେ ଅଟକି ଯା । ମୋ କଥା ଶୁଣ । ତମକୁ ମୋ କଥା ଶୁଣିବାକୁ ପଡ଼ିବ । ତମେ ଯାହା କହିଯାଉଚ, ସବୁ ମିଛ, ଖାଣ୍ଟି ମିଛ । —ତମକୁ ମୋ'ର ପ୍ରତୀକ୍ଷାର ରାଣ—ତମରି ସ୍ମୃତି ରାଣ ।

(ସୁରଜିତ୍ ଯିବାକୁ ଲାଗିଲା । ଦୀପା ତା'ର ହାତ ଧରିପକାଇଲା ।)

ଦୀପା : (ଅବଶ ସ୍ୱରରେ) ପୁଣି ତମେ କୁଆଡ଼େ ଚାଲିଲ ? ହେ ଭଗବାନ '

ସୁରଜିତ୍ : ମୋ ହାତ ଛାଡ଼ିଦିଅ । ଯା—ଫେରି ଯା ତମେ ।

ଦୀପା : (ଅଶ୍ରୁଭରା କଣ୍ଠରେ) ଜୀବନର ଅନ୍ଧକାର ରାତିରେ ମୁଁ ତମକୁ ପ୍ରତୀକ୍ଷା କରିଛି । ଆଖିର ପିଛଡ଼ା ନ ପକେଇ ତମରି ରାସ୍ତାକୁ ଚାହିଁ ରହିଛି । ଏ ସାରା ଘାଟକୂଳକୁ ମୁଁ ନିଜ ପାଦରେ ମାପି ସାରିଛି । ଯେତେବେଳେ ମୋ ଆଖିପତା ଲାଗିଯାଏ, ତମେ ସେତିକିବେଳେ ଆସିଯାଅ—

ସୁରଜିତ୍ : ମତେ ଯିବାକୁ ଦିଅ ।

ଦୀପା : କୁଆଡ଼େ ଯାଉଛ ? କେଉଁଠିକି ?

ସୁରଜିତ୍ : ଯେଉଁଠି ମୋର ସ୍ୱପ୍ନ ଆତ୍ମହତ୍ୟା କରିଚି । ସାରା ଘାଟକୂଳ ନଈର ଫେଣରେ ଏକାକାର ହେଇଯାଇଚି । ମୁଁ ଆଉ କେବେ ଆସିବି ନାହିଁ ।

ଦୀପା : ମୁଁ ଏଇ କୁଡ଼ିଆରେ ତମରି ଗ୍ରେଟ ପିଲାକୁ ଜଗି ରହିଛି—ତମ ସ୍ମୃତିକୁ ମଧ୍ୟ ସାଇତି ରଖିଛି । ତମେ ଯାଅନା ।

(ସୁରଜିତ୍ ହାତ ଛଡ଼େଇ ଦେଇ ଚାଲିଗଲା । ଲହଡ଼ିର ଚିତ୍କାର ଆଉ ପବନର ସାଇଁ ସାଇଁ ଶବ୍ଦ ଶୁଣାଗଲା । )

ସୁନ୍ଦର : ସେ ଫେରି ଚାଲିଗଲା ! ସେ ଚାଲିଗଲା ପୁଣି !

ଦୀପା : (କ୍ରୋଧରେ କାନ୍ଦି କାନ୍ଦି) ହଁ । ତମେ ମଧ୍ୟ ଯାଅ ! ଚାଲିଯାଅ !!

ସୁନ୍ଦର : ଦୀପା ! ମୋ କଥା ଶୁଣ ଦୀପା !

ଦୀପା : ଚାଲିଯାଅ ।

ସୁନ୍ଦର : ଦୀପା ! ତମେ ମୁହଁ କାହିଁକି ବୁଲେଇ ନେଲ ଦୀପା ?

ଦୀପା : ଯା, ଚାଲିଯା । ଏବେ, ଏଇ ମୁହୂର୍ତ୍ତରେ ! ମତେ ଚାଟି ବନ୍ଦ କରିବାକୁ ହେବ । (ଚିତ୍କାର କରି) ଯା···ଚାଲି ଯା !

(ସୁନ୍ଦରର ପ୍ରସ୍ଥାନ । ଦୀପା ଝରକା ବନ୍ଦ କଲା ଏବଂ ଝରକାକୁ ପିଠି ଲଗାଇ କୋହ ଚାପି କାନ୍ଦଉଠିଥିଲା ।) □□□

ପାତ୍ର

ଜଣେ ଲୋକ

ସ୍ଥାନ

ଗୋଟିଏ ଉପର ମହଲା କୋଠରିର ଝରକା

[ କୌଣସି ଶିଳ୍ପନଗରୀର ସିଭିଲ୍ ଲାଇନ୍‌ରେ ଥିବା କୋଠାର ଉପର ତାଲାର କୋଠରି । କୋଠରିଟିର ଖୋଲା ଝରକା ପାଖରେ ଜଣେ ପ୍ରୌଢ଼ ଠିଆହୋଇଛନ୍ତି । ଝରକା ଦେଇ ରାସ୍ତା ଦେଖାଯାଉଛି; କୋଠା ଆଗର ଗେଟ୍ ଦେଖାଯାଉଛି; ପାଖ କୋଠାର ଅଗଣା ଓ ବାରଣ୍ଡା କାନ୍ଥିତ୍ ଦେଖାଯାଉଛି । ଦୂରରୁ ସହରର ରେଲଷ୍ଟେସନରୁ ଟ୍ରେନ ଯିବା-ଆସିବାର ଶବ୍ଦ ଶୁଭୁଛି ।

ଝରକା ପାଖରେ ଠିଆହୋଇଥିବା ପ୍ରୌଢ଼ ଜଣକ ମନଖୋଲା ହସୁଛନ୍ତି । କିଛି କଥା ଅଛି; ଯୋଉଥି ପାଇଁ ସେ ହୁଏତ ସେମିତ ହସୁଛନ୍ତି—ତାହାହିଁ ହୁଏତ ଠିକ୍ ଏଇମାତ୍ର ଗୃହକର କହିଯାଇଛି ।

ପରଦା ଉଠିଲାବେଳେ କେବଳ ମାତ୍ର ଗୃହକରର ପିଠି ଦେଖାଗଲା । ପର୍ଦ୍ଦା ପୂରା ଉଠିଲା ବେଳକୁ ସେ ଲୁଚିଗଲା ।

ପ୍ରୌଢ଼ ଜଣକ ସେମିତ ହସୁଥାଏ, ଏପରି ଏକ ହସ ଯାହା ଧୀରେ ଧୀରେ ବିଦ୍ରୂପରୁ ଘୃଣାରେ ରୂପାନ୍ତରିତ ହୋଇ ଶେଷରେ ଯେମିତ ନଗ୍ନ ବିଷ ଭଳି ରହିଯାଇଛି । ]

ଲୋକଟି—

(ସେଦ୍ଧପରି ବିଷମୟ ହସ ହସୁଁ ହସୁଁ)
ସାହେବାଣୀ ଷ୍ଟେସନକୁ ଯାଇଛନ୍ତି,
ତାଙ୍କର ପ୍ରଣୟୀକୁ ବିଦାୟ ଦେବାକୁ (ଏବେ ବି ହସୁଛନ୍ତି)
ଆପଣାର ଆବେଗର ଆହୁତ ଦେବାକୁ ! (ହଠାତ୍ ହସ ରୋକ)
ସାହେବାଣୀ ଷ୍ଟେସନକୁ ଯାଇଛନ୍ତି
ଆପଣା ହାତର ଉଷ୍ଣତାରେ ଶେଷଥର ଲାଗି
ଏକ ପରପୁରୁଷର ଆଙ୍ଗୁଠିଗୁଡ଼ିକକୁ ଆଉଁସି ଦେବାକୁ !
ସାହେବାଣୀ ଷ୍ଟେସନ ଯାଇଛନ୍ତି
ଅନ୍ତିମ ବାର ଆପଣାର
ମଦୋନ୍ମତ୍ତ ଆଖିରେ
କେଉଁ ପରପୁରୁଷର ପକ୍ଷ୍ମତଳେ
ସ୍ୱପ୍ନ ଜାଗ୍ରତ କରିବାକୁ !
ସାହେବାଣୀ ଷ୍ଟେସନ ଯାଇଛନ୍ତି,
ଶେଷଥର ଲାଗି ଏକ ପତ୍ନୀର ଓଠକୁ
କେଉଁ ପରପୁରୁଷର ସ୍ପର୍ଶରେ ଅପବିତ୍ର କରିବା ଲାଗି ।

ଯେମିତି କେହି ଶାଖାରେ ନୀଡ଼ ନିର୍ମାଣ କରେ,
ଆଉ ମୂଳରୁ ଛିଡ଼ିଯାଏ ଡାଳ;
ଯେପରି ଅନ୍ଧକାର ଆପେ ଆପଣାଗୁଏଁ ହୃଦୟର କାଳିମାରେ
ଗମ୍ଭୀର ହୋଇଯାଏ,
ଫୁଟି ଉଠେ;
ଯେପରି କେହି ପଥଭ୍ରାନ୍ତ,
ଅକସ୍ମାତ୍ କୌଣସି ବନ୍ଧ ଗଳିର ପ୍ରାନ୍ତରେ ପହଞ୍ଚି ଅଟକିଯାଏ ।

ଲୋକଟି—
(ଯେଉଁପରି କ୍ରୋଧରେ ଦାନ୍ତ ଘୋଡ଼ିବେଇ)
ସାହେବାଣୀ ଷ୍ଟେସନ ଯାଇଛନ୍ତି—
କାହିଁକି ନା ଆଜି ତାଙ୍କର 'ପାଇକା ମିଶିପ'
ଦୂର—ଅନେକ ଦୂର, ଯେଉଁଠି ଅବିରତ ଗୁଳି ବର୍ଷାହୁଏ;
ଯେଉଁଠି ବାଦଲ ବମ୍‌ରେ କାଟିହୋଇ ଧଣେ
ଆଉ ରକ୍ତର ସୁଅ ଛୁଟେ,
ଯେଉଁଠାରେ ମୃତ୍ୟୁର ଫୁତ୍କାର
ଅଫିସର ଆଉ ସାଧାରଣ ସିପାହି ଭିତରେ
ଫରକ ଦେଖେ ନାହିଁ
ଯେଉଁଠି ପ୍ରଳୟ ଲୋଟିଯାଏ
ସେଇମାନଙ୍କ ଲାଗି, ଯେଉଁମାନଙ୍କ ପାଇଁ
କେହି ନାହିଁ କାନ୍ଦିବାକୁ ।
ଆଉ ସେମାନଙ୍କ ପାଇଁ
ଯେଉଁମାନଙ୍କ ଲାଗି ପଡ଼ୋଶୀମାନଙ୍କର ପତ୍ନୀମାନେ
ନିଜର ସ୍ୱାମୀ ଓ ପିଲାପିଲିଙ୍କୁ ଛାଡ଼ି
ଏଇମାନଙ୍କର ବାଟ ଚାହିଁ ବସି ରହିଥାନ୍ତି ···

ଲୋକଟି—
(ହଠାତ୍ ରୁଦ୍ଧ କଣ୍ଠରେ)
କେବେ ହେଲାଣି ଏମିତି ?
କାଳାବଧି ହୋଇଅଛି କେବେ ···
ଯେ, କେହି ପଇଁତିରିଶ ବର୍ଷର ପତ୍ନୀ
ଆଉ ଥରେ ପ୍ରେମ କରି ବସିବ ?

କେବେ ହେଲଣି ଏମିତ ?
କେହ ଜନଜନୋଟି ସନ୍ତାନର ମାତା
କେଉଁ ପରପୁରୁଷ ଲାଗି ପାଗଲ ହୋଇ ଯାଇଚ୍ଛ—
କେହ ଶୁଣିଚ୍ଛ କେବେ···
ଯେ ପନ୍ଦର ବର୍ଷଧର ଗୋଟିଏ ଗ୍ଲାଡ ତଳେ ରହି
ଜଣେ ଖୁଣ୍ଟ ଓପାଡ଼ି ପଳେଇଯିବା ।

ଲୋକଟି—
(ଆଖିରେ ଲୁହ ଭରି)
ରାଜା !
ତମେ ମୋତେ ସେତେବେଳେ ଗ୍ଲୁଡ଼ିଲନି
ଯେତେବେଳେ ଆମ ପାଖରେ ଖାଲି ବେଲକର ରହୁଥିଲା ଖାଇବାକୁ
ଆଉ ଗପରେ-ଗପରେ ଆର ବେଲଟି ତମେ ବିତାଇ ଦେଉଥିଲ···
ଯେତେବେଳେ ତମର ଖେକ-ଉପାସୀ ଗ୍ଲୁତରେ ଦୁଧ ଭରୁନଥିଲା
ଆଉ ଖାଲି ନାନାବାୟା ଗୀତ ଗାଇ
ପିଲାକୁ ଭୁଲଉଥିଲ ତମେ !
ନାନାବାୟା ଗୀତରେ, ତମେ ପିଲାର ବାପ ରଜାଟିର
ଗୁଣ ଗାଇ ଗାଇ ଥକୁ ନଥିଲ ବି ।
ଆଉ ତମ ଆଖିରୁ ରହି ରହି ବହିଆସୁଥିବା ଲୁହଧାରକୁ
ହସି-ହସି ଲୁଚାଇ ନେଉଥିଲ···
ଏବଂ ବାରମ୍ବାର ଆପଣା ଓଠରେ
ସ୍ମିତ ରେଖା ଖେଳାଇ ନେଉଥିଲ ।
ମୋ କପାଳରେ ଚନ୍ତାହେତୁ ଭ୍ରୁ କୁଞ୍ଚିତ ରେଖା ଦେଖି
ତମେ ସହି ପାରୁନଥିଲ ।
ରାଜା !
ତମେ ସେତେବେଳେ ବି ଗ୍ଲୁଡ଼ିଯାଇନ ମୋତେ
ଯେତେବେଳେ ମୁଁ ବିଛଣାରେ ଗଡ଼ପଡ଼ି
କାଠ ପାଲଟି ଯାଇଥିଲ,
ଡାକ୍ତର ତମକୁ କଚ୍ଛ କହନ୍ତି,
ମୋତେ କଚ୍ଛ କହନ୍ତି,
ସେତେବେଳେ କେହ ମୋ ପାଖକୁ ବି ଆସୁନଥିଲେ···

ମୁଁ ମଇଳା କରିଥିବା ଘୃଦର
ଯେତେଁ ଧୋଇଲେ ବି ତମେ ଥକୁ ନଥିଲ
ମୋର ଓଦା କପଡ଼ା
ବଦଳାଇ ଦେଲାବେଳେ ଟିକିଏ ବି ଗ୍ଲାନି ଆସୁନଥିଲା ତମର,
ମୋର ଶୁଖିଲା ଓଠକୁ ତମେ ଆଦରରେ ଚୁମିନେଲାବେଳେ,
ମୋର ଅସ୍ଥି-ପଂଜର-ସାର ଦେହକୁ ଆଉଁସି ଦେଲାବେଳେ,
କାଠି ପରି ମୋର ଶୁଖିଲା ବାହୁକୁ
ବାରମ୍ବାର ଉଠେଇ ଆଖିରେ ଛୁଇଁନେଲାବେଳେ ।
ରାତି ରାତି ଉଜାଗର ରହି ବି ତମେ ମୋର ସେବା କରିଛ ।
ଈଶ୍ୱରଙ୍କ ପାଖରେ ପ୍ରାର୍ଥନା କରି କରି ମୋର ସ୍ୱାସ୍ଥ୍ୟ ମାଗିଛ ।
ରାଜୀ !
ତମେ ସେତେବେଳେ ବି ମୋତେ ଗ୍ରହଣ କରିନ
ଯେତେବେଳେ ମୁଁ ରାତିଅଧରେ ଘରକୁ ଫେରୁଥିଲି—
ଯେତେବେଳେ ମୋର ସର୍ବାଙ୍ଗରୁ ଦୁର୍ଗନ୍ଧ ଉଠୁଥିଲା—
ସେଇ ଗନ୍ଧ ଯାହା ଏକ ମଣିଷ ଦେହରୁ ଉଠେ,
ଯେତେବେଳେ ସେ ଆପଣା ପତ୍ନୀର
ଅଧିକାରକୁ ହତ୍ୟାକରି ଘରକୁ ଫେରେ ।
ସେତେବେଳେ ମୋ ଓଠରୁ ଲିଭି ବି ନଥାଏ
କେଉଁ ପରସ୍ତ୍ରୀର ଚୁମାଦାଗ ।
ଯେତେବେଳେ ମୋ ଆଖିରେ
ଉଚ୍ଛୃଙ୍ଖଳତା ଥାଏ, ପ୍ରତାରଣା ଆଉ
ମାୟା ଥାଏ…ମିଛ ଥାଏ,
ଆଉ ତମେ ଝରକା ପାଖରେ ଠିଆ ହୋଇ ରହି
ମୋର ବାଟ ଚାହିଁଥାଅ, ଫେରିବା ବାଟ ଚାହିଁ ବସିଥାଅ
ମଦନିଶାରେ ଟଳମଳ ମୋର ପାଦ
ମୋତେ ସାହା ଦେଇ ଉଠାଇ ଆଣୁଥିଲ ଟ୍ୟାକ୍ସିରୁ ।
(ଆଖିରୁ ବୁନ୍ଦା ବୁନ୍ଦା ଲୁହ ଝରିବା)

ଲେଖକଟି—
ଆଉ ବର୍ତ୍ତମାନ, ଯେତେବେଳେ ମୁଁ ବହୁ କୋଠାର ମାଲିକ
ଛଅ-ତଅଟି ସନ୍ତାନର ପିତା

ଆଉ ମୁଁ ଯେତେବେଳେ ପିଆଳ ପ୍ରେପା ପର୍ଯ୍ୟନ୍ତ ଛୁଉନ—
ତମେ ମୋତେ ଗ୍ରୁଡ଼ଗଲ !
ମୁଁ ଏଇନେ ମଦ ଖାଉନ,
ଯେମିତ ତା'ର ନଶାରେ
ଦୁଃଖ ଭୁଲଯିବ ।
ଯେତେବେଳେ ମୁଁ କୌଣସି ପରସ୍ତ୍ରୀ ମୁହଁକୁ
ଆଖିଟେକ ଗ୍ରହୁଁ ନାହିଁ ବ···
ଯେ ଭାବବ ତମର ଢଙ୍ଗରେ
ତମର ପ୍ରତଶୋଧ ନେଉଛୁ ।
ଏଇନେ, ଯେତେବେଳେ ତମେ ଘରେ ରହୁନ,
ଆଉ ଫୁଲ-କୋମଳ ପିଲାଏ
ମୋ ପାଦର ବ୍ୟସ୍ତତାକୁ
ଥକାଲା ଥକାଲା ଆଖିରେ ଗ୍ରହିଁ ରହନ୍ତ ।
ତମେ ସେତେବେଳେ ଯାଇଛ
ଯେତେବେଳେ ଯାତ୍ରୀ ପାଖରେ ଗ୍ରଲବାର ଶକ୍ତ ବ ରହେନ ।
ଯେତେବେଳେ ଥକାମାର ବାଟୋଇ ବସିଯାଏ ।
ଯେତେବେଳେ ମନହୁଏ କା'ର ଗୀତଟିଏ ଶୁଣିବାକୁ
ଆଉ ପତା ଉପରେ ପତା ପଡ଼ି ଆପେ ମଉଳିଯାଏ ।
ତମେ ସେତେବେଳେ ଗଲ
ଯେତେବେଳେ ଅନେକ ସମୟରେ
ଲକ୍ଷ୍ୟସ୍ଥଳ ଆପେ ଗ୍ରଲି ନଜେ ପହଞ୍ଚଯାଏ
ବାଟୋଇ ପାଖରେ ।
ତମେ ଏଇନେ ଗଲ···
ଯେତେବେଳେ ଝିଅ ଆମର
ଠିକ୍ ତମର ପରି ଫୁଟିଉଠୁଛୁ
ପୁଅପୁଅ ତମର ପରି
ଠିକ୍ ତମପରି ହସୁଛୁ
ତମର ପରି ଗ୍ରଲୁଛୁ ।
ତମେ ଏବେ ଗଲ,
ଯେତେବେଳେ ତାର ଲୋଡ଼ା ମାର୍ଗଦର୍ଶନ,

ରାସ୍ତାର, ଯା' ଉପରେ ସେ ଚାଲିବ ।
ଏବେ ତମେ ଗଲ
ଯେତେବେଳେ ରାତସାରା
ଚାଏଁ ଚାଏଁ ଆଖି ମୋର ଖୋଲିଯାଏ ।
ଯେତେବେଳେ ଏଇ ଘରର କାନ୍ଥ ବି
ତମର ବାଟ ଚାହିଁ ବସିଛି ।
ଯେତେବେଳେ ପ୍ରତି ଥରକରେ ଥରେ
ଟେଲିଫୋନ୍‌ରେ ତମର ନାଆଁରେ ଡାକରା ଶୁଭୁଛି,
ଯେତେବେଳେ କଡ଼ ଫୁଟୁଛି
କୌଣସି କୋମଳ ସ୍ପର୍ଶ ଲାଗି ।
ତୁମେ ଏବେ ଚାଲିଗଲ
ଯେତେବେଳେ ଫୁଲ ଫୁଟିଲାଣି ସେ ଗଛରେ
ଯାହା ତମେ ଆପଣା ହାତରେ ଲଗାଇଥିଲ ।
ଲୋକଟି—
(ନିଜକୁ ସମ୍ଭାଳି)
ଆଜି ଦେଢ଼ବର୍ଷ ହେଲା
ଏଇ କୋଠରୀର ଝରକା ସେମିତି ବନ୍ଦ ଅଛି ।
ଏଇଠି ଏବେ ହସ ଶୁଭୁନାହିଁ ।
ସତ୍ୟ, ଧର୍ମ, ନ୍ୟାୟର
ଚର୍ଚ୍ଚା ନାହିଁ ଏଇଠି ।
ଆଜି ଦେଢ଼ ବର୍ଷ ହେଲା—
ମୋତେ ଏମିତି ଲାଗୁଛି ଯେମିତି ମୁଁ
କୌଣସି ପଠାରେ ଘୁରୁଛି ।
ବୃକ୍ଷ ଅଛି ଶୁଖିଲା
ରୌଦ୍ର ଅଛି ତାପହୀନ
ଶୀତଳ, ଶୀତଳ, ଶୀତଳତା ।
ଥଣ୍ଡାରେ ଜମିଯାଇଥିବା ଅଚଳା ରାସ୍ତାର ବରଫ
ଗୋରୁଖୁରାରେ ଦଳା ହୋଇଥିବା
ପୋଖରୀ ଧଡ଼ିର କାଦୁଅର ଶୀତଳତା
ଭଙ୍ଗା ଚାଳଘରେ ଆଉ ତାଜା ବରଫ ।
ଫୁଲ ଯେମିତି ଗନ୍ଧହୀନ

ସ୍ପର୍ଶ ଯେପରି ପ୍ରାଣହୀନ, ଶକ୍ତିହୀନ
ସ୍ମୃତି···ମଳିନ, ନିରର୍ଥକ, ରସହୀନ ।
ଲେକିନ୍—
(ଯେପରି ସ୍ମୃତି-ମ୍ଳାନ)
ବସନ୍ତ ଆସିଥିଲା—
ଯେତେବେଳେ ଗତ ବର୍ଷ
ସେଇ ମିଲିଟାରୀ କେପ୍‌ଟେନ୍
ଆମ ପଡ଼ୋଶୀ ହୋଇ ଆସି
ରହିଥିଲା ।
ଏଇ ଝରକା ପାଖରେ ଠିଆ ହୋଇ
ମୁଁ ଆଉ ମୋର ପିଲାଙ୍କର ମାଆ
ଅନେକ ବେଳ ଧରି ଦେଖିଥିଲୁ ।
ଝିପିଝିପି ବର୍ଷା ହେଉଥିଲା ।
କାଦୁଅ, କାଦୁଅ ଭରିଥିଲା ସବୁଠିଁ ।
ଜାହାଜ ଭଳି ଏକ ବଡ଼ ବସ୍
ପୂରାପୂରି ଲଦି ହୋଇ ଆସିଥିଲା ।
ଆଉ ମୋଟା ବଡ଼ ଜୋତାବାଲା ମିଲିଟାରୀ ଅର୍ଦ୍ଦଲି
ତା' ଭିତରୁ ବଡ଼ ବଡ଼ ସିନ୍ଦୁକ ଓ ଟ୍ରଙ୍କ
ଚଞ୍ଚଳ ଚଞ୍ଚଳ ଉଠେଇ ବସିଲେ—
ଏମିତି, ଯେମିତି କେହି ଉଲ କମ୍ବା ରେଶମର
ଶେଯ ଧରି ନେଇଯାଉଛି ଭିତରକୁ ।
କଥା-କଥାକେ ଅର୍ଦ୍ଦଲି
କେପ୍‌ଟେନ୍‌ଙ୍କୁ ସଲାମ କରୁଥିଲେ
ଆଉ ନିହାତି ସହଜ ଭଙ୍ଗୀରେ
ମୁହଁରେ ସିଗାର୍ ଧରି ସେ ବାରଣ୍ଡାରେ ଟହଲ ମାରୁଥିଲେ ।
ପବନ ବଢ଼ିଗଲା, ଶୀତଳତର ହେଲା ।
ବାରଂବାର ମୋର ପତ୍ନୀଙ୍କର ବାହୁ···
ଥରିଉଠୁଥିଲା—
ଆପଣାର କ୍ଷୀଣ ଉଷ୍ଣତାକୁ
ବାରଂବାର ସେ ଟାଣିନେଉଥିଲେ

ଆଉ ତାହା ଖସିଯାଉଥିଲା ମୁଣ୍ଡରୁ ।
ମୁଁ ତାପରେ ଝରକା ବନ୍ଦ କରିଦେଲି ।
ମୁଁ ଝରକା ବନ୍ଦ କରିନେଲି
ଆଉ ମୋତେ ମୋର ବେଡ଼ରୁମ୍
ଏମିତି ମନେହେଲା—
ଯେମିତି ସିଗାର୍‌ର ହାଲୁକା ଗନ୍ଧ ଭରିଯାଇଛି···ଆଚ୍ଛନ୍ନ କରିଛି ।
ସେଦିନ ସଂଧ୍ୟାରେ ଡ୍ରେସିଂ ଟେବୁଲ ସାମନାରେ ଠିଆହୋଇଥିବା
ତାକୁ, ମୁଁ ଯେତେବେଳେ ପଛରୁ ଆସି
ଧୀରେ ଧୀରେ ଚୁମିନେଲି,
ଅନୁଭବ କଲି
ସିଗାର୍‌ର ଗନ୍ଧ
ଯେମିତି ତା ଉପରେ ଜମିଯାଇଛି ।
ମୋର ମୁହଁ ସିଗାର୍‌ର ସ୍ୱାଦରେ
ଭରିଗଲା, ଭରିଗଲା ।
ସେଇଦିନ, ତା'ପର ଦିନ, ତା'ପରଦିନ ବି···
ତା'ପର ପ୍ରତିଟି ଦିନ
ମୁଁ ସିଗାର୍‌ର ଭୁରୁଗନ୍ଧ ପାଉଥିଲି···
ଗ୍ଲାସରେ, ତକିଆରେ, ବନ୍ଧରେ···
ପାଣିରେ···ପ୍ଲେଟ୍‌ରେ
ତା'ର କେଶ, ତା'ର ସ୍ନିଗ୍ଧ ହସରେ
ତା'ର ଚପଳ ଶବ୍ଦଗୁଡ଼ିକରେ
ମୁଁ ପାଇଲି ସିଗାର୍‌ର ଭୁରୁଭୁରୁ ଗନ୍ଧ···
ଆପଣାର ଫୁଲଦାନରେ ଲଗିଥିବା ଫୁଲରୁବି ।
ମୁଁ ଝରକା ବନ୍ଦକରି,
କବାଟ ଆଉଜା ଦେଇ ବସେ
ହେଲେ ସିଗାର୍‌ର ସେଇ ପାଗଳ ଗନ୍ଧ
ଜବରଦସ୍ତି ଯେମିତି ପଶିଆସୁଥିଲା ମୋର କୋଠରୀକୁ,
ମୋ ଘରକୁ
ଯେତେ ଧୂପକାଠି ଆଣି
ଜଳାଇଲେ ବି ମନେହେଉଥିଲା—

ନିଷ୍ଫଳ ବୃଥା, ନିରର୍ଥକ ।
ଆଉ, ଆଉଥରେ ମୁଁ କା'ର ମୁହଁକୁ
ଅନେଇ ରହିଗଲି—
ସେ କହିଲା—
ସିଗାରେଟ ଖାଇବା କି କଥା—
ଜିଏ ଖାଇବ ଯଦି ସିଗାର୍ ଖାଉ ।
ଆଉ ମୁଁ ଧରିଥିବା ସିଗାରେଟ୍
କେଜାଣି କେତେବେଳେ
ହାତରୁ ଖସି ତଳେ ପଡ଼ିଗଲା ।
ଆମକୁ ସେତେବେଳେ ଜଣାଗଲା
ଯେତେବେଳେ ତଳେ ଗାଲିଚା ଜଳି ବସିଲା ।
ମୋର ତନୁ ମନରେ ନିଆଁ ଲାଗିଗଲା—
ସେ କହିଲା ବେଳେ, ବାରଂବାର
ମୁଁ ଯଉତୁକ ଆଣିଥିବା ଗାଲିଚା
ପୋଡ଼ି ପାଉଁଶ ହୋଇଗଲା ।
ତାପରେ ତାକୁ, ପଡ଼ୋଶୀ ଘରେ
ଅଧରାତି ଯାଏଁ
ମଦଖାଇ ଲୋକଙ୍କ ହସିବାଟା
ଭଲ ଲାଗି ବସିଲା ।
ମଦୋନ୍ମତ୍ତ, ଟଳମଳ
ପ୍ରଗଲ୍‌ଭ ଲୋକମାନଙ୍କୁ ସେ ବି ଅଧରାତି ଯାଏଁ
ଝରକା ପାଖରେ ଠିଆ ହୋଇ ଅନେଇ ରହିଲା ।
ଆଉ ତା'ପରେ ସେ ଅଲସେଇ ଯାଉଥିଲା ଭଳି ରହିଲା—
ହଜିଲା ହଜେଇଲା ଭଳି ମନେ ହେଲା···
ମନେ ହେଲା ଯେମିତି କିଛି ଅଡ଼ୁଆ ହୋଇ ଯାଇଛି···
ବିରକ୍ତ, ବେଖାପ !
ତା ଆଖିରେ ଏକ ଆତଙ୍କ,
ଏକ ଶଂକା, କପର ଏକ ଭୟ ଥିଲା
ଯେମିତି ଏକ ଗମ୍ଭୀର ଖାଇ ଡେଇଁ
ପାରିକରିଗଲା ବେଳେ ଥାଏ !

ସେ ଝରକା ପାଖରେ ଠିଆ ହୁଏ ତ ଠିଆ ହୋଇ ରହିଥାଏ ।
ଶାଢ଼ି ବାହାର କରେ···ପିନ୍ଧେ
ପୁଣି ଖୋଲି ରଖି ଦିଏ ।
ଅନେକ ବେଳ ଯାଏଁ ଦର୍ପଣ ସାମନାରେ ବସି
ଅପଲକ ଚାହିଁରହେ ।
ଆଉ ଦିନେ ରାତିରେ
ମୁଁ ଯେତେବେଳେ କ୍ଳାନ୍ତ, ଅବଶ ହୋଇ ଫେରିଲି
ଆମର ଶୋଇବା ଘରେ
ସେ ମଳିନ, ମୌନ, ସନ୍ତ୍ର
ଚେୟରପରି ଏକୁଟିଆ ଠିଆ ହୋଇଥିଲା
ଯେମିତି ପର କ୍ଷେତରେ ଗାଈଟିଏ ଚରୁଥାଏ,
ଖେତ ମାଲିକକୁ ଅନାଉଥାଏ—
ସେ ମୋତେ ଦେଖିଲା, ଆଉ ପଲଙ୍କ ଉପରେ ଢଳିଗଲା ।
ତା'ର ଲୁହ ଅବିରତ ବହିବାକୁ ଲାଗିଲା ।
କାନ୍ଦୁଥାଏ । କେବଳ କାନ୍ଦୁଥାଏ ସେ ।
ସେ କାନ୍ଦି କାନ୍ଦି ରୁଦ୍ଧଶ୍ୱାସ ହୋଇ ଯାଉଥାଏ—
ମୁଁ ତାକୁ କଣ ପଚାରିଥାନ୍ତି ?
ସେ ମୋତେ କଣ କହନ୍ତା ବା···?
ବିବଶ, ଭାଷାହୀନ,
ମୁଁ ତା ପାଖରେ ବସିଗଲି ।
ମୁଁ କିଛି ଅଭିଯୋଗ କଲି ନାହିଁ
ମୁଁ କିଛି ଭଲମଂଦ ଶୁଣେଇଲିନି ତାକୁ ।
ଆଖି ତା'ର ଯେମିତି ବାରଂବାର କହୁଥିଲେ—
'ତମେ ମୋତେ ତିରସ୍କାର କାହିଁକି କରୁନ,
ଗାଳି ଦେଉନ କାହିଁକି; କାହିଁକି ବିରକ୍ତ ହେଉନ ମୋ ଉପରେ ।'
ଆଉ ମୁଁ ଦେଖୁଥିଲି ନୀରବରେ···
ଚୁପ୍‌ଚାପ୍, ସ୍ଥିର
ସେ ମାଛପରି ଛଟକୁଥିଲା···
ସାରାରାତି ଚିତ୍କାର୍ କରୁଥିଲା, ପ୍ରଳାପ କରୁଥିଲା—
ସାରାରାତି

ମୁଁ ଅସହାୟ ପରି ତାକୁ ଦେଖି ରହିଥିଲି ।
ସେଇରାତି ଓ ଆଜିର ଦିନ—
ମୁଁ ତା'ପରେ ଆଉ କେବେ ବି
ମୋ ଆଖିରେ ଆଖି ମିଳେଇ ତାକୁ ଦେଖିନାହିଁ—
ଗୋଟିଏ ଘରେ ରହି,
ଗୋଟିଏ ଛାତ ତଳେ ବସବାସ କରି
ଆମେ ଯେପରି ପରସ୍ପରଠୁ କୋଶ-କୋଶ ଦୂରରେ ଥିଲୁ ।
ଆଉ, ମୁଁ ତା'ପରେ କଣ କଣ ଦେଖିନାହିଁ ?
ମୋ ଭିତରେ ଥିବା ପିତା
କଣ ସହି ନାହିଁ ?
ମୋ ଭିତରର ମଣିଷଟି
କେମିତି ନିଜେ ନିଜର ହତ୍ୟାକଲା ନାହିଁ
ତା' ନଖ ପାଲିଶ୍‌ର
ରଙ୍ଗ ବଦଳିଗଲା ।
ତା' ଓଠର ଲାଲିମାର ଆଭା···
ବଦଳିଗଲା ।
ସାରାଜୀବନ ଯତନରେ ସଜେଇ ବଢ଼େଇଥିବା
ବାଳ ସେ କଟେଇନେଲା ।
ସେଦିନ ଯେତେବେଳେ ମୁଁ
ପ୍ରଥମ କରି ତା'ର କଟାବାଳ ଦେଖିଲି
ସାରାରାତି ମୁଁ ଶୋଇ ପାରିଲି ନାହିଁ ।
ଜଣେ ଜଣକର ବଗିଚ୍ଚ ଉଜାଡ଼ି ନେବ
ନେଇ ଯିବ, ଆଉ ସେ ଅଭିଯୋଗ ବି କରିବ ନାହିଁ ।
ଆଉ କୌଣସି ଲତାକୁ ମନେ ପକେଇ
କାନ୍ଦିବସିବ ।
ଶେଷରେ ମୁଁ ନିଜେ ନିଜକୁ ବୁଝେଇ ନେଲି ।
ଆଉ ଯେତେବେଳେ ବୁଝେଇଲି—
ସେତେବେଳେ କେତେ ଲୋକଙ୍କ ଲାଗି
ମୁଁ ମୋ ମନକୁ ବୁଝେଇନାହିଁ ?
କେତେବେଳେ ତକ୍ତପୋଷ ଉପରେ ବସି

ଯଦି ଛୁରିଟିଏ ମୋ ହାତରେ ଥାଏ
ତା'ହେଲେ ମୋର ଆଙ୍ଗୁଠି ଗୁଡ଼ିକ
ଶିହରି ଉଠୁଥିଲେ ।
ଆଜି ମୋର ଶିରା ପ୍ରଶିରା ଉତ୍ତପ୍ତ ହୋଇ ଉଠୁଥିଲେ ;
କେତେବେଳେ ତ କେତେବେଳେ ଥଣ୍ଡା ।
ଓଠ ମୋର ଶୋଣିତାକ୍ତ ହୋଇ ରହିଯାଉଥିଲେ—
କେବେକେବେ ଅଂଧକାର ରାତ୍ରିରେ—
ମୁଁ ଏଣେତେଣେ ମୋର କୋଠରିରେ
ଏକାକୀ ପଦଚାରଣ କଲାବେଳେ—
ମୋର ହାତ ପ୍ୟାକେଟରେ ଥିବା
ସାତୋଟି ଗୁଳିବାଲା ରିଭଲ୍‌ଭରକୁ
ଆଉଁସୁଥିଲା ।
ସ୍ୱପ୍ନରେ ଅନେକ ଥର
ମୁଁ ମୋର ହାତକୁ ରକ୍ତ ରଂଜିତ ଦେଖିଛି ।
ଅନେକ ଥର ମୁଁ ସ୍ତ୍ରୀର ଦୁର୍ବଳତା ସଂବଧରେ ବୟାନ ଦେଇଛି ।
ଅନେକବାର ମୁଁ ଫାଶୀକାଠରେ ଝୁଲିଯାଇଛି, ବାରଂବାର ।
ବଂଦ କୋଠରିର କାନ୍ଥରେ ମୁଣ୍ଡପିଟି
ଅନେକବାର ମୁଁ କାନ୍ଦିଛି ।
ଆଖି ବୁଲେଇ···
ମୁଁ ନିଷ୍ଫଳ
ଖୋଜିବୁଲିଛି ଆକାଶର ଶୂନ୍ୟରେ ନ୍ୟାୟକୁ ।
ଉଚ୍ଚ ଶିଖରକୁ ଚଢ଼ି ମୁଁ ଅନେକବାର
ଭାବିଛି—ପାଦ ମୋର ଖସି ଯାଆନ୍ତା କି ?
ଅନେକଥର ମୁଁ କୂଅକୁ ଦେଖିଛି···
ମୋର ମୁଣ୍ଡ ବୁଲେଇ ଦିଅନ୍ତା କି ;
ସାଗରର ତରଙ୍ଗ ମୋତେ ବହୁବାର ଆଣି
ଫିଙ୍ଗି ଦେଇଛି ତଟରେ ।
ହସି ହସି ମୋତେ କୂଳରେ ଫିଙ୍ଗି ସେ ତରଙ୍ଗ
ଫେରି ଯାଆନ୍ତି ।
ମୋର ପିଲାଏ

ଅନେକବାର ଆସି ମୋ ଗୃହରେ ଜଡ଼େଇଯାଇ
କେବଳମାତ୍ର ପିଲାର ଉଷ୍ମତା ପାଇ
ବାରଂବାରଂ ତାଙ୍କର ମା'ଆଙ୍କୁ
ମୋର ଆଖିରେ ଖୋଜନ୍ତି ।
ମୋର ଚାକରମାନେ ଧାଇଁ ଦଉଡ଼ି କରି ମୋ କାମ କରନ୍ତି
ଆଉ ମୋତେ ତାଙ୍କର ପ୍ରତ୍ୟେକ ଘଣ୍ଟା
ମନେ ହୁଏ ଗୁଳି ପରି, ଯାହା ମୋ ଦେହରେ ବାଜେ ।
ପଡ଼ୋଶୀମାନେ କଥା ଛଳରେ
ମୋ ସ୍ତ୍ରୀ କଥା ପକେଇଲେ
ସେତେବେଳେ ବି ମୋତେ ଖରାପ ଲାଗୁଥିଲା—
କ୍ଲବ୍‌ରେ, ରାସ୍ତାରେ, ଅଫିସ୍‌ରେ—
ଲୋକେ କେଜାଣି କେତେ କଥା ହୁଅନ୍ତି !
ମୋତେ ତାଙ୍କର ପ୍ରତିଟି ଅଶୁଣା କଥା,
ଲକ୍ଷ ବାର ଶୁଣିଥିଲା ପରି ଲାଗେ ।
ଅନେକଥର ଲୋକଙ୍କୁ ଠକେ
ମୁଁ ନିଜେ ନିଜକୁ
ଠକି ବସେଁ ।
ମୋର ନିଜ ଭାବନା ପ୍ରତି ସନ୍ଦେହ ଜାଗେ—
ମନେହୁଏ ଯେମିତି ମୁଁ ଯାହା ଶୁଣୁଛି ତାହା ଭୁଲ
ହୁଏତ ତାହା ଠିକ୍
ମୁଁ ଯାହା ଶୁଣିବାକୁ ଚାହୁଁଛି ।
(ଦୂର ଷ୍ଟେସନରୁ ଇଂଜନ୍ ହୁଇସିଲର ସ୍ୱର । ଗୋଟିଏ ପରେ ଆଉ ସ୍ୱର)

**ଲୋକଟି**

ଷ୍ଟେସନରେ ଇଂଜନ୍
ହୁଇସିଲ ମାରୁଛି
ସିବ ସିବ ହେଉଛି ।
କୌଣସି ପ୍ରାର୍ଥନା ତାକୁ ଅଟକାଇ ପାରିବ ନାହିଁ—
କୌଣସି ଅନୁନୟ ତାକୁ ରୋକି ନେଇ ପାରିବ ନାହିଁ ।
ସଙ୍ଗ ଛାଡ଼ିଯାଉଛି, କୁସଙ୍ଗ ବି ଭୁଟି ଯାଉଛି···
ଭିଏ ଟାଣି ନେବ

ଭୁଣ୍ଡେଇ ଦେବ
ଆଉ କେତେ ଆଜ ଅଲଗା ହୋଇଯିବେ ।
(ଗାଡ଼ି ଚାଲିବାର ଶବ୍ଦ—ଲୋକଟି ହଠାତ୍ ହସି ଉଠେ । ହସୁଥାଏ ।)

**ଲୋକଟି**

ଚାଲିଗଲା,
ଗାଡ଼ି ଚାଲିଗଲା ।
କାନ୍ଦ କାନ୍ଦ, ଚିତ୍କାର କର
କା'ର ଆବେଗକୁ ଇଚ୍ଛାକୁ ଧୂଳିସାତ୍ କର ।
ଗାଡ଼ି ଚାଲିଗଲା ।
ଦୂର, ଅନେକ ଦୂର...
ଯୋଉଠୁ ବାର୍ତ୍ତା ଆସେ ଅସଂପୂର୍ଣ୍ଣ
ଖଣ୍ଡି ଆମେ ମିଛ ଭଗ୍ନ ।
ଯୋଉଠି ଗ୍ରନ୍ଥ ଯାଏଁ ଖୋଲି
ମଣିଷ ଭଲପାଇ ନାଏ ।
ହୃଦୟର ପ୍ରତିଟି କୋଣର ରହସ୍ୟକୁ
ବାରଂବାର ପଢ଼େ ... ଗୁଣି ଯାଏ ।
ତା'ପରେ ଯାଇଁ 'ପାସ' କରେ ।
ଯେଉଁଠି ପ୍ରତିଟି ମଣିଷର ମୂଲ୍ୟ
ମାରି ପାରିବାର ନକଡରେ ତଉଲା ଯାଏ —
ଏକାନ୍ତ...
ନହେଲେ ମରିବାର ନକଡରେ ।
ଆଉ ଯେତେବେଳେ ସିଏ,
ଯୋଉଥିପାଇଁ ସମସ୍ତଙ୍କୁ ଗୁଡ଼ାଇ
ଚାଲିଗଲା, ଅନେକ ଦୂର ।
ଏବେ ସିଏ କାନ୍ଦିବ ସାରାରାତି
ତାରା ଗଣିଗଣି
ଏବେ ସେ କୋଣରେ ଫାଟି ପଡ଼ିବ
ଦରଫୁଟା କଳିକୁ ଦେଖି
ଯାହା ଛିଣ୍ଡେଇ ଆଣି କେହି ଜଣେ ତାକୁ
ଉପହାର ଦେଉଥିଲା, ବଢ଼େଇ ଦେଉଥିଲା ।

ଏବେ ତାକୁ ଖାଁ-ଖାଁ ଲାଗିବ ତା'ର
ଶୂନ୍ୟ ପଡ଼ୋଶୀଘର—ଆଖପାଖ ।
ପଡ଼ୋଶୀଘର ଯାଇ ଅଗଣାରେ
ଚିରା କନା ବୁଣିହୋଇ ପଡ଼ିଛି—
ଚିରା କାଗଜ ଟୁକୁରା ଉଡ଼ୁଛି
କେତେବେଳେ ପବନ
ଝରକା ବନ୍ଦ କରିଦେଉଛି ତ
କେତେବେଳେ ଖୋଲି ଦେଉଛି ।
(ମୋଟର ଆସିଲା ପୁଣି, ବାହାରେ ଅଟକିଲା)

**ଲୋକଟି—**

ଆଜିତ କାର୍‌କୁ
ସେ ନିଜେ ଗେରେଜରେ ରଖିବାକୁ ଯାଉଛି ।
ଗାଡ଼ି ଗେରେଜ ବାହାରେ ରଖି
ସେ ତାଲା ଖୋଲୁଛି ..
ପୁଣି ବସିଲା ଗାଡ଼ିରେ ।
ଗେରେଜ ଭିତରକୁ ନେଇଗଲା ଗାଡ଼ିଟିକୁ ।
ଏଇନେ ଗେରେଜର ଭାରି ଦରଜା
ଆପଣାର ପୂରା ଶକ୍ତି ଲଗେଇ ବନ୍ଦ କରୁଛି ।
ଏଇନେ ଏ ପଟକୁ ଆସୁଛି ସେ
ଯେମିତି ଶୁଖି କାଠଟି ପରି ହୋଇଗଲାଣି—
ଯେମିତି ରକ୍ତର ବିନ୍ଦୁଏ ବି
ନାହିଁ ଦେହରେ ।
ଅସ୍ତବ୍ୟସ୍ତ ବାଳ,
ଭ୍ରସ୍ତ ଆଖି ।
ଶୂନ୍ୟ କପାଳ
ହଳଦୀପରି ଗାଲ
ଶୁଖା ଓଠ...
ଗଣିଗଣି ପାଦ ବଢ଼ଉଛି ଆଗକୁ
ତନ୍ଦ୍ରାଗ୍ରସ୍ତ
ଶୋକାତୁର

ଅଗେଲ ବାହୁ···
ଇଏତ ଆଉ ବଞ୍ଚିବ ନାହିଁ ।
(ନହାଠ ବବ୍ରତ ହୋଇ)
ଓଃ···ପଡ଼ିଗଲା ?
ବଞ୍ଚିଗଲା ।
ପଥର ଝୁଣ୍ଟି
କେମିତ ପୁଗ ଶଙ୍କି ଯାଇଥିଲା—
ବଞ୍ଚିବା ମୁସ୍କିଲ ତା'ର
ବଞ୍ଚିବ ନାହିଁ ବ ।
ମୋର ପିଲାଙ୍କର ମା' ମରିଯିବ ।
ମରିଯିବ ?
ରାଜା ମରିଯିବ ?
ସେ ସତେ ବରହର ଆଘାତରେ ମରିଯିବ !
ରାଜା, ତୁ ଭଲ ପାଇଛୁ—
ତାହେଲେ ସର୍ବସ୍ୱ ସମର୍ପିଦେଲୁ କାହିଁକ ?
ପ୍ରଣୟୀ ତୋ'ର ଗୁଲିଗଲା ।
ଏତେ ଭଲ ପାଉଥିଲୁ ତୁ ତାକୁ ?
ଆଉ ତୁ ବଞ୍ଚିବୁ ନାହିଁ ?
ତୁ ମରିଯିବୁ ରାଜା !
ଝକୁଚତ ହୋଇ, କାନ୍ଦି କାନ୍ଦି, ଛଟପଟ ହୋଇ ?
ନା ! ନା !! ନା !!!
ତୁ ସାଥି ଗୃହିଁ···
ତୋ'ର ସମଦୁଃଖୀ ଲୋଡ଼ା···
ତୋ'ର ସହଚର ଲୋଡ଼ା ।
ମୁଁ ତୋତେ ମରବାକୁ ଦେବନ—
ଏ ଘର ତୋ ଲାଗି ଉନ୍ମୁକ୍ତ—
ଏ ବାହୁ ତୋ' ଲାଗି ପ୍ରସାରିତ···
ଏ ଫୁଲ ତୋ' ଲାଗି ପ୍ରସ୍ଫୁଟିତ···
(ଫୁଲ ଦାନରୁ ଫୁଲ ଉଠେଇ)
ତୁ ଫେରିଆ ପ୍ରାଣ ମୋର !

ଫେରିଆ !
ପନ୍ଦର ବର୍ଷ ତୋ' ସାଙ୍ଗରେ
ମୁଁ ଗୋଟିଏ ଗ୍ଲାନିଭରେ ରହିଛି—
ପନ୍ଦର ବର୍ଷର ଏଇ ସାହଚର୍ଯ୍ୟ !
ମୋ ବିନା କିଏ ଅଛି ତୋ'ର ସାଥୀ,
ଆଉ କିଏ ?
ମୋ ବିନା ସମଦୁଃଖୀ
କିଏ ହେବ ତୋ'ର, ତୋ ଦୁଃଖରେ ।
ମୋ ବିନା ତୋ'ର ମନକଥା,
କିଏ ବୁଝିବ ଆଉ !
(ସିଡ଼ିରେ ସ୍ୱୀଟିର ପାଦଶବ୍ଦ)
ତୁ ଆସୁଛୁ,
ଆ,
ଉପରକୁ ଆ
ଆ,
ଚଢ଼ିଆ ।
(ସିଡ଼ିରେ ପାଦଶବ୍ଦ ଶୁଭୁଛି—ଅନବରତ)
ସ୍ୱୀଟୀ, ତୁ ଯେପରି ତୋ ଦେହର
ସବୁ ବାତାୟନ ବନ୍ଦ କରି ଦେଇଛୁ ।
ଠିକ୍ ଅଛି ।
ମୁଁ ତ ଭଗ୍ନାବଶେଷରେ ବି ଜ୍ୟୋତି ଜଳାଇ ପାରିବି—
ପଦ୍ମପତ୍ର ଉପରେ ପଡ଼ିଥିବା
ବିନ୍ଦୁଏ କାଦୁଅ !
ମୁଁ ତୋତେ ଅନେକ ପାଣିରେ ଧୋଇ ଦେବି···
ତୁ ଆ···ଆ···
ଚଢ଼ିଆ···
(ସିଡ଼ିରେ ନିରନ୍ତର ପାଦଶବ୍ଦ)

(ପଟାକ୍ଷେପ)



## ପାତ୍ର

ଏସ୍. ଏଲ୍. ଦ୍ବୁଜା : ଜିଲା ଡେପୁଟୀ କମିଶନର
ରାମ ପ୍ରସାଦ : ତାଙ୍କ ଅଫିସ୍‌ର ସୁପରିନ୍‌ଟେଣ୍ଡେଣ୍ଟ
ସୁଷମା ଦ୍ବୁଜା : ଏସ୍. ଏଲ୍. ଦ୍ବୁଜାଙ୍କ ପତ୍ନୀ
ଅମରନାଥ ପୁରୀ : ଅଫିସ୍‌ର ହେଡ଼୍ କ୍ଲର୍କ
ଚପରାଶି : ଏସ. ଏଲ୍. ଦ୍ବୁଜାଙ୍କ ଚପରାଶି

[ଗୋଟିଏ ଅଫିସ୍‌ର ସୁସଜ୍ଜିତ କୋଠରି । ପରଦା ଉଠିଲା ବେଳକୁ ଦେଖାଗଲା ଜିଲା ଡେପୁଟୀ କମିଶନର ଏସ୍: ଏଲ୍: ହୁଜା ଏବଂ ତାଙ୍କ ଅଫିସ୍‌ର ସୁପରିନ୍‌ଟେଣ୍ଡେଣ୍ଟ ବାବୁ ରାମ-ପ୍ରସାଦ ନିଜ ନିଜ ଭିତରେ କଥାବାର୍ତ୍ତା କରୁଛନ୍ତି । ହୁଜା 30-35 ବର୍ଷର, ଅନ୍ୟଉପରେ ବିଶ୍ୱାସ ରଖିବାବାଲା ଲୋକ ଏବଂ ଆବଶ୍ୟକତା ଅନୁସାରେ ସାହାଯ୍ୟ କରିବା ଲୋକ । ରାମ ପ୍ରସାଦଙ୍କୁ 50 ବର୍ଷ ପାଖାପାଖି । ତାଙ୍କ ମୁଣ୍ଡର ଅଧିକାଂଶ ବାଳ ଧଳା; କିନ୍ତୁ ତାଙ୍କ ଗୃହ-ଚଳଣରେ ଦୃଢ଼ତା ଓ ବିଶ୍ୱାସ ରହିଛି । ଦେଖିଲେ ମନେ ହେବ ଯେ, ଅଫିସ୍‌ର ଫାଇଲଗୁଡ଼ା ତାଙ୍କ ପାଇଁ ମୁଣ୍ଡ ବ୍ୟଥା କରିବା ଜିନିଷ ନୁହେଁ; ବରଂ ଅନ୍ୟକୁ ଶାସନ କରିବାର ବାହାନା । ଯଦି ତାଙ୍କର ପ୍ରଶଂସା କରିବାର ଅଛି, ତେବେ କୁହାଯାଇ ପାରିବ ଯେ ସେ ବଡ଼ ହୁସିଆର୍ ଲୋକ । ଆଉ ଯଦି ସମାଲୋଚନା କରିବାର ଅଛି, ତେବେ କୁହାଯାଇ ପାରିବ ଯେ ସେ ଚାଲାକ ଓ ସୁବିଧାବାଦୀ ।]

ହୁଜା : (ଟେବୁଲ ଉପରେ ଥୁଆ ହୋଇଥିବା କାଗଜକୁ ପଛକୁ ଠେଲି ଦେଇ ଏବଂ ଚଉକିକୁ ପିଠିରୁ ଅଲଗା କରି) ନା, ବାବୁ ରାମପ୍ରସାଦ, ମୁଁ ଏ ଅର୍ଡ଼ର ଉପରେ ଦସ୍ତଖତ କରି ପାରିବି ନାହିଁ ।

ରାମପ୍ରସାଦ : ସାର୍, ଆପଣଙ୍କୁ ଏଥିରେ ଏମିତି ସନ୍ଦେହ ହୋଇ ଯାଉଛି । କଥାଟା ସେମିତି କିଛି ନୁହେଁ ।

ହୁଜା : (ଟେବୁଲ ଉପରକୁ ପୁଣି ନଇଁପଡ଼ି) କଥା କିଛି ନୁହେଁ କେମିତି ? ପ୍ରମୋଶନର ଅଧିକାର ମନଚଲାର ଅଛି । ଆଉ ତମେ ରାମ ସ୍ୱରୂପର ନାମ ପ୍ରସ୍ତାବିତ କରୁଛ ।

ରାମପ୍ରସାଦ : ମୋ ବିଚାରରେ ରାମ ସ୍ୱରୂପ ଏହି ପ୍ରମୋଶନ ପାଇବା ପାଇଁ ଉପଯୁକ୍ତ ବ୍ୟକ୍ତି । ସେଇଥିପାଇଁ ମୁଁ ତାଙ୍କର ନାଁ ପେଶ୍ କରିଛି ।

ହୁଜା : କିନ୍ତୁ ମନଚନ୍ଦାର ଦୋଷ କ'ଣ ? ତମେ ତା' ନାଁ କାହିଁକି ତାଲିକାଭୁକ୍ତ କରିନାହିଁ ?

ରାମପ୍ରସାଦ : ଦୁଇ ବର୍ଷ ପରେ ତାଙ୍କୁ ପେନ୍‌ସନ ମିଳିଯିବ । ସେଇଥିପାଇଁ···

ହୁଜା : (ଟିକେ ବିରକ୍ତି ସହ) ଅଜବ କଥା ! ଦୁଇ ବର୍ଷ ପରେ ଯଦି ରାମସ୍ୱରୂପର ପାଳି ପଡ଼ିବ, ତେବେ ମନଚନ୍ଦାକୁ ଭଲା କାହିଁକି ଏ ପ୍ରମୋଶନ ଦିଆ ନ ଯିବ ।

ରାମପ୍ରସାଦ : ମୋ ମତାନୁସାରେ, ଯେଉଁ ଜାଗା ଦୁଇ ବର୍ଷ ପରେ ରାମସ୍ୱରୂପକୁ ଦିଆଯିବ, ତାହା ତାକୁ ଏବେ ମିଳିବା ଉଚିତ ।

ହୁଜା : ଏହା ଭୁଲ୍ କାମ । ଏଭଳି ଭାବେ ମନଚନ୍ଦାର ଅଧିକାରକୁ ଛିନ୍ନ କରିବାପାଇଁ ମୁଁ ଆଦୌ ପ୍ରସ୍ତୁତ ନୁହେଁ ।

ରାମପ୍ରସାଦ : ଆଜ୍ଞା, ଆମର ଏ ଅଫିସ୍‌ର ପ୍ରଚଳିତ ଅଛି ଯେ, ଯେଉଁ ଲୋକର କିଛି ବର୍ଷ ଅଧିକ ଚାକିରି ଥାଏ ତାକୁ ପ୍ରମୋଶନ ଦିଆଯାଏ । କାରଣ ନୂଆ କାମିକି ସେ ଅଫିସ୍ କାମ ପାଇଁ ଉପଯୁକ୍ତ ହୋଇପାରିବ ।

ହରିଜା : ଇଏ ଏକ ଭୁଲ ପରଂପରା । ଏଇଟା ମୋଟା ଚଳିଛି କ'ଣ ?—ଆମେ ଏହାକୁ ବଦଳେଇ ଦେଇ ପାରିବା । ଏଇଟା କ'ଣ ଫଣ୍ଡାମେଣ୍ଟାଲ ରୁଲ ?

ରାମପ୍ରସାଦ : ଆପଣ ହେଲେ ମାଲିକ । ଯାହା ଇଚ୍ଛା ତାହା କରିପାରିବେ । ଚଳିଣିଟା ଆପଣଙ୍କୁ କହିଦେଲି ।

ହରିଜା : (ବାବୁ ରାମପ୍ରସାଦଙ୍କୁ କାଗଜପତ୍ର ଫେରାଇ) ମୋ ବଦଳରେ ତମେ ମନଚନ୍ଦାର ନାମ ପ୍ରସ୍ତାବିତ କର ।

ରାମପ୍ରସାଦ : (ଅନିଚ୍ଛାରେ କାଗଜପତ୍ର ଉଠାଇ) ସାହେବ ! ଏଇ ପ୍ରଥମ ଥର ଆପଣ ମୋ ପ୍ରସ୍ତାବକୁ କାଟି ଦେଉଛନ୍ତି···ରଦ୍ଦକରି ଦେଉଛନ୍ତି ।

ହରିଜା : ହଁ, ମୁଁ ଜାଣେ ।

( ରାମପ୍ରସାଦ ବାହାରକୁ ଯାଉଁ ରହିଲା । )

ହରିଜା : (ଚଉକି ଓ ଟେବୁଲ୍‌କୁ ଟପି ଆଗକୁ ଆସି) ମୁଁ ସାରା ରାତି ଏଇ କଥା ଚିନ୍ତା କରୁଚି । କାଲି ସନ୍ଧ୍ୟାରେ ତମେ ଯେତେବେଳେ ଏଇ ପେପର ପୁଟ୍-ଅପ୍ କଲ, ମୁଁ କହିଥିଲି କାଲି ଦସ୍ତଖତ କରିବି । ଏଇ କଥା ମତେ ଅତ୍ୟନ୍ତ ଚିନ୍ତିତ କରିପକାଇଚି ।

ରାମପ୍ରସାଦ : (ଅସନ୍ତୁଷ୍ଟ ହୋଇ) ଆଜ୍ଞା ! ମତେ ଏଇଟା ଆଜି ଭାରି ଖରାପ ଲାଗୁଚି । ଦେଢ଼ ବର୍ଷ ହେଲା ମୁଁ ଯେଉଁ ପ୍ରସ୍ତାବ ଅପଣଙ୍କ ଆଗରେ ଥୋଇଚି, ତାହାକୁ ଆପଣ ସ୍ୱୀକାର କରି ଦେଇଛନ୍ତି । ଏହା ହେଉଛି ପ୍ରଥମ ଘଟଣା, ଯେଉଁଥିରେ ଆପଣ ଏଭଳି···

ହରିଜା : (ଚୁଟ୍‌କି ମାରି) ପୁଣି ଏଥିରେ ଫରକ ପଡ଼ିଲା କ'ଣ ? କେବେ କେବେ ଏମିତି ବି ହୁଏ । ଦୁଇଜଣଙ୍କ ରାୟ କେତେବେଳେ ପୂରାପୂରି ଏକ ବି ହୋଇ ନପାରେ !

ରାମପ୍ରସାଦ : ଯେମିତି ଆପଣଙ୍କର ଇଚ୍ଛା । (ମୁଣ୍ଡ ନୁଆଁଇ ଚାଲିଯାଉଥିଲା ।)

ହରିଜା : (ପଛରୁ ଡାକି) ଏତେ ଦୁଃଖିତ ହେବାର କଥା ନୁହେଁ ।

ରାମପ୍ରସାଦ : (ଟିକିଏ ଗମ୍ଭୀରତା ସହ ପ୍ରତ୍ୟାବର୍ତ୍ତନ କରି) ସାର୍ ! ଏହାର ଅର୍ଥ ଏଇଆ ହେଲା ଯେ ଆପଣ ବୁଝିଥିବେ ମୁଁ ରାମସ୍ୱରୂପର ସପକ୍ଷରେ ଥାଇ ମନଚନ୍ଦାଙ୍କ ବିରୁଦ୍ଧରେ ଯାଉଚି ।

ହରିଜା : ନା-ନା । ସେ କଥା ନୁହେଁ । ଏ କଥାକୁ ଛାଡ଼ିଦେଲେ ବି ମୋ ଧାରଣା ଗୋଟାଏ ଏବଂ ତମ ଧାରଣା ଆଉ ଗୋଟାଏ ହୋଇପାରେ ।

ରାମପ୍ରସାଦ : ସାର୍, କ୍ଷମା କରିବେ । ଅପଣ କହିବା ପରେ ମଧ୍ୟ ମୋ ମନରେ ଏ ଧାରଣା ବସାବାନ୍ଧି ରହିବ ଯେ, ମୁଁ ଆପଣଙ୍କର ବିଶ୍ୱାସ ହରେଇବସିଚି ।

ହୁଜା : କଥାଟା ତା'ହେଲେ ଏଇୟା ? (ସଙ୍କେତ କରି) ତେବେ ଶୁଣ !

(ରାମପ୍ରସାଦ ହୁଜାଙ୍କ ନିକଟକୁ ଆସିଲେ । ଦୁହେଁ ଦୁହିଁଙ୍କର ଚଉକି ଉପରେ ବସି-ପଡ଼ିଲେ ।)

ହୁଜା : ଠିକ୍ ଅଛି । ମତେ ପ୍ରତ୍ୟେକ କଥାର ଉତ୍ତର ସାଙ୍ଗେ ସାଙ୍ଗେ ଦିଅ । ପ୍ରଥମ କଥା ହେଲା—ତମେ ନିଜେ ମାନୁଛ ମନଚନ୍ଦାର କାମରେ ଅଫିସ ସଂପୂର୍ଣ୍ଣ ସନ୍ତୁଷ୍ଟ ?

ରାମପ୍ରସାଦ : ହଁ ଆଜ୍ଞା !

ହୁଜା : ତା'ର ଯେତେ ନୋଟିଙ୍ଗ୍ ମୋ ପାଖକୁ ଆସିଚ, ସବୁ ଯଥାଯଥ ଭାବରେ ଲେଖା ହୋଇଥାଏ । ସେଥିରେ କୌଣସି ବାଜେ କଥା ଲେଖା ହୋଇନଥାଏ ।

ରାମପ୍ରସାଦ : ଠିକ୍ କଥା ଆଜ୍ଞା !

ହୁଜା : ଦ୍ୱିତୀୟ କଥାଟି ହେଲା—ତା'ର ରେକର୍ଡ ପୁରାପୁରି ଭଲ । କେବେ କେହି ତା' ବିରୁଦ୍ଧରେ କିଛି ଅଭିଯୋଗ କରିନାହିଁ । କେହି କେବେ ମନ୍ଦ ମନ୍ତବ୍ୟ ଦେଇନାହିଁ । ବେଇମାନ୍ କହିନାହିଁ ।

ରାମପ୍ରସାଦ : ଆଜ୍ଞା, ଇଏ ସତକଥା ।

ହୁଜା : ତୃତୀୟକଥା ହେଲା, ସେ ସମସ୍ତଙ୍କଠାରୁ ସିନିଅର । ତା'ର ଦୁଇ ବର୍ଷ ମାତ୍ର ସର୍ଭିସ୍ ବାକି ଅଛି । ତା'ହେଲେ କ'ଣ କ୍ଷତି ଘଟନ୍ତା, ଯଦି ଯିବାର ଶେଷ ବେଳରେ ତାକୁ ଟିକିଏ ଲିଫ୍ଟ ଦିଆଯାଆନ୍ତା !

ରାମପ୍ରସାଦ : କୌଣସି କ୍ଷତି ଘଟନ୍ତା ନାହିଁ ସାହେବ ! ମୁଁ ତ କେବଳ ଅଫିସ୍‌ର ମତ କଥା କହୁଛି । ତା'ପର କଥା ଆପଣ ବୁଝିବେ । ଆପଣ ତ ମାଲିକ ।

ହୁଜା : (ଟିକିଏ ରାଗିଯାଇ) ମାଲିକର କଥା ନୁହେଁ । ମୁଁ ତମକୁ କେତେଥର କହିଲିଣି, ମୋ ଉଦ୍ଦେଶ୍ୟରେ ଏଭଳି ଶବ୍ଦମାନ ପ୍ରୟୋଗ କରିବ ନାହିଁ ବୋଲି !

ରାମପ୍ରସାଦ : ଭୁଲ୍ ହେଇଗଲା ସାର୍ ! (ଲଜ୍ଜିତ ହେବାଭଳି) ଏମିତି କେତେଟା ଅଭ୍ୟାସ ହେଇଗଲାଣି । କ୍ଷମା ମାଗିନେଉଛି ।

ହୁଜା : (ବ୍ୟସ୍ତ ହୋଇ) କ୍ଷମାର ଅର୍ଥ କ'ଣ ? ଛୋଟ କଥାରେ କ୍ଷମା ମାଗି ନେଉଚ । ଆଉ ବଡ଼ ବଡ଼ କଥାକୁ ହଜମ କରି ଦେଉଚ । ମୁଁ ପଚାରୁଚି, ଯଦି ଏ ତିନିଟାଯାକ କଥା ମନଚନ୍ଦାର ସପକ୍ଷରେ ଯାଉଛି, ତେବେ ଆମେ ତା' ପ୍ରତି ଅନ୍ୟାୟ କେମିତି କରିବା ? ତମେ ଭାବନି ଯେ, ତା'ର କେହି ମୋ ପାଖକୁ ସୁପାରିଶ କରିବାକୁ ଆସିଥିଲେ କିମ୍ବା କେହି ଆସି ତା' ବିଷୟରେ କିଛି କହିବା ପରେ ମୁଁ ଏକଥା କହୁଛି ।

ରାମପ୍ରସାଦ : ମତେ ଜଣାଅଛି ସାର୍ !

ହୁଜା : ଏପରିକି ମୁଁ ତ ତାକୁ ଦେଖି ନାହିଁ କହିଲେ ଚଳେ । ମାତ୍ର ମତେ ତା'ର କାମ ବହୁତ ପସନ୍ଦ ହୁଏ । ଫାଇଲ୍ ଉପରେ ସେ ଯାହା କିଛି ଲେଖେ, ସେଥିରୁ ସେ ଦୂରଦର୍ଶୀ ଓ

ବଙ୍କା ଲୋକ ବୋଲି ଜଣାପଡ଼େ ।

ରାମପ୍ରସାଦ : (ଏ ପର୍ଯ୍ୟନ୍ତ ଦବି ରହିବା ପରେ ଅନେକ ବିଶ୍ୱାସକୁ ଠୁଳକରି) ଏସବୁ ଠିକ୍ କଥା ସାର୍ ! ମୁଁ ମଧ୍ୟ ଆପଣଙ୍କ ଆଗରେ ମୋ ସ୍ଥିତି ସ୍ପଷ୍ଟକରି ଦେଉଛି । ମୁଁ ଏବଂ ମନଚନ୍ଦା ଆଜି ନୁହେଁ, ଗତ ପଚିଶି ବର୍ଷ ହେଲା ପଡ଼ୋଶୀ । ବୟସରେ ସେ ମୋ ଠାରୁ ୬ ବର୍ଷ ବଡ଼ । ପୁଣି ଏହି ଅଫିସରେ ଆମେ ଏକ ସମୟରେ ଭର୍ତ୍ତି ହୋଇଥିଲୁ । ମାତ୍ର ସେ ମାଟ୍ରିକ୍ୟୁଲେଟ୍ ଥିଲା ଏବଂ ମୁଁ ଥିଲି ଗ୍ରାଜୁଏଟ୍ । ସେଥିପାଇଁ ସେ ପ୍ରମୋଶନ ପାଇ ପାରିଲା ନାହିଁ; ଆଉ ମୁଁ ଆସି ସୁପରିନ୍‌ଟେଣ୍ଡେଣ୍ଟ ହେଲିଣି ।

ହୁଜା : ବର୍ତ୍ତମାନ ତାଙ୍କୁ ଯେତେବେଳେ ପ୍ରମୋଶନ ମିଳୁଛି, ତମେ ସେତିକବେଳେ ତା' ରାସ୍ତାରେ ପ୍ରତିବନ୍ଧକ ନ ହେବା ଉଚିତ ।

ରାମପ୍ରସାଦ : ମୁଁ ବରଂ ବେଶୀ ଖୁସି ହେବି । ମାତ୍ର ଏ କଥାଟା ଯଦି ହୋଇଯାଏ ତେବେ· ,

ହୁଜା : କଥାଟା କାହିଁକି ହୋଇ ପାରିବନି ? ତମେ ତା' ନାଁକୁ ପ୍ରସ୍ତାବ କରି ଲେଖିଆଣ; ମୁଁ ସାଙ୍ଗେ ସାଙ୍ଗେ ଦସ୍ତଖତ କରିଦେବି ।

ରାମପ୍ରସାଦ : ଅଫିସବାଲା ସମସ୍ତେ କହିବେ, ରାମପ୍ରସାଦ ମନଚନ୍ଦାର ପଡ଼ୋଶୀ ଏବଂ ବନ୍ଧୁ । ସେଇଥିପାଇଁ ରାମସ୍ୱରୂପର ଅଧିକାରକୁ ମାରିନେଇ ମନଚନ୍ଦାକୁ ଦେଇଦେଲା ।

ହୁଜା : (ଟିକିଏ ଉତ୍ସୁକ କଣ୍ଠରେ) ଅଧିକାରକୁ କେମିତି ମାରିନେଇ ଦେଲେ ? ଅଧିକାରଟା ମନଚନ୍ଦାର ନା ରାମସ୍ୱରୂପର ?

ରାମପ୍ରସାଦ : ସାର୍ ! ଏ ଅଫିସ୍‌ରେ ସେମିତିଆ ଗୋଟାଏ ଚଳଣି ରହିଛି ତ '

ହୁଜା : ଏଇ ଅଫିସ୍‌ରେ ଚଳୁଥିବ; ଆଉ ଅନ୍ୟ କେଉଁଠି ତ ନାହିଁ । ମୁଁ କେତେ ଜିଲାରେ ରହି ଆସିଲିଣି—ଗୁଡ଼ଗାଁଓ, ଗୁରଦାସପୁର । କେଉଁଠି ତ ଏମିତି ରୀତି ଦେଖିନି ।

ରାମପ୍ରସାଦ : ପ୍ରଥମେ ଏଠି ବି ନଥିଲା । ଏଇଟା ଆପଣଙ୍କର ଶଶୁର ସାହେବ ଆରମ୍ଭ କରିଥିଲେ । ରାୟବାହାଦୁର ସାହେବ ଯେଉଁଠି ଯେଉଁଠି ରହିଛନ୍ତି, ସେଠି ସେ ଏ ରୀତି ଆରମ୍ଭ କରି ଦେଇଛନ୍ତି । ମୋ ପ୍ରମୋଶନ ତ ଏଇ ହିସାବରେ ହୋଇଛି ।

ହୁଜା : (ହସି ଦେଇ) ତୁମକୁ ସୁପରିନ୍‌ଟେଣ୍ଡେଣ୍ଟ କରିବାକୁ ଯାଇଁ ରାୟବାହାଦୁର ସାହେବ ଏ ପରମ୍ପରା ଆରମ୍ଭ କରିନାହାନ୍ତି ତ ?

ରାମପ୍ରସାଦ : (ଟିକିଏ ଲଜ୍ଜିତ ହୋଇ) ନା-ନା, ଆଜ୍ଞା ! ମୋ ଆଗରୁ ବର୍ମାଙ୍କୁ ଲାଭ ମିଳିଥିଲା । ତା'ପରେ ମୋ ନମ୍ବର ଆସିଥିଲା ।

ହୁଜା : (ରାମପ୍ରସାଦଙ୍କ ବିବ୍ରତ ଭାବରୁ ମଜା ଉଠାଇ) ମୋ ବିଚାରରେ, ବୋଧେ ତମକୁ ଆଖି ଆଗରେ ରଖି ରାୟବାହାଦୁର ଏ ରୀତି ଚାଲୁ କରି ଦେଇଛନ୍ତି ।

ରାମପ୍ରସାଦ : ବିଲ୍‌କୁଲ ନୁହେଁ ଆଜ୍ଞା ! ସେତେବେଳେ ତ ମୁଁ ବହୁତ ଜୁନିଅର ଥିଲି ! ଆପଣ କୁଙ୍କଜୀଙ୍କୁ ଏକଥା ପଚାରି ବୁଝିନେଇ ପାରନ୍ତି ।

ହୁଜା : (ମୁହଁରେ ହସ ଉକୁଟାଇ) ପଗୃଣବାକୁ ହିଁ ପଡ଼ିବ ।

ରାମପ୍ରସାଦ : ଭଲ ହେବ, ଆପଣ ପଗୃର ନଅନ୍ତୁ ସାର୍ !

ହୁଜା : (ହଠାତ୍ ଗମ୍ଭୀର ହୋଇ) ଯଦି ଆମେ ଏ ପ୍ରଣାଳୀ ବଦଳେଇ ଦେବା, ତେବେ କ୍ଷତି କ'ଣ ହେବ ?

ରାମପ୍ରସାଦ : (ବିବ୍ରତ ହୋଇ) ବହୁତ କ୍ଷତି ହେବ ସାର୍ !

ହୁଜା : କ୍ଷତି ? କେଉଁ ଭଳିଆ ?

ରାମପ୍ରସାଦ : ଯଦି ଏବେ ମନଚନ୍ଦ୍ରାକୁ ପ୍ରମୋଶନ ମିଳିଯାଏ, ତେବେ ଦୁଇବର୍ଷ ପରେ ରାମସ୍ୱରୂପର ନମ୍ବର ଆସିବ ନାହିଁ । ସେତେବେଳକୁ ତା'ର ରିଟାୟାର୍ଡ଼ ହେବାକୁ ଦୁଇବର୍ଷ ଶେଷ ହୋଇ ସାରିଥିବ ।

ହୁଜା : (ରାମପ୍ରସାଦକୁ ତୀକ୍ଷ୍ଣ ଦୃଷ୍ଟିରେ ଦେଖି) ବର୍ତ୍ତମାନ ମୁଁ ବୁଝି ପାରୁଛି । ମୋଟ-ଉପରେ ତମେ ଚାହୁଁଚ, ରାମସ୍ୱରୂପର ପ୍ରମୋଶନ କୌଣସି ପ୍ରକାରେ ସ୍ଥଗିତ ନ ହେଉ । ମନଚନ୍ଦ୍ରାର ପଛେ କ୍ଷତି ହେଉ । (କ୍ରୋଧରେ ଚଉକିରୁ ଉଠି) ମୁଁ ଏ ଅନ୍ଧାଦୁନିଆ ରୀତିକୁ ଚଳେଇ ଦେବି ନାହିଁ । ପ୍ରାପ୍ୟ ହେଲା ମନଚନ୍ଦ୍ରାର, ଆଉ ମିଳୁଚି ରାମସ୍ୱରୂପକୁ । ମୁଁ ଦେଖି ପାରୁଚି, ମନଚନ୍ଦ୍ରା ସାଙ୍ଗରେ ତମର କେମିତିଆ ବନ୍ଧୁତା । କହୁଚ କ'ଣ ନା, ଗତ ପଚଶ ବର୍ଷର ପଡ଼ୋଶୀ ।

ରାମପ୍ରସାଦ : ସାହେବ, ଆପଣ ଭୁଲ୍ ବୁଝୁଁଛନ୍ତି । ମୁଁ କଦାପି କାହାର ପକ୍ଷପାତ କରୁନାହିଁ । ମୁଁ କେବଳ ପୁରୁଣା ରୀତି ଅନୁସାରେ ଚଳିବା ପାଇଁ ଚାହୁଁଚ ।

ହୁଜା : (ପୂର୍ବଭଳି କ୍ରୋଧରେ) ତମର ସଫେଇ ଦେବା ରଖ । କାଲି ସନ୍ଧ୍ୟାରୁ ମୁଁ ଏଇ କଥା ଶୁଣିଆସୁଚି—ଆମ ଅଫିସ୍‌ର ଏଇ ରୀତି । ଅମୁକ ସିନିଅର, ଅମୁକ ଜୁନିଅର୍ । ତା'ର ଦି' ବର୍ଷ, ଯାର ଗୃରବର୍ଷ ବାକି ଅଛି । କି ବିଭ୍ରାଟ ଗୃଲିଚି ଏ ଅଫିସରେ ? ଅନ୍ଧା-ଦୁନିଆଁ ନା ନାଦିର୍‌ସାହି ?

ରାମପ୍ରସାଦ : (ଡରିଯାଇ) ସାର୍, ଆପଣ ଭୁଲ୍ ବୁଝୁଁଛନ୍ତି । ମୋର କହିବାର ଉଦ୍ଦେଶ୍ୟ ଏଇୟା ନଥିଲା ।

ହୁଜା : ବିଲ୍‌କୁଲ ନୁହେଁ; ଏଇଟା କାହିଁକି ନୁହେଁ । କାଲି ସନ୍ଧ୍ୟାରୁ ମୁଁ ଏଇ ସମସ୍ୟାରେ ବିବ୍ରତ । ତମେ ଏଇନା ଶହେ ଯୁକ୍ତି ବାଢ଼ ପଛେ; ମୁଁ ଜାଣିଗଲି କଥାଟା କ'ଣ ।

ରାମପ୍ରସାଦ : (ପୂର୍ବଠାରୁ ଅଧିକ ବିଶ୍ୱାସ ସହିତ) ସାର୍, ଆପଣ ଭାବୁଛନ୍ତି ରାମସ୍ୱରୂପ ମୋ ବନ୍ଧୁ । ସେଥିପାଇଁ ମୁଁ ତାକୁ ଫେଭର୍ କରୁଚି ।

ହୁଜା : (ଗର୍ଜି କରି) ଠିକ୍ ସେଇ କଥା । ବାକି ସବୁ ବାହାନା । ସେଇ କଥାକୁ ପ୍ରମାଣିତ କରିବା ଲାଗି ସେସବୁ ଖାଲି ଯୁକ୍ତି ।

ରାମପ୍ରସାଦ : (ପୂର୍ଣ୍ଣ ବିଶ୍ୱାସ ସହ) ସାର୍ ! ଆପଣଙ୍କର ଏ କଥା ଠିକ୍ ପ୍ରମାଣିତ ହୁଅନ୍ତା,

ଯଦି ମୁଁ ଏ ପ୍ରସ୍ତାବ ସହିତ ଅଫିସ୍‌ର ରୀତିକୁ ଭଙ୍ଗ କରୁଥାଆନ୍ତି । ମୁଁ ତ···

ହିରା : ଆଉ ମୁଁ ଯେତେବେଳେ ଅଫିସ୍‌ର ରୀତିକୁ ଭାଙ୍ଗିବାକୁ ଚାହୁଁଚି ତମେ ସେତିକି-ବେଳେ ରାସ୍ତାରେ ପ୍ରତିବନ୍ଧକ ଠିଆ କରାଉଚ । ଏହା ମଧ୍ୟ ତମର ନିଜ ସ୍ୱାର୍ଥର କ୍ଷତି ଘଟୁଥିବାରୁ ତମେ କରୁଚ ।

ରାମପ୍ରସାଦ : ମାଲିକ ହେଲେ ଆପଣ ! ଯେମିତି ବୁଝିଲେ ବି ମୁଁ କିଛି କରିପାରିବି ନାହିଁ । ମାତ୍ର ଏକଥା ମୁଁ ନିଶ୍ଚୟ କହିବି ଯେ, ଆପଣଙ୍କର ଏ ସିଦ୍ଧାନ୍ତରେ ଭ୍ରମ ରହିଛି ।

ହିରା : ମୋର କୌଣସି ଭ୍ରମ ନାହିଁ; ବରଂ ମୋର ଭ୍ରମ ଦୂର ହୋଇ ଯାଇଛି ।

ରାମପ୍ରସାଦ : (ଧୀର ସ୍ୱରରେ) ଭ୍ରମ ଦୂର ହୋଇ ଯାଇଛି ?

ହିରା : (ମନେ କରିନେଇଥିଲେ ରାମପ୍ରସାଦ ଏବେ ତାଙ୍କର ଦୟାର ପାତ୍ର) ପ୍ରଥମେ ତମେ ଯାହା ଲେଖି ଆଣୁଥିଲ, ମୁଁ ତୁରନ୍ତ ସେଥିରେ ସ୍ୱାକ୍ଷର କରିଦେଉଥିଲି । ଏଇଥିପାଇଁ ଭାବି ଦସ୍ତଖତ କରୁଥିଲି—ଯେ, ତମେ ଯାହା ଲେଖିଛ ତାହା ଠିକ୍ । ମାତ୍ର ଏବେ ମୁଁ ଜାଣି ପାରିଲି ଯେ, ମୋର ତାହା କରିବା ଉଚିତ ନ ଥିଲା ।

[ହିରାଙ୍କର ପତ୍ନୀ ସୁଷମାଙ୍କ ପ୍ରବେଶ । 25-26 ବର୍ଷୀୟା, ସୁସଜ୍ଜିତା; ଶାଢ଼ି ପିନ୍ଧି ଖୁବ୍ ସୁନ୍ଦର ଦିଶୁଥିଲେ । ତାଙ୍କ ମୁହଁରେ ଫିଲମୀ ଅର୍ଥାତ୍ ଅଲଅଲ ଭାବ ତାଙ୍କୁ ଉଦ୍ଦିତ କରିଥିବା ସୂଚନା ଦେଖିବାକୁ ମିଳେ । ତାଙ୍କର ପ୍ରଥମ ବାକ୍ୟ ହିଁ ତାଙ୍କର ଏହି ଭାବକୁ ପୁଷ୍ଟିକରେ ।]

ସୁଷମା : ହ୍ୟାଲୋ ଡାର୍ଲିଂ ! ଭଲ ହେଲା, ତମେ ଆଗରୁ ପ୍ରସ୍ତୁତ ହୋଇ ପଡ଼ିଛ । (ଟିକିଏ ଗେହ୍ଲେଇ ହୋଇ) ଏଇ ଅଧଘଣ୍ଟା ପାଇଁ ମୋ ସାଙ୍ଗରେ କ୍ଲବ୍ ଯାଏ ଚାଲ ନା ! କେବଳ ଅଧଘଣ୍ଟା ପାଇଁ (ହିରାଙ୍କ ଆଖିରୁ ରାଗର ସୂଚନା ପାଇ) ପ୍ରମିଜ୍, ତା'ଠୁ ଅଧିକ ସମୟ ଲାଗିବ ନାହିଁ ।

ହିରା : ନା, ଡିଅର୍—ମୁଁ ଏଠୁ ଅଧଘଣ୍ଟା ପାଇଁ ବି ଯାଇ ପାରିବି ନାହିଁ । ମୋତେ ଗୋଟା ଦୁଇଟା ଜରୁରୀ କାମ କରିବାକୁ ହେବ ।

ରାମପ୍ରସାଦ : (ସୁଷମାଙ୍କ ଧ୍ୟାନ ନିଜ ଆଡ଼କୁ ଟାଣିନେଇ) ନମସ୍କାର ବୋଉଜୀ !

ସୁଷମା : (ପତିଙ୍କ ଆଡ଼ୁ ଦୃଷ୍ଟି ଫେରାଇ ନେଇ) ନମସ୍କାର ! ଓହୋ—ବାବୁଜୀ ! କୁହନ୍ତୁ, ଆପଣଙ୍କର ଖବର କ'ଣ ?

ରାମପ୍ରସାଦ : (ବିନମ୍ରତା ସହି) ଆପଣଙ୍କ କୃପାରୁ···

ସୁଷମା : (ପୁଣି ପୂର୍ବସ୍ୱରରେ) ତମକୁ ସବୁ ସମୟରେ କାମ ଜାବୁଡ଼ି ଧରିଛି । ଅଧଘଣ୍ଟା ସମୟ ଦେଇ ପାରୁନ ?

ହିରା : କଥାଟା ଅଧଘଣ୍ଟାର ନୁହେଁ—କଥା ହେଉଚି ଆଟିଚ୍ୟୁଡ୍‌ର । ତମର କାମ ନାହିଁ,

ଆଉ ମୋର ଏତେ କାମ ଯେ, ସରୁନ । କିନ୍ତୁ ତମେ ମତେ କୁହତ, କ୍ଲବ୍‌କୁ ଯିବାପାଇଁ ଇଏ କେମିତିଆ ସମୟ । ସନ୍ଧ୍ୟାକୁ ଏକାସାଙ୍ଗରେ ଯିବା ।

ସୁଷମା : ସେଠିକି ମିସେସ୍ ନାଗେସଙ୍କୁ ମୁଁ ଡାକିଚି । ଭଲ ହୁଅନ୍ତା, ତମେ ଯଦି ସାଙ୍ଗରେ ଥାଆନ୍ତ ! ଗୋଟା ଦାଇଟା କଥାର ସମ୍ମତି ନେବାର ଥିଲା ।

ହୁଜା : (ରାମପ୍ରସାଦକୁ) ଠିକ୍ ଅଛି, ମୁଁ ଟିକିଏ ପରେ ଡାକୁଚି । ତମେ ତା'ର ଭିତରେ ନିଜ ପ୍ରସ୍ତାବକୁ ନୂଆ କରି ଲେଖ ।

ରାମପ୍ରସାଦ : (ଟିକିଏ ସଲ୍ଲଜ ହୋଇ) ଯଦି ଆପଣ ମନଚନ୍ଦାକୁ ହେଡ଼କ୍ଲର୍କ କରିବାକୁ ଚାହାନ୍ତି, ତେବେ ସବୁଠୁଁ ଭଲହେବ ଆପଣ ନିଜେ ନିଜ ହାତରେ ଆଦେଶ ରେକର୍ଡ଼ କରନ୍ତୁ ।

ହୁଜା : (ତା'ର ଯୁକ୍ତିକୁ ପସନ୍ଦ ନକରି) ନା, ଏ ପ୍ରସ୍ତାବ ତମରିଆଡ଼ୁ ଆସିବା ଉଚିତ ।

ରାମପ୍ରସାଦ ; (ଡରିକରି; କିନ୍ତୁ କହିବାର ଉପକ୍ରମ କରି) ଯଦି କ୍ଷମା କରନ୍ତେ ଆପଣ ତ......

ହୁଜା : (ରାଗ ସମ୍ଭାଳି ନେଇ ଏବଂ ଟେବୁଲ ଉପରେ ଥୁଆ ହୋଇଥିବା କାଗଜକୁ ଧରିଇ) ଏ ପ୍ରସ୍ତାବଟା ତମରିଠୁଁ ଆସିବା ଠିକ୍ ହେବ । ରେକର୍ଡ଼ରେ ତୁମ ପ୍ରସ୍ତାବଟା ରହିକରି ଦିଆହୋଇଥିବା କଥା ନରହିବା ଉଚିତ ।

ରାମପ୍ରସାଦ : (କାଗଜପତ୍ର ଉଠାଇ) ନମସ୍କାର ବିବିଜୀ !

ସୁଷମା : ନମସ୍କାର ବାବୁଜୀ ! ସରୋଜିନୀ ଭଲ ଅଛି ତ ? ତା'ଠୁଁ କୌଣସି ଚିଠିପତ୍ର ଆସିଥିଲା ?

ରାମପ୍ରସାଦ : (କିଛି ସାହସ ସଂଚୟ କରି) ଏଇ ପଅରିଦିନ ତ ଚିଠି ଆସିଲା । କ୍ଷମା କରିବେ, ମୁଁ ଭୁଲିଯାଇଥିଲି । ସେ ଆପଣଙ୍କ ପାଇଁ ନମସ୍କାର ପଠାଇଥିଲା ।

ସୁଷମା : ମୋ ତରଫରୁ ତାକୁ ଆପଣ ନମସ୍କାର ଜଣାଇଦେବେ ।

ରାମପ୍ରସାଦ : (ବାହାରକୁ ଯାଉ ଯାଉ) କୋଟି ଯୁଗ ବଞ୍ଚୁ ଥା' ମା' ।

(ଏକଥା କହିଦେଇ ବାହାରକୁ ଚାଲିଗଲା ସେ ।)

ହୁଜା : ବଡ଼ ଚାଲାକ୍ ଲୋକ ଇଏ । ପେଟରେ କ'ଣ ଅଛି କେହି ଜାଣି ପାରିବେ ନାହିଁ ।

ସୁଷମା : ମୁଁ ତ ପ୍ରଥମରୁ ଏକଥା କହିଥିଲି; ହେଲେ ତମେ ତ କେବେ ମାନିଲ ନାହିଁ ।

ହୁଜା : ମତେ ଜଣା ନଥିଲା, ଇଏ ଏତେ ସଇତାନୀ କରିପାରେ; ଏତେ ବନେଇ-ଚୁନେଇ କହିପାରେ ।

ସୁଷମା : (ଧ୍ୟାନପୂର୍ବକ ଶୁଣି) ବର୍ତ୍ତମାନ କ'ଣ ହେଲା କି ?

ହୁଜା : କାଲିଠାରୁ ଇଏ ମୋତେ ଅତିଷ୍ଠ କରିଦେଲାଣି । ସାରାଦିନ ମୁଁ ଏଇ ସମସ୍ୟାରେ

ବୁଢ଼ା ରହୁଛ ଏବଂ ଖବୁଚ କ ନଷ୍ଟଦ୍ଧି କଗ୍ରାଯାଇପାରବ ।

ସୁଷମା : (ଟିକିଏ ଚିନ୍ତିତା ହୋଇ) କିନ୍ତୁ ହେଇଚ କ'ଣ ?

ହ୍ରଜା : ଆମ ହେଡ଼କ୍ଲର୍କ ଆସନ୍ତା ମାସରେ ପେନ୍‌ସନ ପାଇଯିବ । ତା' ଜାଗାରେ ଯାହାର ପ୍ରମୋଶନ ପ୍ରାପ୍ୟ, ତା' ନାଁକୁ ଛଏ ପ୍ରସ୍ତାବିତ ନକରି ଅନ୍ୟ ଏକ ଲୋକ ପାଇଁ ପ୍ରସ୍ତାବ ପକାଉଚ ।

ସୁଷମା : କ'ଣ ହେଲା ସେଥିରୁ ? ତମେ ତାଙ୍କ କଥା ମାନ ନାହିଁ । ମାତ୍ର ଏତକ ବକଟେ ଘଟଣା; ଆଉ ତମେ ଏକବାରେ ବ୍ୟନ୍ତ-ବିବ୍ରତ ହେଇପଡ଼ୁଚ ! ଛାଡ଼ ସେ କଥା, କାର୍‌ରେ ବସି ଏ ବିଷୟରେ ଚିନ୍ତା କରିନେବ । କୋଉ ଏବେ ଫାଶୀ ହେଇଯାଉଚ ଏଥିରେ ?

ହ୍ରଜା : (ସମସ୍ୟାକୁ ହାଲୁକା କରିବାର ପ୍ରଚେଷ୍ଟାକୁ ପସନ୍ଦ ନକରି ସୁଷମାକୁ) ତମେ ତ ସବୁ ସମୟରେ ପିଲଙ୍କ ଭଳି କଥାବାର୍ତ୍ତା କରୁଚ । ଏ ସମୟରେ କ୍ଲବ୍ ଯାଇ ମତେ ଭଲ କ'ଣ ମିଳିବ ?

ସୁଷମା : ମୁଁ ଯାହା କହୁଚ—ଛଏ କୌଣସି ମୂଲ୍ୟ ନୁହେଁ କ ?

ହ୍ରଜା : କିନ୍ତୁ ସେଠିକି ଯାଇ କରିବ କ'ଣ ? ଏଇ ଦେଖ, ଏଠି ଫାଇଲ୍ କେମିତି ଗଦା ହେଇଚ । କେତେ କାମ ଏବେ ବାକି ପଡ଼ିଚ । ପୁଣି ସାକ୍ଷାତକାରଙ୍କ ସମୟ ମଧ୍ୟ ଆରମ୍ଭ ହୋଇଯିବ ।

ସୁଷମା : (ପ୍ରେମଭାବ ବ୍ୟକ୍ତକରି) ନା ପ୍ରିୟ, ତମେ ମୋ ସାଙ୍ଗରେ ନିଶ୍ଚୟ ଯିବ । ପ୍ଲିଜ୍ !

ହ୍ରଜା : କିନ୍ତୁ ମୁଁ କରିବ କ'ଣ ? ତମେ ତ ମିସେସ୍ ନଗେସଙ୍କ ସାଙ୍ଗରେ କଥାହେବ; ହେଲେ ମୁଁ କ'ଣ କରିବ ?

ସୁଷମା : ସେଠି ତମରି ଦରକାର ଅଛୁ । ତମ ବ୍ୟତୀତ କଥାଟା ହେଇ ପାରିବନି ।

ହ୍ରଜା : (ସୁଷମାଙ୍କ ପିଲାମି ପ୍ରତି ବିରକ୍ତ ହୋଇ; ମାତ୍ର ମୁହଁରେ ସେ ଭାବ ବ୍ୟକ୍ତ ନକରି) ମୁଁ ବୁଝିପାରୁନି ମୋର ସେଠି କି ଦରକାର ?

ସୁଷମା : କଥା କଣ କି—ମୁଁ ଆଉ ମିସେସ୍ ନଗେସ୍ ମିଶି କ୍ଲବ୍‌ରେ ଲେଡ଼ିଜ୍ ଫେୟାର କରିବାକୁ ଚାହୁଁଚୁ । ସେ ଦିଗରେ ଆମର ତୁମ ସାହାଯ୍ୟ ଦରକାର ।

ହ୍ରଜା : (ଯିବା କଥାକୁ ନାକଚ କରିବା ଉଦ୍ଦେଶ୍ୟରେ) ତମେ ଯେଉଁ ସହାୟତା ଚାହିଁବ, ମିଳିଯିବ । ଏଇଟା ଗୋଟା କ'ଣ ପଗ୍ଭରିବାର କଥା ?

ସୁଷମା : ପଗ୍ଭରିବାର କଥା ବୋଲି ତ ମୁଁ ତୁମକୁ ସାଙ୍ଗରେ ନେବାକୁ ଆଗ୍ରହ ପ୍ରକାଶ କରୁଚ । ତୁଚ୍ଛାଟାରେ ଭଲ ତୁମକୁ କିଏ ବିବ୍ରତ କରନ୍ତା ! (ଟିକିଏ ବିଗିଡ଼ିକରି) ତମେ ମତେ କ'ଣ ଭାବିଲ କି ?

ହ୍ରଜା : (ଦୁଷ୍ଟାମି କରି) ଖୁବ ମଜା କରିବାକୁ ଚାହୁଁଚ ନା ?

ସୁଷମା : (ଅଧିକ ବିଗିଡ଼ିଯାଇ) ପୁଣି ସେଇକଥା ? ମୁଁ ତେବେ ଯାଉଚ । ମୋର ଏଠିକି ଆସିବାଟା ତମକୁ ଖୁବ୍ ଖରାପ ଲାଗୁଚି ବୋଧେ ।

ଦୁଜା : (ସ୍ୱର ବଦଳାଇ) ବାଃ, ସାଙ୍ଗେ ସାଙ୍ଗେ ରାଗିଯାଉଚ ? ପିଲାଙ୍କଭଳି ? ଆଚ୍ଛା କୁହତ, କ'ଣ ଅସୁବିଧା ଦେଖାଦେଇଚ ?

ସୁଷମା : (ରାଗିବା ଗଳାରେ) କିଛି ଅସୁବିଧା ହେଇନି । ଠିକ୍ ଭାବରେ କଥାବାର୍ତ୍ତା କରିବ କି ରହିବ । ନଚେତ୍ ମୁଁ ଚାଲିଲି ।

ଦୁଜା : (ସୁଷମାର ହାତଧରିପକାଇ) ଆସ, ଚଉକିରେ ବସ । ଆଉ କୁହ, ମତେ କ'ଣ କରିବାକୁ ହେବ ?

ସୁଷମା : (ବସିବାକୁ ନାଚ୍ଚିକରି) ତମେ ମତେ ଆଗ କୁହ—କ୍ଲବ୍ ପର୍ଯ୍ୟନ୍ତ ତମେ ମୋ ସାଙ୍ଗରେ ଯାଇ ପାରିବ କି ନାହିଁ ?

ଦୁଜା : (ଦୃଢ଼ ସ୍ୱରରେ) ନା ।

ସୁଷମା : (କିଛି ସମୟ ଚୁପ୍‌ରହି ମନେ ମନେ ପରଖିଲା ଭଳି)—କଥା କଣ କି, ମିସେସ୍ ପୌରାଣିକ ବି ଏମିତି ଏକ ଫେସ୍ଟାର୍‌ର ଚେଷ୍ଟାରେ ଅଛନ୍ତି । ହେଲେ ମୋର ଆଉ ମିସେସ୍ ଶ୍ରୀଙ୍କର ଇଚ୍ଛା ଯେ ତାଙ୍କଠୁ ଆମେ ଆଗେ କରିନେବୁ ।

ଦୁଜା : (ଧ୍ୟାନ ନଦେଇ) କରୁନା, କଣ ଯୁଦ୍ଧ ହେଉଛି ।

ସୁଷମା : କିନ୍ତୁ ଏକଥା ନ ହେଇଯାଉ ଯେ, ସେ ବି ଗେଡ଼ ହୋଡ଼କ୍ୱାର୍ଟର ସହାୟତାରେ ଫେସ୍ଟାର କରିଦେଉ—ଆଉ ଆମେ ମୁହଁକୁ ଚାହିଁ ରହିଯାଉଁ ।

ଦୁଜା : (ପୁରା ଘଟଣାରେ ବିରକ୍ତ ହୋଇ) କେମିତି ବୋକାଙ୍କ ଭଳି ତମେ କଥା କହୁଚ ମ ! ମୁଁ କ୍ଲବ୍‌ର ଏକ୍‌ଜିକ୍ୟୁଟିଭରେ ପାଶ କରିଦେବି ଯେ, ମିସେସ୍ ଦୁଜାଙ୍କ ପ୍ରସ୍ତାବ ପ୍ରଥମେ ଆସିଥିଲା; ତେଣୁ ଫେସ୍ଟାର ତାଙ୍କରି ଦ୍ୱାରା ହେଉ । ଅତି ସହଜ କଥା ଇଏ । ଆଜି ସନ୍ଧ୍ୟାକୁ ଦରଖାସ୍ତ ଦେଇଦେବ । ହେଲା ?

ସୁଷମା . ପରେ ପୁଣି ତମେ କହିବ—ସ୍ତ୍ରୀଲୋକମାନେ ପରସ୍ପର ଭିତରେ କଳି କରି ଆମ ସମ୍ବନ୍ଧକୁ ଖରାପ କରୁଛନ୍ତି ।

ଦୁଜା : (ବିଶ୍ୱାସ ଦେଇ) କେବେ କହିବିନି ମାଇଁ ଡିଅର୍ !

ସୁଷମା : ତା' ସାଙ୍ଗରେ ପୁଣି ଏଇଆ କହିବ ଯେ—ଏଇଭଳି କଥାରେ ସିଭିଲ ଆଉ ମିଲିଟାରୀର ସମ୍ବନ୍ଧ ଖରାପ ହେଉଚି ।

ଦୁଜା : (ସମସ୍ତ ସମସ୍ୟାକୁ ଲଘବ କରିବା ଦୃଷ୍ଟିରୁ) କିଛି ହେବନି; ତମେ ଯାହା ଚାହୁଁଚ କର । ମୁଁ ସବୁଥର ଭଳି ସମ୍ଭାଳିନେବି ।

ସୁଷମା : ତେବେ ଠିକ୍ ଅଛି । ମୁଁ ଏକୁଟିଆ କ୍ଲବ୍‌କୁ ଚାଲିଯାଉଚି । ସବୁକଥା ମୁଁ ଏବଂ ମିସେସ୍ ନାଗେସ ପକ୍‌କା କରିନେବୁ ।

ଦୁଜା : କିନ୍ତୁ ଏବେ ଯାଅନି । ପ୍ରଥମେ ମୋ ସମସ୍ୟାକୁ ଥଣ୍ଡା କରି ଯାଅ ।

ସୁଷମା : କ'ଣ ?

ହୁଜା : କ'ଣ ? ମୁଁ ଏତେ ବଡ଼ ବିପଦରେ ପଡ଼ିଛି; ଆଉ ତମେ ପଗ୍ଗରୁଚ କଅଣ ?

ସୁଷମା : ଆଉଥରେ କୁହନା ।

ହୁଜା : ତମକୁ ପଗ୍ଗ କହିଲି, ବାବୁ ରାମପ୍ରସାଦ ଚଉରସ୍ତାର ସହିତ ନିଜର ଜଣେ ମିତ୍ରଙ୍କୁ ହେଡ୍ କ୍ଲର୍କ କରିବାକୁ ଚାହୁଁଛି ।

ସୁଷମା : (ନିଶ୍ଚିନ୍ତତା ସହିତ) ତମେ କରିଦିଅନା ।

ହୁଜା : କଥାଟା ଏତେ ସହଜ ନୁହେଁ । କୋଉ କଥାଟା ଏବେ ମୁଁ କରିବି ?

ସୁଷମା : ମୁଁ ତ ଆରମ୍ଭରୁ ତମକୁ କହି ଆସୁଚି ରାମପ୍ରସାଦର ସବୁକଥାକୁ ତମେ ମାନି ନିଅନାହିଁ । ସେ ତ ସେଇଭଳିଆ ଲୋକଟାଏ । ଡାକ୍ତି ମଧ୍ୟ ତା' ଉପରେ ଏମିତି ବିଶ୍ୱାସକରି ପଶ୍ଚାତ୍ତାପ କରିଥିଲେ ।

ହୁଜା : ତାଙ୍କୁ ମଧ୍ୟ ଇଏ ହଇରାଣ କରିଦେଇଚି !

ସୁଷମା : ପୁରା ହଇରାଣଟେ କରିଚି । ଦ' ତିନି ମାସ ପରେ ହିଁ ଆମର ବଦଳି ହୋଇ ଯାଇଥିଲି ।

ହୁଜା : ଆଜିଯାଏ ମୁଁ ତା'ର ସବୁକଥାକୁ ସ୍ୱୀକାର କରି ନେଉଥିଲି; କିନ୍ତୁ ଏଥର ସ୍ୱୀକାର ନ କରିବା ପାଇଁ ମନ ହେଉଚି ।

ସୁଷମା : ତା'ହେଲେ ନ କର । ଭୟ କୋଉ କଥାକୁ ? ମକ୍କାର ଅଟା ଆଣି ଦେଇଥିଲା; ବାସୁମତୀ ଚାଉଳ କେଉଁଠୁ ଅମଳକରି ଦେଇଥିଲା । ଏଇ କଥାରେ କିଏ କ'ଣ କାହାର ବଶ ହେଇଯାଏ ?

ହୁଜା : ତମ ପାଖରେ ଆସି ନେହୁରା-ନିମତ ହୋଇ କଥାହେବ ।

ସୁଷମା : କରୁଚି ଯଦି କରୁ । ମତେ ତ ସିଏ କେବେହେଲେ ଭଲ ଲାଗେନା । ଡାକ୍ତିଙ୍କ ସମୟରେ ଚାକିରରେ ମୁକିରର ହେଇଥିବା ଲୋକ । ପୁଣି ତା'ର ଝିଅ ସରୋଜିନୀ ମୋର ଘନିଷ୍ଠ ବାନ୍ଧବୀ ଥିଲା । ମାତ୍ର ତା'ର ମାନେ ନୁହେଁ ଯେ···

ହୁଜା : ସିଏ ତ ସମସ୍ତଙ୍କୁ କହିବୁଲୁଚି, ସାହେବଙ୍କ ପତ୍ନୀ ମୋ ଝିଅର ଫ୍ରେଣ୍ଡ୍ । ସେଥିପାଇଁ ମୁଁ ଯାହା ଚାହିଁବି, ସାହାବଙ୍କଠୁ ତାହା କରେଇନେବି ।

ସୁଷମା : ମୁଁ ତମକୁ ପଚାଶ ଥର କହିଥିବି, ରାମପ୍ରସାଦର ସବୁକଥାକୁ ମାନିନେବ ନାହିଁ । ପିଲାଦିନୁ ମତେ ଏ ଲୋକଟା ଚାଲାକ ଓ ସୁବିଧାବାଦୀ ଭଳି ଲାଗେ । ପ୍ରଥମେ ମୁଁ ଯେତେବେଳେ ସରୋଜିନୀ ସାଙ୍ଗରେ ଦେଖା କରିବାକୁ ଯାଉଥିଲି, ସେତେବେଳେ ଇଏ ମୋ ଚାରିପଟେ ଘୁରିବୁଲୁଥିଲା । ଥରେ ମତେ ସେ କହିଲା, ରାୟ ବାହାଦୁର ସାହେବଙ୍କୁ କହିବୁ—'ମୋ ପ୍ରତି ଟିକିଏ ଦୃଷ୍ଟି ରଖିଥିବେ' । ବାସ୍, ସେଥିପାଇଁ ମତେ ଇଏ ଭଲ ଲାଗେନାହିଁ । (କିଛି ସମୟ ପାଇଁ ନୀରବରହି) କିନ୍ତୁ ମୁଁ ଜାଣି ପାରୁନି, ତମେ କେମିତି ତା'ର ସବୁକଥାକୁ ମାନିନେଉଚ ?

ହୁଜା : ସୁଷମା ! ଢ'ପଟେ ମୋର ଅଡ଼ୁଆ—ବିପଦ । ମାନିନେଲେ ଅଡ଼ୁଆ ହେବ, ନ ମାନିଲେ ଅସୁବିଧା ।

ସୁଷମା : ନ ମାନିଲେ କ'ଣ ଅସୁବିଧା ଶୁଣେ ? ସେ ତମର କ'ଣ ବିଗାଡ଼ି ଦେବ ?

ହୁଜା : ତମର ସେଠ ଗ୍ରାମ୍‌ଦୟାଲ ଘଟଣା ମନେଅଛି ?

ସୁଷମା : (ଚମକିପଡ଼ି) ହଁ ।

ହୁଜା : ମୁଁ ପରେ ଜାଣିବାକୁ ପାଇଲି, ସେ ରାମପ୍ରସାଦର ସମ୍ପର୍କୀୟ ।

ସୁଷମା : ତା' ମାନେ ?

ହୁଜା : ତା'ର ଅର୍ଥ ହେଉଚି, ରାମପ୍ରସାଦ ଜାଣିପାରିବଣି ତା' କାମକୁ ମୁଁ କରି ଦେବିଣି —ସେଇଥିପାଇଁ··· ।

ସୁଷମା : ତା'ହେଲେ ତ ନିଶ୍ଚୟ ଜାଣିପାରିବଣି ।

ହୁଜା : (ରହସ୍ୟ ଖୋଲି) ସେଥିପାଇଁ ମୁଁ ରାମପ୍ରସାଦର ସବୁକଥାକୁ ମାନିନେଉଚି । ଯେମିତି ସେ ଆମ ବିରୁଦ୍ଧରେ କୌଣସି କଥା କହିବାକୁ ସୁବିଧା ପାଇବ ନାହିଁ ।

ସୁଷମା : (ସାରା କଥାକୁ ନୂଆ ଦୃଷ୍ଟିରେ ଦେଖି) କିନ୍ତୁ ଏସବୁ ଏମିତି କେତେଦିନ ଗ୍ଭଲୁ-ରହିଥିବ ?

ହୁଜା : (କଥାକୁ ଦୋହରାଇ) ଆଜିଯାଏ ଚଳିଆସିଲାଣି ।

ସୁଷମା : (ହୁଜାଙ୍କର କଥାରୁ କଥା ବାହାର କରି) ପୁଣି ଭବିଷ୍ୟତରେ ବି ଗ୍ଭଲୁ ରହିବ ।

ହୁଜା : କିନ୍ତୁ ଏ ଘଟଣାରେ ମୋ ମନ ମାନୁ ନାହିଁ ।

ସୁଷମା : କାହିଁକି ?

ହୁଜା : ମନଚନ୍ଦ୍ରା ସବୁଠାରୁ ସିନିଅର; ପୁଣି ତା' କାମ ମଧ୍ୟ ସନ୍ତୋଷଜନକ । ଦୁଇବର୍ଷ ପରେ ସେ ପେନ୍‌ସନ୍ ପାଇ ଯିବ । କଣ କ୍ଷତି ହେବ, ଯଦି ସେ ଦୁଇବର୍ଷ ପାଇଁ ହେଡ୍‌କ୍ଲର୍କ ହେଇଯାଏ । ବେଶି କିଛି ନ ହେଲେ ତ, ତା' ପେନ୍‌ସନ୍‌ରେ ପନ୍ଦର କୋଡ଼ିଏ ଟଙ୍କା ପ୍ରତି ମାସରେ ଅଧିକ ମିଳିଯିବ ।

ସୁଷମା : କଥାଟା ତ ଠିକ୍ ।

ହୁଜା : କିନ୍ତୁ ରାମପ୍ରସାଦ ନିଜର ବନ୍ଧୁ ରାମସ୍ୱରୂପକୁ ସାହାଯ୍ୟ କରିବାକୁ ଗ୍ଭହୁଁଚି ।

ସୁଷମା : (ଭାବି) ତମେ ଯଦି ତା' କଥା ନ ମାନ, ତେବେ କ'ଣ ହେବ ?

ହୁଜା : ହବ ଆଉ କ'ଣ ? ବୋଧେ ରାମପ୍ରସାଦ ମୋ ନାଁରେ କିଛି କଥା ଉଠେଇବ ।

ସୁଷମା : ତୁମେ କ'ଣ ଆଉଥରେ ନଉଚ ଯେ, ସେ କହିବା ଦ୍ୱାରା କିଛି ଅନ୍ତରାୟ ସୃଷ୍ଟି ହେବ ?

ହୁଜା : ସେଥିପାଇଁ ତ ମୁଁ କହୁଚି, ଆଗରୁ ଆମର ଇଜ୍ଜତ ଓ ରେପୁଟେସନ୍ ରହୁଛି ।

ତାହା ସେମିତ ରହୁ: କଳଙ୍କିତ ନ ହେବା ଦରକାର ।

ସୁଷମା : ତା'ହେଲେ ଚିନ୍ତା କର ।

ହୃଜା : କାଲିଠାରୁ ମୁଁ ଏଇ ବିଷୟରେ ଚିନ୍ତା କରୁଛି । ଆଉ କ'ଣ କରୁଚି କି ?

ସୁଷମା : ବିରକ୍ତ ହେବାର କିଛି କଥା ନାହିଁ । ଚିନ୍ତା କରି ଆଗେଇଲେ କିଛି ନା କିଛି ରାସ୍ତା ମିଳିଯିବ ।

ହୃଜା : ବୁଦ୍ଧି ହେ ଠିକେ । ଏଇନା ମତେ ଉପଦେଶ ଦେବା ଆରମ୍ଭ କରିଦେଲଣି ।

ସୁଷମା : ଆଚ୍ଛା ତମେ ଆଗ କୁହ ତ, ତମେ କେବଠୁଁ ଜାଣିଲ ସେଠି ରାମଦୟାଲ ରାମପ୍ରସାଦର ସମ୍ପର୍କୀୟ ବୋଲି ?

ହୃଜା : କେତେ ମାସ ଆଗରୁ ତ ମୁଁ ଜାଣିଲଣି । କିନ୍ତୁ ମୁଁ ତମକୁ କହିନଥିଲି ।

ସୁଷମା : କାହିଁକି, ମତେ କହିବାରେ କ'ଣ ଅସୁବିଧା ଥିଲା ?

ହୃଜା : ମୁଁ ଭାବିଲି, ତମେ କାହିଁକି ମିଛଟାରେ ଚିନ୍ତାରେ ପଡ଼ିବ ! ଛାଡ଼, କ'ଣ ଅବା ହେଇଯିବ ?

ସୁଷମା : ଏତେ ଜରୁରୀ କଥା— ଅତି କମ୍‌ରେ ମତେ ତ କହିବାର ଥିଲା । ଆଚ୍ଛା, ତମେ ଏ ବିଷୟରେ ଜାଣିଲ କେମିତି ?

ହୃଜା : ହେଡ଼୍ କ୍ଲର୍କ ପୁରୀଙ୍କଠାରୁ ।

ସୁଷମା : କେମିତି ?

ହୃଜା : ସେଠ ରାମଦୟାଲଙ୍କ କାଗଜପତ୍ର ମୋ ପାଖକୁ ଆସିସାରିଥିଲା । ପୁରୀ ମୋ ପାଖରେ ଠିଆ ହୋଇଥିଲା । କହିଲା, ସାର୍ ! ଏ ସେଠ୍ ଆମ ସୁପରିନ୍‌ଟେଣ୍ଡେଣ୍ଟଙ୍କ ମାମୁ ହୁଅନ୍ତି ।

ସୁଷମା : ଆଚ୍ଛା, ତା'ହେଲେ ଏତେ ନିକଟସମ୍ପର୍କ ?

ହୃଜା : (ସୁଷମାଙ୍କ ବ୍ୟଗ୍ରତା ପ୍ରତି ଦୃଷ୍ଟି ନ ଦେଇ) ମୁଁ କଥାଟାକୁ ଇଗ୍‌ନୋର୍ କରିଦେଲି । ସେ ପୁଣି ସେଇକଥାକୁ ଆଉଥରେ କହିଲା । ମୁଁ କହି ଉଠିଲି, 'ସେଥିରୁ ହେଲା କ'ଣ ?' ସେ କହିଲା, 'ଆଉ ତ କିଛି ନୁହେଁ—ସେମିତି ସୁପରିନ୍‌ଟେଣ୍ଡେଣ୍ଟ ସାହେବ ନିଜ ମାମୁଙ୍କ ବିଷୟରେ ଆପଣଙ୍କୁ କିଛି କହି ନ ପାରେ । ତେଣୁ ଭାବିଲି, ମୁଁ ଆପଣଙ୍କୁ କଥାଟା ମନେ ପକେଇ ଦେଇଥାଏ ।'

ସୁଷମା : ସେଇଠୁ ତମେ କ'ଣ କହିଲ ?

ହୃଜା : ମୁଁ କହିଲି, 'ଆମକୁ ଏଥିରେ ଅନ୍ତର ପଡ଼ୁଚି ବା କ'ଣ ? ଯାହା ଠିକ୍, ତାହା ହିଁ ହେଇଯିବ ।

ସୁଷମା : ଏହାର ମାନେ କ'ଣ ? ତାକୁ କ'ଣ ଜଣା ଯେ ତୁମେ ରାମଦୟାଲଠାରୁ କିଛି...

ହୁଜା : କମ୍ବା ଏଇଯ୍ଯା ବ ହୋଇପାରେ—ରାମପ୍ରସାଦ ତାକୁ ଶିଖେଇ ଦେଇଥିବ ଯେ ମତେ ପରୀକ୍ଷା କରି ଦେଖ୍, କପରି ମୁଁ …

ସୁଷମା : ରାମପ୍ରସାଦ ବଡ଼ ସଇତାନ । ହେଇପାରେ, ସେ ତମ୍ଭୁକୁ ସୂଚେଇ ଦେବାକୁ ଚାହିଁଥିବ ଯେ ତାକୁ ତମର ଆଉ ସେଠ ରାମଦୟାଲଙ୍କ ଭିତରକଥାଟି ଜଣା ।

ହୁଜା : ଯାହା ବ ହେଉ । ସେଠ୍ର ସହାଯ୍ୟତାରେ ଯେଉଁ ଗାଡ଼ ମିଳିବାର ଥିଲା, ମିଳିଗଲା । ଏବେ ଆମର ଆଉ କୌଣସି ଜିନିଷ ଦରକାର ନାହିଁ । ରୁହ ।…ମୋ ମୁଣ୍ଡକୁ ଗୋଟାଏ ବୁଦ୍ଧି ଜୁଟିଲା । ମୁଁ ଗୋଟାଏ କାମ କରୁଚ ।—(ଘଣ୍ଟି ବଜାଇଲେ । ଚପରାଶୀର ପ୍ରବେଶ ।) ଟିକେ ହେଡ଼୍ କ୍ଲର୍କଙ୍କୁ ଏଠିକି ଡାକ । (ଚପରାଶୀ ଚାଲିଗଲା ।)

ସୁଷମା : କ'ଣ କରିବାକୁ ଯାଉଚ ?

ହୁଜା : ମୁଁ ହେଡ଼୍ କ୍ଲର୍କଙ୍କୁ ପଚାରିବାକୁ ଚାହୁଁଚ, କ'ଣ କରାଯିବା ଉଚିତ ?

ସୁଷମା : ସେ କ'ଣ କିଛି ନୂଆ ମନ୍ତ୍ରଣା ଦବ ନା କ'ଣ ମ ? (ଦୁର୍ବଳତା ପାଖରେ ଧରି ଦେଇ) ମୋ ବିଚାରରେ ରାମପ୍ରସାଦ ଯାହା କହୁଚ, ସେଇଆ୍ଯା କରିଦିଅ ।

[ହେଡ଼କ୍ଲର୍କ ପୁରୀ ବାହାରୁ ପ୍ରବେଶ କଲେ । 5୦ ବର୍ଷୀୟ, ଅଫିସ କାମରେ କ୍ଳାନ୍ତ ହେଇଥିବା କରାଣି । ଯାହାର ପିଠି କ୍ରମାଗତ ଚଉକି ଉପରେ ବସିରହୁଥିବା ଯୋଗୁଁ ନଇଁ-ପଡ଼ିଥିଲା । ଯେପର୍ଯ୍ୟନ୍ତ ସେ ସାହେବଙ୍କ ଆଗରେ ଠିଆ ହୋଇ ରହୁଥିଲା, ସେଯାଏ ନିଜ ଅଣ୍ଟାରେ ହାତ ଭରି ଦେଉଥିଲା । ଯେମିତିକି ପଡ଼ିଯିବା ଆଗରୁ ନିଜେ ରକ୍ଷା କରି ନେଉଚ ।]

ହୁଜା : ଆସନ୍ତୁ ।

ପୁରୀ : ନମସ୍କାର ଆଜ୍ଞା !

ସୁଷମା : ନମସ୍କାର !

ହୁଜା : ପୁରୀ ସାହେବ ! କୁହନ୍ତୁ ତ, ପ୍ରମୋଶନ ଲାଗି ଏ ଅଫିସ୍ର ରୀତି କ'ଣ ?

ପୁରୀ : କ'ଣ କହିଲେ ସାର୍ ? କଥାଟା ମତେ ସ୍ପଷ୍ଟ ଶୁଭିଲା ନାହିଁ ।

ହୁଜା : ମୋର ପଚାରିବାର ଉଦ୍ଦେଶ୍ୟ ହେଉଚ ଆସନ୍ତା ମାସରେ ଆପଣ ତ ଅବସର ନେବେ । ତା'ହେଲେ ଆପଣଙ୍କ ଜାଗାକୁ କାହାର ପାଳି ପଡ଼ିବ ?

ପୁରୀ : ସାର୍, ଆମ ଅଫିସ୍ର ଚଳଣି ହେଉଚ, ଯଦି ପରବର୍ତ୍ତୀ ଲୋକର ଚାକିରିକାଳ ଦୁଇବର୍ଷରୁ କମ୍ ଥାଏ, ତେବେ ତାକୁ ପ୍ରମୋଶନ୍ ଦିଆଯିବନାହିଁ । ତା' ପରବର୍ତ୍ତୀ ଲୋକକୁ ଦିଆଯିବ ।

(ହୁଜା ସୁଷମାଙ୍କ ଆଡ଼କୁ ଚାହିଁଲେ । ମାତ୍ର ସେ ନିଶ୍ଚଳ ଭାବେ ବସିଥିଲେ ।)

ହୁଜା : (କଥାର ସ୍ପଷ୍ଟତା ପାଇଁ) ଏବେ ପାଳି ମନଚନ୍ଦାର ନା ରାମସ୍ୱରୂପର ?

ପୁରୀ : ମନଚନ୍ଦାର ଚାକିରି ଆଉ ଦୁଇବର୍ଷ ଛଅମାସ୍ ବାକି ଅଛି ସାର୍ ! କିନ୍ତୁ ମୋ ବିଚାରରେ ଚାନ୍ସଟା ରାମସ୍ୱରୂପକୁ ହିଁ ମିଳିବା ଉଚିତ ।

ହୁଜା : କେଉଁଥିପାଇଁ ? ଯେତେବେଳେ ମନଚନ୍ଦାର ସର୍ଭିସ ଦୁଇବର୍ଷ ଛଅମାସ ଆହୁରି ବାକି ଅଛି, ସେତେବେଳେ ରାମସ୍ୱରୂପଙ୍କୁ ଗ୍ରେଡ୍ କାହିଁକି ମିଳିବ ?

ପୁରୀ : ମୋ ମତରେ ସାର୍, ରାମସ୍ୱରୂପ ହିଁ ଠିକ୍ ହେବ । ମନଚନ୍ଦାର ରାମଙ୍କର ଦୁଇ-ବର୍ଷ ଜାଗାରେ ଦୁଇବର୍ଷ ଛଅମାସ ଆହୁରି ଅଛି । ତଥାପି ଛଅମାସର ବ୍ୟବଧାନ ତ ବ୍ୟବଧାନ ନୁହେଁ ।

ହୁଜା : କାହିଁକି ? ଛଅମାସ ବ୍ୟବଧାନ କ'ଣ କିଛି ନୁହେଁ ? ଯଦି ଆପଣଙ୍କୁ ଛଅମାସ ଆଗରୁ ରିଟାୟାର୍ କରିଦିଆଯାଏ, ତେବେ କ'ଣ ଆପଣଙ୍କୁ ଭଲଲାଗିବ ?

ପୁରୀ : ସେ ତ ଅଲଗା କଥା ସାର୍ !

ହୁଜା : (ଟିକିଏ ରାଗରେ) ନିଜ ପାଇଁ କଥାଟା ଅଲଗା ହେଇଯାଉଚି । ତମେ ସମସ୍ତେ ନିଜ ନିଜ ଭିତରେ ମେଳି ହେଇଚ । ରାମପ୍ରସାଦ ଆଉ ତୁମେ ମଧ୍ୟ । ଏ ରାମସ୍ୱରୂପ କିଏ, ଯିଏ ତମ ସମସ୍ତଙ୍କୁ କାବୁ କରି ରଖିଚି ?

ପୁରୀ : (ନମ୍ରତା ସହ) ନାହିଁ ସାର୍, ସେମିତି କିଛି ନୁହେଁ ।

ହୁଜା : (ଅଧିକ ବିରକ୍ତ ହେଇ) ନୁହେଁ, କେମିତି ନୁହେଁ ? ତମେ ସମସ୍ତେ ଏକ୍ । ଜାଣେନା, ମନଚନ୍ଦା ବିରୁଦ୍ଧରେ କ'ଣ କ'ଣ ଅଭିସନ୍ଧି କରି ବସିଚ ? ତାକୁ ତମେ ସବୁ ତା'ର ଅଧିକାରରୁ ବଂଚିତ କରିବାକୁ ଚାହୁଁଚ । ତା'ର ଦୋଷ କ'ଣ ? ସେ ସମସ୍ତଙ୍କଠାରୁ ଭଲକାମ କରେ । ତା'ଠି କି ଅବଗୁଣ ଅଛି ?

ପୁରୀ : (ଭୟଭୀତ ହୋଇପଡ଼ି) ମୁଁ କିଛି କହୁନାହିଁ ସାର୍ ! ମୁଁ କେବଳ ଏ ଅଫିସ୍‌ର ଚଳଣି ସମ୍ବନ୍ଧରେ ଆପଣଙ୍କୁ କହୁଚି । ଆପଣ ତା'ପରେ ଯାହା କରିବା କଥା କରନ୍ତୁ । ଆପଣ ତ ମାଲିକ ।

ହୁଜା : ମୁଁ କୌଣସି ବାଜେ କଥା ଶୁଣିବାକୁ ପ୍ରସ୍ତୁତ ନୁହେଁ । (କ୍ରୋଧରେ) ମୁଁ ନିଜ ଇଚ୍ଛା ଅନୁସାରେ ନିଷ୍ପତ୍ତି ନେବି । ତମର ଚଳଣିକୁ ମୁଁ ଖାତିର୍ କରିବି ନାହିଁ । ଏଇ କଥା କାଲଠୁଁ ମୋ ମୁଣ୍ଡରେ ଭୂତ ହେଇ ସବାର ହେଇଚି । ଏ ଅଫିସ୍‌ର ଚଳଣି ଏଇଆ । ଯାର ଦି'ବର୍ଷ, ତା'ର ଦୁଇ ବର୍ଷ ଛଅମାସ ରହିଗଲା ।

ପୁରୀ : କ୍ଷମା କରିବେ ସାର୍ ! ଆପଣଙ୍କର ନିଷ୍ପତ୍ତି କିଛି ଭୁଲ୍ ବୁଝାମଣା ହେଇଚି । ମୁଁ ସେଇ ନିବେଦନ···

ହୁଜା : (ତା' କଥାକୁ କାଟି ଦେଇ) ମତେ ଦୁଃଖ ଲାଗୁଚି ମିଷ୍ଟର ପୁରୀ—ଆପଣ ରିଟାୟାର୍ ହେବା ସମୟରେ ମଧ୍ୟ ଅଧିକାରର କଥା ଠିକ୍ କରି ପାରିଲେ ନାହିଁ । ଅତି କମ୍‌ରେ ଯିବା ସମୟରେ ନିଜ ସ୍ମୃତି ଛାଡ଼ିଯିବା ଉଚିତ ।

ପୁରୀ : ସାର୍ ! ଯଦି ମତେ ସ୍ପଷ୍ଟ କହିବାକୁ ଦିଅନ୍ତି, ତେବେ ମୁଁ···

ହୁଜା : ସେସବୁ ଆଉ କୋଉ ସମୟରେ କହିବ । ମୁଁ ନିଷ୍ପତ୍ତି କରିନେଲିଣି । ଆପଣ

ଯାଇ ମିଷ୍ଟର ମନଚନ୍ଦା ଏବଂ ମିଷ୍ଟର ରାମପ୍ରସାଦ—ଦୁହିଁଙ୍କୁ ମୋ ପାଖକୁ ପଠାଇ ଦିଅନ୍ତୁ । ମୁଁ ସେମାନଙ୍କ ସହିତ କଥାବାର୍ତ୍ତା କରି ନିଜେ ନିର୍ଣ୍ଣୟ କରିନେବି ଯେ ଦୁହିଁଙ୍କ ମଧ୍ୟରେ କିଏ ଉପଯୁକ୍ତ ।

[ଏହା କହି ସେ ସୁଷମାଙ୍କ ଆଡ଼କୁ ଚାହିଁଲେ । ଯେପରିକି ସେ ପଚାରିବାକୁ ଚାହୁଁଥିଲେ ଯେ, ସେ ଠିକ୍ କହିଛନ୍ତି କି ନା ! କିନ୍ତୁ ସୁଷମା ତଳକୁ ଚାହିଁଥିଲେ । ସେଥିପାଇଁ ତାଙ୍କୁ ସେ ଦେଖି ପାରିଲେ ନାହିଁ ।]

ପୁରୀ : (ବିବ୍ରତ ହୋଇ) କିନ୍ତୁ ମନଚନ୍ଦା ତ···ଆଜି ଛୁଟିରେ ଅଛି, ସାର୍ !

ହୁଜା : ଛୁଟିରେ ଅଛି ! କିନ୍ତୁ ମୋ ପାଖକୁ ତ ତା'ର ଦରଖାସ୍ତ ଆସି ନାହିଁ ?

ପୁରୀ : (ଆହୁରି ବିବ୍ରତ ହୋଇ) ତିନିଦିନ ପର୍ଯ୍ୟନ୍ତ ଛୁଟି ଦେବାର ଅଧିକାର ତ ଆପଣ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ଦେଇସାରିଛନ୍ତି, ସାର୍ !

ହୁଜା : (ମନେ ପକାଇ) ଓଁହୋ—ଠିକ୍ କଥା । ଏ ବଦ୍‌ମାସ୍ ରାମପ୍ରସାଦ···(ପୁଣି କ'ଣ ଭାବି)···ତା'ହେଲେ ରାମପ୍ରସାଦକୁ ମୋ ପାଖକୁ ପଠାଇ ଦିଅନ୍ତୁ ।

ପୁରୀ : (ଉଠିପଡ଼ି) ନମସ୍କାର !

ସୁଷମା : ନମସ୍କାର । (ସେ ଯିବା ପରେ) ତମେ କ'ଣ କରିବାକୁ ଯାଉଚ ?

ହୁଜା : ମୁଁ ରାମପ୍ରସାଦର ପ୍ରସ୍ତାବ ନ ମାନିବା ପାଇଁ ନିଷ୍ପତ୍ତି ନେଉଛି । ତାକୁ ଆଗରୁ କହି-ସାରିଛି—ନୂଆ ପ୍ରସ୍ତାବ ଲେଖିକରି ଆଣ ।

ସୁଷମା : (ଚିନ୍ତାତୁର ସ୍ୱରରେ) ଭାବିନିଅ ଥରେ—ଏଇନା ତ ତମେ କହୁଥିଲ କେତେ ପ୍ରକାରର କଥା ଉଠେଇବ । ଯଦି ସେ···

ହୁଜା : (ଶୀଘ୍ର କହି ଉଠିଲେ) ଯାହା ଇଚ୍ଛା ତାହା କରିଯିବ । କେତେ ଦିନ ଯାଏ ମୁଁ ତା'କଥାରେ ଦବି ରହିଥିବି ?

ସୁଷମା : (ଚିନ୍ତିତ ସ୍ୱରରେ) ଏବେ ତ ତମେ ଆଉ- ଗୋଟାଏ କ'ଣ କହୁଥିଲ । ପୁଣି ଏଇନା ଆଉରି ଗୋଟା କ'ଣ କହିଲଣି ।

ହୁଜା : (ଆଶ୍ୱସ୍ତ ସ୍ୱରରେ) ଏମିତି ସବୁ ହୁଏ । ଯଦି ମୁଁ ଏଇ କଥାରେ ଷ୍ଟାଣ୍ଡ ନ ନେବି ନା ରାମପ୍ରସାଦ ଦିନକୁଦିନ ମୋ ଉପରେ ଚଢ଼ିବସିବ । ସେଥିପାଇଁ ଦରକାର···

(ରାମପ୍ରସାଦର ପ୍ରବେଶ)

ହୁଜା : (ରାମପ୍ରସାଦ ଆସିବା ମାତ୍ରେ) ସେ ନୂଆ ପ୍ରସ୍ତାବ ଆପଣ ଲେଖି ଆଣିଲେ ?

ରାମପ୍ରସାଦ : ନା ସାର୍ !

ହୁଜା : କାହିଁକି ?

ରାମପ୍ରସାଦ : ମୋ ମତରେ ଆମେ ଏ ବିଷୟରେ ଟିକିଏ ବିଳମ୍ବ ଏବଂ ବିଚାର ଆଲୋଚନା କରି ନେବା । (ହୁଜାଙ୍କୁ ସ୍ଥିରଭାବେ ଠିଆ ହୋଇଥିବା ଦେଖି) ଏଥିରେ କ୍ଷତିଟା କ'ଣ

ହୋଇଯିବ ?

ଦ୍ବିଜା : ଆଉ ବେଶି ଭାବିବା ଚିନ୍ତିବା ଦରକାର ନାହିଁ । ମୁଁ ସବୁ ଭାବି-ଚିନ୍ତି ସାରିଛି ।

ରାମପ୍ରସାଦ : ମୋ ବିଚାରରେ ଆମେ ଏବେ ତରତର ନ ହେବା ଭଲ ।

ସୁଷମା : (ମଝିରେ କହିପକାଇଲେ) ଠିକ୍ଅଛି । ଆଉ ଟିକିଏ ଚିନ୍ତା କରିନିଅ ।

ଦ୍ବିଜା : ଏକଥା କାଲିଠୁଁ ମୋ ମୁଣ୍ଡରେ ସବାର ହୋଇଚି । ଯେପର୍ଯ୍ୟନ୍ତ ଏହାର ନିଷ୍ପତ୍ତି ନ ହୋଇଚି, ସେ ପର୍ଯ୍ୟନ୍ତ ମୋ ମନରେ ଶାନ୍ତି ନାହିଁ ।

ସୁଷମା : ଡାର୍ଲିଙ୍ଗ ! ନିଷ୍ପତ୍ତି କାଲି କରିନେବ । ବିଶେଷକରି ଆଜି ଆଉ କାଲି ଭିତରେ ତଫାତ୍ ଅବା କ'ଣ ଅଛି ?

ଦ୍ବିଜା : (ଅତିଷ୍ଟ ହୋଇ) ଗୋଟାଏ ଦିନର ତଫାତ୍ । ମୋ ପାଇଁ ଏବେ ଗୋଟାଏ ମୁହୂର୍ତ୍ତି ବି ଅସହ୍ୟ । (ରାମପ୍ରସାଦଙ୍କୁ) ଆଣନ୍ତୁ, ମୁଁ ଫାଇଲ୍ ଉପରେ ଏବେ ଲେଖି ଦଉଚି ଯେ —ପୁରୀଙ୍କ ବାଦ୍ ମନଚନ୍ଦାକୁ ହେଡ଼କ୍ଲର୍କ କରାଯାଉ ।

ରାମପ୍ରସାଦ : ସାର୍ ! ମୋ କଥା ଉପରେ ଅପଣ ଧ୍ୟାନ ଦେଲେନାହିଁ । ଏହା କଲେ ଅଫିସ୍‌ରେ ବିଭ୍ରାଟ ପ୍ରସରିଯିବ ।

ଦ୍ବିଜା : କିଛି ଶୁଣାଯିବ ନାହିଁ । ମୁଁ ଏ ଅନ୍ୟାୟ ଦେଖି ପାରିବି ନାହିଁ । ଅଧିକାର ମନଚନ୍ଦାର ଆଉ ଦାବୀ ମିଳିବ ରାମସ୍ୱରୂପଙ୍କୁ !

ରାମପ୍ରସାଦ : ସାର୍ ! ଅଫିସ୍‌ର ଯାହା ଚଳଣି, ତା'ର ଅନୁସାରେ ଚାଲିବା ଠିକ୍ ହେବ । ନଚେତ୍ ଆଉ ଯେଉଁ ଲୋକ ଆଶାଧରି ବସିଛନ୍ତି, ତାଙ୍କ ମନରେ ଅସନ୍ତୋଷ ଖେଳିଯିବ ।

ଦ୍ବିଜା : (ଅପେକ୍ଷା କଲେ ନାହିଁ । ଯେପରିକି କଥାକୁ ଆଉ ନ ଲମ୍ବାଇ ତୁରନ୍ତ ନିଷ୍ପତ୍ତି ନେବାକୁ ଚାହୁଁଛନ୍ତି) ମୁଁ ସବୁ କିଛି ଚିନ୍ତା କରିସାରିଛି । ନୋଟିଙ୍ଗ ଏଠିକି ଆଣନ୍ତୁ !

[ରାମପ୍ରସାଦ ଫାଇଲ୍ ତାଙ୍କ ଆଗକୁ ଦେଲେ । ଦ୍ବିଜା ତା' ଉପରେ କିଛି ରେକର୍ଡ଼ କଲେ । ରାମପ୍ରସାଦ ସୁଷମାଙ୍କ ଆଡ଼କୁ ଚାହୁଁଥିଲେ । ଫାଇଲ ଉପରେ କିଛି ଲେଖିସାରିବା ପରେ ତାହାକୁ ରାମପ୍ରସାଦ ଆଡ଼କୁ ବଢ଼ାଇଦେଲେ । ତା'ପରେ ସୁଖରେ ନିଃଶ୍ୱାସ ମାରିଲେ ।]

ରାମପ୍ରସାଦ : ସରକାର ! ଯେଉଁ କଥାରେ ଆପଣ ଖୁସି, ସେଥିରେ ଆମେ ବି ଖୁସି ।

ଦ୍ବିଜା : (ଜିତଥିବା କଣ୍ଠରେ) ଏବେ ଆପଣ ଯାହା ଇଚ୍ଛା କରୁଛନ୍ତି କୁହନ୍ତୁ । ମୁଁ ଶୁଣିବାକୁ ପ୍ରସ୍ତୁତ ଅଛି ।

ରାମପ୍ରସାଦ : ତା'ହେଲେ ଶୁଣନ୍ତୁ ସାର୍ ! ମନଚନ୍ଦା ବିଗତ ତିନିବର୍ଷ ହେଲା ଅନ୍ଧ । ଥରେ ତା' ସାଇକେଲ ମଟରରେ ଧକ୍କା ଲାଗି ଯାଇଥିଲା । ଜୀବନଟା ତ ବଂଚିଗଲା; କିନ୍ତୁ ତା'ର ଆଖି ଦୁଇଟାର ଜ୍ୟୋତି ହଜିଗଲା । ପିଲିଛୁଆ ଥିଲାବାଲା ଲୋକଟା; ପୁଣି ଚାକିରି ତା'ର ପାଞ୍ଚ ବର୍ଷ ଥିଲା । ତେଣୁ ଆମେ ସମସ୍ତେ ମିଶି ନିଷ୍ପତ୍ତିକରି ନେଇଥିଲୁ ଯେ ତା' କାମକରି ତା'ଠୁ ଦସ୍ତଖତ କରିନେବୁ ।

ହୁଜା : (ମୁହଁର ଭାବ ହଠାତ୍ ବଦଳାଇ) କ'ଣ କହୁଛନ୍ତି ଆପଣ ? ଯେଉଁ ଫାଇଲ୍ ତା' ସ୍ୱାକ୍ଷରରେ ମୋ ପାଖକୁ ଆସେ, ତହିଁରେ କେବଳ ତା'ର ସ୍ୱାକ୍ଷର ଥାଏ ?

ରାମପ୍ରସାଦ : ବିଲ୍‌କୁଲ୍ ଠିକ୍ କହୁଚ ସାର୍ ! ସେ ଅଫିସ୍‌ର ଗୋଟାଏ କୋଣରେ ଲୁଚକରି ବସିରହୁଥାଏ । ଆଉ ତା'ର କାମ ଆମେ ସବୁ ମିଶି କରଦେଉ ।

ହୁଜା : ସୁଷମା ! ଶୁଣିଲ ତମେ ?

ସୁଷମା : ମୁଁ ତ ଶୁଣି ଶୁଣି ହଇରାଣ ହେଇଗଲିଣି ।

ରାମପ୍ରସାଦ : (ତା' କଥାରେ ଯେପରି କୌଣସି ପ୍ରତିବଂଧକ ନ ଥିଲା) କଥାଟା କେବଳ ଏଇଯା ନୁହେଁ । ଦି'ବର୍ଷ ପରେ ତାର ପୁଅ ମାଟ୍ରିକ୍ ପାଶ୍ କରିଯିବ । ଆଉ ମନଚନ୍ଦା ଯେତେବେଳେ ରିଟାୟାର୍ କରିବ, ଆମେ ସବୁ ଚେଷ୍ଟାକରି ତାକୁ ଚାକରିରେ ଭର୍ତ୍ତି କରଦେବୁ — ଯେପରିକି ତା' ପରିବାରର ଗୁଜରାଣ ମେଣ୍ଟିଯିବ ।

ହୁଜା : ଆପଣ ଆଗରୁ ଏସବୁ ମତେ କହିଲେନି କାହିଁକି ? ଏତେ ବଡ଼ କଥା ।

ରାମପ୍ରସାଦ : ସାର୍, କେମିତି କହନ୍ତି ? ଜାଣେନା ଆପଣ କ'ଣ ନାଇଁ କଣ କରନ୍ତେ । ଯଦି ଆମେ ଆପଣଙ୍କୁ ଏସବୁ ଆଗରୁ କହିଦେଇ ଥାଆନ୍ତୁ — ହେଇପାରେ, ଆପଣ କହି ଦେଇ ପାରିଥାଆନ୍ତେ, ଏମିତିଆ ଲୋକ ଚାକରିରେ ରହିବା ଉଚିତ ନୁହେଁ ।

ହୁଜା : (ନରମ ହୋଇ) ସମ୍ଭବତଃ ।

ରାମପ୍ରସାଦ : (କଥାର ସୂତାଖିଅକୁ ପୁଣି ଧରି) ମନଚନ୍ଦାକୁ ଯଦି ହେଡ୍‌କ୍ଲର୍କ କରିଦିଆଯିବ, ତେବେ କାମ କେମିତି ଚଳିବ ?

ହୁଜା : ଅଜବ୍ କଥା !

ରାମପ୍ରସାଦ : (କାଗଜ ସମ୍ଭାଳି ଧରି) ଆଜ୍ଞା, ଆପଣ ଭାବିଥିବେ ଯେ ରାମପ୍ରସାଦ କେଡ଼େ ବେଇମାନ ଲୋକ ! କିନ୍ତୁ କିଛି ଭାବିବାର ନାହିଁ ସାର୍ ! ଭୁଲ ମଧ୍ୟ ହେଇଯାଏ; ଭୁଲ ବୁଝାମଣା ବି ହୁଏ । କୁହାଯାଏ ନା, ଆଖି ଆଗକୁ କୁଟା ଆସିଗଲେ ସୂର୍ଯ୍ୟ ବି ଦେଖାଯାଏ ନାହିଁ । ସେଠି ଏ ଅଧମର ଅବା କି ମହତ୍ତ୍ୱ ?

(ହୁଜା ସୁଷମାଙ୍କ ମୁହଁକୁ ଚାହିଁ ଥିଲେ । ଆଉ ରାମପ୍ରସାଦ କାଗଜପତ୍ର ଧରି ବାହାରକୁ ଚାଲିଗଲେ ।)

□□□

# ଗୋମୁଖୀ ଶେରମୁଖୀ

—ଗୁରଚରନ ସିଂହ ଜସଜା

## ପାତ୍ର

କିଶନ ଦେବୀ
ଶରନ ସିଂହ
ରେପୁଡ଼ା ସାହାବ
ସୁଦର୍ଶନ

ପ୍ରଥମ ଦୃଶ୍ୟ

## ବଜାରର ଦୃଶ୍ୟ

[ଗ୍ରେପଡ଼ା ସାହେବ ଓ ଶରନ ସିଂହ ବଜାରରେ କଥା ହେଉ ହେଉ ଚାଲିଆସୁଛନ୍ତି । କିଛି ବାଟ ଆଗେଇ ଆସି ଗୋଟାଏ ପଟକୁ ଠିଆ ହୋଇ କଥାବାର୍ତ୍ତା କରିବାକୁ ଲାଗିଲେ । ଗ୍ରେପଡ଼ା ଜଣେ ପ୍ରୌଢ଼ ବୟସର ବ୍ୟକ୍ତି । ପ୍ୟାଣ୍ଟ ପିନ୍ଧିଛନ୍ତି ; ହାତରେ ହ୍ୟାଟ୍ । ଶରନ୍ ସିଂହ ହେଉଚି ଶିଖ, ଯାହାର ଦାଢ଼ି ପାଚିଯାଇଚି । ଲୁଗାପଟା ସାଧାରଣ ଏବଂ ପଗଡ଼ି ମଇଳା । ସେ ଖୋଲା କାମିଜ ପାଇଜାମା ପିନ୍ଧିଛି ।]

ଗ୍ରେପଡ଼ା : ଆପଣ ବହୁତ ଜୋର୍‌ଦାର ଲୋକ ସରଦାର ସାହେବ ! ଦେଖନ୍ତୁ, ଏ ଯାଏ ଜବରଦସ୍ତି ମତେ ଟାଣିଆଣିଲେ ।

ଶରନ : ବାସ୍, ଗ୍ରେପଡ଼ା ସାହେବ ! ଆପଣ ଏଇ ପହଂଚଗଲେ ଜାଣ । ଏଇ ବଜାରରେ ତ ସେ ଘର । (ଅଟକିଯାଇ ଆଙ୍ଗୁଠି ସଙ୍କେତ କରି) ଓ…ସେଇ ଯୋଉ ଗଳି ଦିଶୁଛିନା, ତା'ରି କୋଣରେ ଥିବା ଘରଟା ଛାଡ଼ି ଆର ଘରଟା ।

ଗ୍ରେପଡ଼ା : ଆଚ୍ଛା, ଘର ତ ହେଲା ; ଠିକ୍ କଥା । କିଂତୁ ମୋର ପ୍ରାର୍ଥନା…

ଶରନ : (ନ ଶୁଣିଲା ଭଳି) ହେଇ ଦେଖନ୍ତୁ ଆଜ୍ଞା, ଯୋଉଟାର ଛାତର ବାହାର ଅଂଶଟା ସାବଜା ରଙ୍ଗିନ ଦିଶୁଚି, ଆଉ ଦୁଇଟା ଝରକା ଗଳି ଆଡ଼କୁ ଅଛି—ସେଇଟା । ଛାତଉପରେ ଠିଆହେଲେ ମୁକ୍ତ ପବନ ମିଳିବ ।

ଗ୍ରେପଡ଼ା : ଆପଣ ବଡ଼ 'ଇଏ' ଲୋକ । ମୋର ହାତେ ହାତେ ସଉଦା କରିନେବା ଖବର ନାହିଁ । ଆପଣ ବାଧ କରିବାରୁ ସାଙ୍ଗରେ ଚାଲିଆସିଲି ।

ଶରନ : ଗ୍ରେପଡ଼ା ସାହେବ ! ସତ କହିବାକୁ ଗଲେ, ମତେ ମୋ କମିଶନ୍ ବିଷୟରେ କୌଣସି ଲୋଭ ନାହିଁ । ମୋର ଆପଣଙ୍କ ପ୍ରତି ବିଶେଷ ଶ୍ରଦ୍ଧା ଅଛି । ନହେଲେ ମୋର ମଧ୍ୟ ଆହୁରି ଅନେକ ଗ୍ରାହକ ଅଛନ୍ତି; କିଂତୁ ଆପଣ ବିଶ୍ୱାସ କରନ୍ତୁ, ଭଲ ବ୍ୟବସାୟ କରିବାକୁ ଇଚ୍ଛା ଥିଲେ ବି ଆଉ କାହାକୁ କହିବା ପାଇଁ ମନ ମାନିଲା ନାହିଁ ।

ଗ୍ରେପଡ଼ା : ଧନ୍ୟବାଦ, ଧନ୍ୟବାଦ ସରଦାର ସାହେବ ! କିନ୍ତୁ ଅସଲ କଥା ହେଉଚି ବର୍ତ୍ତମାନ କିଛି କିଣାକିଣି କରିବାକୁ ମୋ ହାତରେ ପଇସା ନାହିଁ ।

ଶରନ : ସେ କଥା ଆପଣ ଛାଡ଼ନ୍ତୁ ମ ! ମୁଁ ସବୁ ଜାଣେ । ଏମିତିଆ ଜିନିଷ ନେଇ ଦେବି ଯେ ଆପଣ ମନେକରୁଥିବେ । ଆପଣ ଟିକେ ଚାଲନ୍ତୁ ତ—ଘରଟା ଦେଖେଇଦିଏ…

ଗ୍ରେପଡ଼ା : ମାତ୍ର ମୁଁ ଜାଣୁଚି ବ୍ୟର୍ଥରେ ସମୟ ନଷ୍ଟ କରିବାର କଥା ଇଏ ।

ଶରନ : ଓହୋଃ ! ଗ୍ରେପଡ଼ା ସାହେବ କେମିତି ବୋକାଙ୍କ ଭଳି କଥା କହୁଛନ୍ତି ଆପଣ ! ଆପଣ ବେପାରୀମାନଙ୍କ ମଧ୍ୟରୁ ଜଣେ । ବେପାରୀଙ୍କର କାମ କଣ ? ବେପାର କରିବା । ବେପାରୀକୁ ଶସ୍ତାରେ ଜିନଷ ମିଳିଲେ ତୁରନ୍ତ କିଣି ନିଏ । ଭାଉ ମହଙ୍ଗା ହେଇଗଲା ତ ତୁରନ୍ତ ବିକି ଦିଏ । ଲାଲ ଲାଲଚନ୍ଦ୍ର ଜୀ ଯୋଉ ନାହାନ୍ତି··· ? ଆଜ୍ଞା, ସେ ତେଲିବାଲା ମ ! ଦୁଇମାସ ତଳେ ମୋ ହାତରେ ଜମିଖଣ୍ଡେ ଥିଲା—ବିକିବାବାଲାର ନିହାତି ଦରକାର ପଡ଼ିଥାଏ । ମୁଁ ଲାଲଚନ୍ଦ୍ରଜୀଙ୍କ ସହ କଥା ହେଲି— ସଉଦା ହେଇଗଲା -- ଆଉ ଖୁବ୍ ଶସ୍ତାରେ ବି ମିଳିଲା ··· ତିନି ସପ୍ତାହ ପରେ ସେଇ ଜମିଖଣ୍ଡକୁ ପଚି ତିନି ହଜାର ଟଙ୍କା ଲାଭରେ ପୁଣି ବିକେଇ ଦେଇଚି । ଯେଉଁ କାମରେ ଦି' ପଇସା ମିଳିବା କଥା ଆଖିରେ ପଡ଼େ, ବେପାରୀ ଲୋକ ଭଲା ତାକୁ କେବେ ଛାଡ଼ିଦେଇପାରେ ?

ଗ୍ରେପଡ଼ା : ନା ସରଦାର ସାହେବ ! ମୁଁ ତ ବେପାରୀ, ଠିକ୍ କଥା—କିନ୍ତୁ ବେଳ କାଳ ନେଇ କଥା ହୁଏ ସିନା !

ଶରନ : ମୋ କହିବା କଥା ମାନ୍ନ, ଏ ସଉଦାକୁ ନିଶ୍ଚୟ ବିଚାର କରନ୍ତୁ । ବିଚାର କରିବାରେ କ'ଣ କିଛି କ୍ଷତି ହେଉଚି ? ଯଦି ଆପଣ ନ ନେବେ, ତେବେ କ'ଣ ଜବରଦସ୍ତି ବେକରେ ବାନ୍ଧି ଦିଆଯାଉଚି ?

ଗ୍ରେପଡ଼ା : ଆଚ୍ଛା, ଆପଣ ଠିକ୍ କହୁଛନ୍ତି ।

ଶରନ : ଇଏ ଗ୍ରାନମାଟଉନ୍ କ ଇଲାକା । ଦିଲ୍ଲୀରେ ଏତେ ଶସ୍ତାରେ ସଉଦା ସୁଯୋଗରେ ହିଁ ମିଳେ ।

ଗ୍ରେପଡ଼ା : ଶସ୍ତା କ'ଣ ? ଆପଣ ତ ଆକାଶିଆ ଭାଉ ଶୁଣେଉଛନ୍ତି । ଆରେ ଭାଇ, ଗୋଟା ରେଜନେବୁଲ କଥା କହ ।

ଶରନ : ମୂଲ କରିବାରେ କ'ଣ ଅଛି ? ଆପଣ ତ ଏଯାଏ କିଛି ଦେଇ ନାହାନ୍ତି । ମାଲିକର ଜିନଷ; ସେ ଲକ୍ଷେ ମାଗିଦେଇପାରେ । ଆପଣ ହେଲେ ଖରିଦ୍‌ଦାର; ଇଚ୍ଛାକଲେ କଉଡ଼ି ମୂଲ କରିପାରନ୍ତି । ଏଥିରେ ବିରକ୍ତ ହେବାର କ'ଣ ଅଛି ? ସମସ୍ତେ ନିଜ ଶକ୍ତି ମୁତାବକ କାମ କରନ୍ତି । ଥରେ ଆପଣ ଘରଟାକୁ ଦେଖିନିଅନ୍ତୁ ନା । ତା'ପରେ ଯାଇ ମୂଲଚାଲ୍ କରିବାକୁ ସୁବିଧା ହେବ ।

ଗ୍ରେପଡ଼ା : ଏ କଥାଟା ଆପଣ ଠିକ୍ କହିଲେ । ଏଣିକି ମୁଁ ମୋ ପୁଅକୁ ଅଲଗା ବିଜନେସ୍ କରାଇବି ବୋଲି ଭାବୁଚି । ସେ ଏଇ ବର୍ଷ ବି. ଏ. ପାଶ୍ କଲା ।

ଶରନ : କାହିଁକି କରେଇବେନି, କରାନ୍ତୁ । କାମ କରିବା ଉଚିତ । କିନ୍ତୁ ଅଲଗା କରାଇବାର ଆବଶ୍ୟକତା କ'ଣ ଅଛି ? ସେ ବିଚାରା ଏବେ ଅନଭିଜ୍ଞ ଅଛି-- ପିଲାଲୋକ । ଆପଣ ମାନନ୍ତୁ ବା ନ ମାନନ୍ତୁ, ହେଲେ ମୁଁ ଏହା ନିଶ୍ଚୟ କହିବି ଯେ, ତାଙ୍କର ଏ ସମୟଟା

ବଡ଼ ସୁକୁମାର । ଠିକ୍ ହେବ, ଯଦି ଆପଣ ତାଙ୍କୁ ଆଉ ଆଗକୁ ପଢ଼ାନ୍ତୁ କିମ୍ବା ଚାକିରିରେ ମୁକରର୍ କରାଇଦିଅନ୍ତୁ ।

ଗେୟପଡ଼ା : ଚାକିରି-ବାକିରି ମିଳିବା କ'ଣ ଆଜିକାଲି ସହଜ ହୋଇଛି ?

ଶରନ : ନିଅ,—ଆପଣଙ୍କ ପୁଅଙ୍କ ପାଇଁ ପୁଣି ଚାକିରି ଅଭାବ ରହିବ ? ଆପଣଙ୍କ ଧାଉଡ଼ କୋଉଠାଏ ନାହିଁ ଭଲା ? ଯେଉଁଠି ଇଚ୍ଛା ସୁପାରିଶ କରି ନିଯୁକ୍ତ କରିଦେଇପାରିବେ ଆପଣ ।

ଗେୟପଡ଼ା : ଆପଣ ବି ବଡ଼ ବୋକା । ବିଜିନେସ୍ ଆଗରେ ଚାକିରି ଗୋଟା କି ଜିନିଷ ?

ଶରନ : ଏ କଥାଟା ଆପଣ ଠିକ୍ କହିଲେ । କିନ୍ତୁ···ଖରାପ ଭାବିବେ ନାହିଁ—ଆଜିକାଲିକାର ପିଲା ରୋଜଗାର କରି ମା'-ବାପଙ୍କୁ ଖୁବ୍ କମ୍ ଭରଣ-ପୋଷଣ କରୁଛନ୍ତି । ଆପଣ ମୋର ବନ୍ଧୁ; ସେଥିପାଇଁ ଏସବୁ କହୁଛି···

ଗେୟପଡ଼ା : ବାଃ ସରଦାର ଜୀ ! ମୋ ପୁଅ ମୋ ସାମନାରେ ମୁଣ୍ଡ ଟେକି ଚାଲିବାକୁ ସାହସ କରେ ନାହିଁ ।

ଶରନ : ତେବେ ଠିକ୍ ଅଛି । ମୁଁ ଗୋଟାଏ କାମ କହିବି—ନିଜ ବନ୍ଧୁର କଥା ରଖିବେ ନା ? କାମଟା ବି ଖୁବ୍ ଆଟ୍‌ରାକ୍ଟିଭ୍—ରାଜକୀୟ ।

ଗେୟପଡ଼ା : ହିଁ-ହିଁ, କୁହନ୍ତୁ ।

ଶରନ : ତା'ହେଲେ ଶୁଣନ୍ତୁ । ଏ ଘରଟା ରଣଜିତ୍ ନାଁରେ କିଣିଦିଅନ୍ତୁ । ଲୋକମାନେ କ'ଣ ଘର ବ୍ୟବସାୟ କରୁନାହାନ୍ତି ?···ଆଉ ମୁଁ ମଧ୍ୟ ଭଲ ବେଉସା କଟେଇ ଦେଉଥିବି ।

ଗେୟପଡ଼ା : (ଭାବିଚିନ୍ତି) ହୁଁ, ଆପଣ ଠିକ୍ କଥା କହୁଛନ୍ତି । ଏକଥାଟା ବି ମୋ ମନକୁ ପାଉଛି ।

ଶରନ : ତେବେ ସଉଦା କରନ୍ତୁ । ଆପଣ ଏଇଠି ଥାଆନ୍ତୁ···ଟିକିଏ ଏଇ ସାମ୍ନା ହୋଟେଲ୍‌ରେ ଅପେକ୍ଷା କରନ୍ତୁ । ଘରମାଲିକ ସାଙ୍ଗରେ କଥାବାର୍ତ୍ତା କରି ମୁଁ ଏବେ ଆପଣଙ୍କ ସାମ୍ନା-ସାମ୍ନି କରେଇଦେଉଛି ।

ଗେୟପଡ଼ା : ହେଲେ ଆପଣ ତ ବହୁତ ଦାମ୍ କହୁଛନ୍ତି ।

ଶରନ : ଆପଣ ଘର ଭିତରୁ ଦେଖିଲେ ଜାଣିବେ ଯେ ଜିନିଷଟା କେମିତିଆ । ବଡ଼ ମନରେ ଏ ଘର ତିଆରି ହୋଇଛି । ଆପଣ ତ ଜାଣିଥିବେ—ମୁହଁରେ ମାଗିଦେଲେ ମରଣ ହୋଇଯାଏ ନାହିଁ । ଆପଣ ନିଶ୍ଚିନ୍ତ ରୁହନ୍ତୁ, ଦରଦାମ କଥା ମୁଁ ନିଜେ ସ୍ଥିର କରିଦେବି । ଏ ଘରର୍ ମାଲିକଆଣୀ ଜଣେ ଖୁବ୍ ଫନ୍ଦେବାଜ ସ୍ତ୍ରୀଲୋକ । ତାକୁ ମଧ୍ୟ ବୁଝାଶୁଝା କରିବାକୁ ପଡ଼ିବ । ତାର ତ ଏ ଘରଟା ଜୀବନଠାରୁ ଅଧିକ ପ୍ରିୟ ।

ଗେୟପଡ଼ା : ସେ କଥା ଏଣିକି ଆପଣ ଜାଣନ୍ତୁ ।

ଶରନ : ନିଶ୍ଚୟ, ନିଶ୍ଚୟ । ଏଇଟା ତ ମୋ କାମ । କୋଉ କଥାପାଇଁ ମୁଁ ଦଲାଲି ନେବି ମ ? (ଗୋଟାଏ ପଟେ ଦାହାରିଗଲା) ।

ଦ୍ୱିତୀୟ ଦୃଶ୍ୟ

କଣନ ଦେବୀଙ୍କ ଘରର ବୈଠକ ରୁମ

[କୋଠରିର ସାଜସଜ୍ଜାରୁ ନିମ୍ନ-ମଧ୍ୟବିତ୍ତ ପରିବାରର ଘରଭଳି ଲାଗେ । ମାମୁଲି ଆସବାବ-ପତ୍ର; ମାତ୍ର ସେସବୁ ସଫାସୁତୁରା । ସାମନା ସେଲ୍‌ଫ୍‌ରେ କିଛି ବହିପତ୍ର । ଗୋଟାଏ ପଟେ ଖଟଟିଏ ପଡ଼ିଛି, ଯାହାର ଆଗକୁ ଦୁଇଟି ଚଉକି ଅଛି । ପରଦା ଉଠିଲାବେଳକୁ ଦେଖାଗଲା କଣନ ଦେବୀ କୋଠରିର ଜିନିଷପତ୍ର ଓ ଫର୍ନିଚର ଆଦିକୁ ସଫା କରୁଛନ୍ତି । ସେ ସାଧାରଣ ପୋଷାକପରିହିତା ଅଧାବୟସର ସ୍ତ୍ରୀଲୋକ । ବୋଧହୁଏ ଘରକାମରେ ଲାଗିଥିବା ଯୋଗୁ ପରିଧାନ ସାଧାରଣ ଧରଣର ହୋଇଛି ।]

କଣନ ଦେବୀ : (ସେଲ୍‌ଫ୍‌ରେ ଥିବା ବହିଗୁଡ଼ିକୁ ପୋଛି ପୋଛି) ହୁଁ, କେତେ ମଇଳା ଜମିଗଲାଣି ଏ ବହିଗୁଡ଼ା ଉପରେ ।...ସୁଦର୍ଶନ—ଏ ସୁଦର୍ଶନ !

ସୁଦର୍ଶନ : (ସତର-ଅଠର ବର୍ଷର ଯୁବକ । ପ୍ରବେଶ କରି) ମତେ ଡାକିଲ ମାଆ ?

କଣନ ଦେବୀ : ପୁଅ, ତୁ ନିଜ କୋଠରି ସଫା କରୁନୁ । ଦେଖୁନୁ, କେମିତି ତୋ ବହି-ଗୁଡ଼ାକ ଧୂଳିରେ ଆଣ୍ଠିଏ ହୋଇ ପଡ଼ିଚି ।

ସୁଦର୍ଶନ : ମାଆ, ମୁଁ ତ ଏବେ ବଜାରରୁ ଫେରୁଚି ।

କଣନ ଦେବୀ : ହଁ, ଏଇନା ତ ମୁଁ ପାସୋରିଯାଉଥିଲି । ଘର ସଫା କରୁ କରୁ ମୁଁ ଯେମିତି ପାଗଳ ହୋଇ ଯାଉଚି । ଟିକିଏ ଧ୍ୟାନ ନ ଦେଲେ ଧୂଳିମଳିରେ ଘରର ଚେହେରା ବଦଳିଯାଉଛି ପରା !

ସୁଦର୍ଶନ : ତମେ ତ ସାରା ଦିନ ଏମିତି ଲାଗିଛ ।

କଣନ ଦେବୀ : ଖାଲି ଏମିତି ଲାଗିରହିଚି ? ଟିକେ ଯାଇକରି ଦେଖ ତ, ଉପର ବୈଠକ ଘରର ଚଟାଣଟା କେମିତି ଚମକୁଚି । ଦେଖିଲେ ମନ ଖୁସି ହୋଇଯାଉଚି । ତା' ଛଡ଼ା ମୁଁ ତ କାହାରି ପ୍ରତି କୃପା କରୁନାହିଁ । ନିଜ କାମ ହିଁ କରୁଚି । (ଦରଜାରେ ଆଘାତ ଶୁଣାଗଲା) ଟିକିଏ ଦେଖ ତ ସୁଦର୍ଶନ, କିଏ ଡାକୁଚି ?

[ସୁଦର୍ଶନ ବାହାରକୁ ଗଲା । କଣନଦେବୀ ବହିପତ୍ରଗୁଡ଼ିକୁ ସଜେଇ ଠିକ୍ ଜାଗାରେ ରଖୁଥିଲେ ଏବଂ ଖଟ ଉପରେ ବିସ୍ତୃହୋଇଥିବା ଚଦରକୁ ଠିକ୍ କରୁଥିଲେ । ସୁଦର୍ଶନ ଭିତରକୁ ଆସିଲା ।]

ସୁଦର୍ଶନ : ମାଆ, ଦଲାଲ ଶରନ ସିଂହ ଆସିଛନ୍ତି ।

କଣନ ଦେବୀ : (ମୁହଁରେ କ୍ରୋଧର ସଙ୍କେତ ଭରିଦେଇ) ପୁଣି ଆସିଗଲା ବିପଦ । ଏ ଦଲାଲଗୁଡ଼ାକ କିଛି କମ୍ ଚଢ଼ୋଉଛନ୍ତି ! କେହି ନା କେହି ମନ ବିରକ୍ତ କରିବାକୁ ଆସି ପହଞ୍ଚି-ଯାଉଛନ୍ତି ।

(ଶରନ ସିଂହର ପ୍ରବେଶ ।)

ଶରନ : ନମସ୍କାର ଭଉଣୀ ।

କାଶନ ଦେଵୀ : (କ୍ରୋଧରେ) ତମେ ପୁଣି ଆସିଗଲ ? ମୁଁ ତମକୁ କେତେଥର କହିସାରଲଣି, ମୁଁ ଘର ବିକିବି ନାହିଁ—ବିକିବି ନାହିଁ, ବିକିବି ନାହିଁ । ମତେ କ'ଣ ବାଧ୍ୟ କରିବ ? ଜବରଦସ୍ତି କରିବ ?

ଶରନ : ଭଉଣୀ ! ଆପଣ ତ ଖୁଛାଟାରେ ନାରାଜ ହେଇ ଯାଉଛନ୍ତି । ମୁଁ କିଛି କହିଲଣି ?

କାଶନ ଦେଵୀ : ତମେ ମୋ ସାଙ୍ଗରେ ବିକ୍ରି ବଟା ପାଇଁ କଥା ହେଇଯାଇଥିଲ ନା ଆଗରୁ ! ଦି ମାସ ଯାଏ ମୁହଁ ଦେଖେଇଲ ନାହିଁ । ମୁଁ କେତେଥର ତମୁକୁ କହିସାରଲଣି, ଏବେ ମୋର ଘର ବିକିବାର ପ୍ରଶ୍ନ ନାହିଁ ! ମାତ୍ର ତମ ଭଳି ଦଲାଲମାନେ, କେଉଁଥିରେ ଗଡ଼ା କେଜାଣି— ବେକାରରେ ମୋ ମୁଣ୍ଡ ଗରମ କରୁଚ କେଉଁଥିପାଇଁ ଆସି ?

ଶରନ : ଆପଣ ଟିକେ ବସିଲେ ଆଗ । ମୋ କଥା ଟିକେ ଶୁଣନ୍ତୁ ।

କାଶନ ଦେଵୀ : କ'ଣ ଶୁଣିବି ମୁଁ ? କେହି ଶୁଣିବାବାଲା ଥିଲେ ସିନା ! ବୁଲି ବୁଲି ତମମାନଙ୍କର ଗୋଡ଼ କେମିତି ଥକି ନ ପଡ଼ୁଚି କେଜାଣି ! ପାଞ୍ଚ-ସାତ ଦିନ ପରେ ପୁଣି ଆସି ପହଞ୍ଚି ଯାଉଛ ।

ଶରନ : ଆପଣ ତ ମୋ କଥା ମୋଟେ ଶୁଣୁନାହାନ୍ତି । ଆପଣ ଘର ବିକିଦିଅନ୍ତୁ, ମୁଁ ଏକଥା କହିବାକୁ ଆସି ନାହିଁ, ଆପଣ ବିକନ୍ତୁ ବା ନବିକନ୍ତୁ—ଇଏ ଆପଣଙ୍କର ମର୍ଜି । ମାତ୍ର ମୁଁ ଆପଣଙ୍କର ଯଦି କିଛି କାମରେ ଆସିପାରେ, ଯଦି ମୁଁ ଆପଣଙ୍କର କୌଣସି ସେବାରେ ଲାଗିପାରେ, ତେବେ ମୁଁ ହାଜର ଅଛି ।

କାଶନ ଦେଵୀ : (ଟିକିଏ ଶାନ୍ତ ହୋଇ) ତା'ହେଲେ ପୁଣି କୋଉ କଥାପାଇଁ ଆସିଚ ?

ଶରନ : ଭଉଣୀ ! ସେ କଥା ନୁହେଁ ଯେ···(କଥା ବଦଳାଇ) ବୋଧହୁଏ ଆପଣଙ୍କୁ ଜଣାଥିବ ଯେ ମୁଁ କରୋଲବାଗ୍‌ରେ ରହୁଚି । ଆପଣଙ୍କ ଦୟାରୁ ସେଠି ମୋର ଘର ଅଛି । ମୋର ଦିଇଟା କୋଠରିର ଚଟାଣ ଉଠିଯାଇଚି ଏବଂ ଏବେ ସେଠି ନୂଆ ଚଟାଣ ପକାଉଚି । ମୁଁ ଆପଣଙ୍କ ଭାଉଜକୁ କହିଦେଇସାରିଚି ଯେ, ଆପଣଙ୍କ ଚଟାଣ ବହୁତ ବଢ଼ିଆ ହେଇଚି । ଏବେ ସେ ପ୍ରତ୍ୟେକ ଦିନ ମୋ ଜୀବନ ଖାଉଚି—ଚାଲ, ମୋତେ ଦେଖେଇ ଆଣ । କାରଣ ଆମେ ସେମିତି ଚଟାଣ ତିଆରି କରିବା ।

କାଶନ ଦେଵୀ : (ଟିକିଏ ଖୁସି ହେଇ) ତା'ହେଲେ ଆପଣ ସାଙ୍ଗରେ ଆଣିଲେନି ?

ଶରନ : ମୁଁ ଭାବିଲି, ଆଗ ଆପଣଙ୍କ ସାଙ୍ଗରେ କଥା ହେଇସାରେ । ବିନା କୁହାପୋଛାରେ କାହା ଘରେ ଅତିଥି ହେଇଯିବା ମୋଟେ ଭଲ ନୁହେଁ ।

କାଶନ ଦେଵୀ : କିଛି କଥା ନାହିଁ । ଇଏ ଆପଣଙ୍କ ନିଜ ଘର । ବଡ଼ ଖୁସି ହେବି ଆସିଲେ ।

ଯେତେବେଳେ ଇଚ୍ଛା ଆସନ୍ତୁ ।

ଶରନ : ମୁଁ ସବୁସମୟରେ ଭଲ ଘର ସଉଦା କରାଇଦଉଛି ; ମାତ୍ର ଏମିତି ସଫାସୁତୁରା ସୁନ୍ଦର ଏବଂ ଡିଜାଇନ୍‌ର ଚଟାଣ ମୁଁ ଆପଣଙ୍କ ଘରଛଡ଼ା ଅନ୍ୟ କେଉଁଠି ଦେଖିନି ।

କଣନ ଦେବୀ : ଆରେ ଭାଇସାହେବ ! ମୁଁ ଏ ଘରକୁ ନିଜ ରୁଚି ଅନୁଯାୟୀ ତିଆରି କରାଇଛି । ନିଜେ ସାମ୍ନାରେ ଠିଆ ହୋଇ ମନକୁ ଗଲାଭଳି ଚଟାଣ ତିଆରି କରାଇଛି । ସୁଦର୍ଶନର ବାପାଙ୍କର ମଧ୍ୟ ସୁନ୍ଦର ସୌଖିନ ଘର ତିଆରି କରିବାକୁ ଭାରି ସଉକ ଥିଲା ।

ଶରନ : ଆଜ୍ଞା ହଁ, ମୁଁ ଜାଣେ । ତାଙ୍କର ମୋର ନିବିଡ଼ ସମ୍ପର୍କ ଥିଲା । କେଡ଼େ ଆନନ୍ଦରେ ସେ ଘର ତିଆରି କରେଇଥିଲେ । କିନ୍ତୁ ବିଚାରା ତା'ର ସୁଖ ଭୋଗ କରିବାକୁ ସୁଯୋଗ ପାଇଲେ ନାହିଁ । ଯାଉ, ତାଙ୍କର ପିଲାଛୁଆ ଖୁସିରେ ରୁହନ୍ତୁ । ଏବେ ତ ପୁଅ ବଡ଼ ହୋଇ ଗଲାଣି । —କ'ଣ ନାଁ ଆପଣଙ୍କ ପୁଅର ?

ସୁଦର୍ଶନ : ଆଜ୍ଞା, ସୁଦର୍ଶନ ।

ଶରନ : କେଉଁ ଶ୍ରେଣୀରେ ପଢ଼ୁଛ ?

କଣନ ଦେବୀ : ସୁଦର୍ଶନ ଏବର୍ଷ ପ୍ରଥମ ଶ୍ରେଣୀରେ ମାଟ୍ରିକ ପାଶ୍ କରିଛି ।

ଶରନ : ସାବାସ୍, ସାବାସ୍ ! ତା'ହେଲେ ଭଉଣୀ, ମୁଁ ଅଭିନନ୍ଦନ ଜଣାଉଛି, ବଧେଇ ଜଣାଉଛି । ସତେରେ, ଭାରି ଖୁସି କଥା । ଯେତେହେଲେ ମୋ ସାଙ୍ଗର ପୁଅ ତ ! ମୋ ମନକୁ ପଚାରନ୍ତୁ, ଏତେ ଖୁସି ଆପଣ ହେଉ ନ ଥିବେ— ଯେତେ ମୁଁ ଖୁସି ହେଉଛି ।

କଣନ ଦେବୀ : ତୁମକୁ ମଧ୍ୟ ବଧେଇ ଜଣାଉଛି । କ୍ଷମା କରିବ, ମୁଁ ତୁଚ୍ଛାଟାରେ ତୁମ ଉପରେ ବିରକ୍ତ ହେଉଥିଲି ।

ଶରନ : ଏଥିରେ ଆପଣଙ୍କର କୌଣସି ଦୋଷ ନାହିଁ ଭଉଣୀ ! ଯେତେହେଲେ ମୁଁ ପ୍ରପର୍ଟି ଡିଲର ଜନା !

କଣନ ଦେବୀ : ମୂଳ କଥା ହେଲା, ଆଉ ଦଇଟା ଦଲାଲ ଅଛନ୍ତି, ଯେଉଁମାନେ କେବେ କେବେ ଏଠି ଆସି ହାବୁଡ଼ ଯାଉଛନ୍ତି । ବାରଂବାର ଗୋଟାଏ କଥା ଶୁଣି ଶୁଣି ମଣିଷର ମନ ବିରକ୍ତ ହୋଇ ଉଠୁଚି ।

ଶରନ : ଏଇଟା ହେଲା ତାଙ୍କର ଅବୁଝାପଣିଆ । ଯୋଉ କଥା ଥରେ ହେଇଗଲା, ପୁଣି ସେଥିରୁ ରସ ଚପୁଡ଼ିଲେ କ'ଣ ମିଳିବ ? ଆମେ ପରା ସବୁଦିନେ ଡାଲିଭଳି ଗୋଟାଏ ଜିନିଷକୁ ଖାଇପାରୁନେ । ବଦଳା-ବଦଳି କରି ଘରେ ଡାଲି କରୁଚେ ।

କଣନ ଦେବୀ : (ହସି ହସି) ସତ କଥା, ଠିକ୍ କହୁଚ ।

ଶରନ : ସବୁବେଳେ ନୂଆ ବିଚାର, ନୂଆ କଥା, ନୂଆ ଡିଜାଇନ୍, ନୂଆ ଫେସନ, ନୂଆ

ପ୍ରକାରର ମୂଲ୍ୟବୋଧ ସୃଷ୍ଟିହେଉଛି । ସାରା ସଂସାର ନବୀନତା ପାଇଁ ପାଗଳ ହୋଇ ଘୂରୁଛି । ପୁଣି ଇଏ କୋଉ ଅଘଟଣ କଥା ନୁହେଁ ଯେ, ଆପଣ ମୋ ଭଳିଆ ପୁରୁଣା ଜମାନାର ଦଲାଲର ଶସ୍ତା କାନ୍‌ଭାସିଙ୍ଗ୍‌ରେ ଭୁଲିଯିବେ ।

କାଶନ ଦେବୀ : ଆରେ, ମୋର ମୋଟେ ଖିଆଲ ନାହିଁ । ଚା'-ପାନି କିଛି କହିବି ନା ? ବାହାରେ ଖରାରେ ବୁଲି ବୁଲି ଆସିଛ ?

ଶରନ : ନା-ନା—ମୋତେ ସେମିତି ଶୋଷ-ଫୋଷ ନାହିଁ ।

କାଶନ ଦେବୀ : ପୁଅ, ଯାଅ ତ । ମାମୁଙ୍କ ପାଇଁ ସରବତ କରି ଆଣିବୁ ।

ସୁଦର୍ଶନ : ହଉ, ମାଆ ! (ପ୍ରସ୍ଥାନ)

(ଗୋଟାଏ ମିନିଟ୍ ନୀରବତା)

ଶରନ : ସୁଦର୍ଶନ କେତେ ଛୋଟ ଥିଲା ଯେତେବେଳେ ତା'ର ବାପା ମରିଗଲେ ।

କାଶନ ଦେବୀ : ସେତେବେଳେ ଆଠ ବର୍ଷର ହୋଇଥିଲା ।

ଶରନ : ଏବେ ଜାଣିବା-ଶୁଣିବା ପିଲା ହୋଇଗଲାଣି । ମାଟ୍ରିକ ପାଶ କରିଗଲାଣି । ଆଜି ଯଦି ତା'ର ବାପ ଥାଆନ୍ତେ, ତାକୁ ଦେଖି କେତେ ଖୁସି ହୋଇ ନ ଥାନ୍ତେ !

କାଶନ ଦେବୀ : (ଦୀର୍ଘ ନିଃଶ୍ୱାସ ଛାଡ଼ି) ସତ କଥାରେ ଭାଇ ! 'କପାଳ ଲିଖନ କେ କରିବ ଆନ'—ଲୋକେ କଥାରେ କହନ୍ତିନି : ଇଏ ସେଇଆ !

ଶରନ : ଦୁଃଖ ଲାଗୁଛି ।

କାଶନ ଦେବୀ : ଛାଡ଼, ବେଳ ପଡ଼ିଲେ ସବୁ ହେବ । ଧରିନିଅ ସେ ହିଁ ହତଭାଗ୍ୟ ଥିଲେ —ଯିଏ ଏଇ ହସ-ଖୁସିର ବଗିଚାକୁ ଛାଡ଼ି ଚାଲିଗଲେ ।

ଶରନ : ମୋ ସାଙ୍ଗରେ ତାଙ୍କର ଖୁବ୍ ଭଲ ସମ୍ପର୍କ ଥିଲା । ସେ ମୋର ସହପାଠୀ ଥିଲେ । ଏକାସାଙ୍ଗରେ ଖେଳିଚୁ ପଢ଼ିଚୁ ; ବଡ଼ ମେଳାପୀ ସ୍ୱଭାବର ଲୋକ ।

କାଶନ ଦେବୀ : ତାଙ୍କ ପ୍ରଶଂସା ତ ସାରା ଦୁନିଆ କରୁଛି ।

ଶରନ : କହନ୍ତିନି ଭଲ ମଣିଷକୁ ଭଗବାନ ଆଗ ନେଇଯାଆନ୍ତି । ବୋଧହୁଏ ସିଆଡ଼େ ତାଙ୍କର ଦରକାର ପଡ଼େ !

(ସୁଦର୍ଶନ ସରବତ ଗିଲାସ ନେଇ ପ୍ରବେଶ କଲା ।)

ସୁଦର୍ଶନ : ନିଅନ୍ତୁ ସର୍ଦ୍ଦାରଜୀ, ସରବତ ଗିଲାସ ନିଅନ୍ତୁ !

କାଶନ ଦେବୀ : ନିଅ, ପିଅ ।

ଶରନ : (ଗିଲାସ ଧରି) ଆପଣ ଭୁଲ୍ଲାଟାରେ କଷ୍ଟକଲେ ଭଉଣୀ !

କାଶନ ଦେବୀ : ନିଅ । ପାଣି ଦେବାରେ କୋଉ କଷ୍ଟ କରିବାକୁ ପଡ଼େ !

(ଶରନ ସିଂହ ସରବତ ପିଇ ଖାଲି ଗିଲାସ ଫେରାଇଲେ ।)

ଶରନ : ନେ ପୁଅ, ଗିଲାସ ରଖ, ନେ ।

ସୁଦର୍ଶନ : ଆଉ ଆଣିବ ?

ଶରନ : ନା ପୁଅ ଆଉ···(ଗଳା ସଫାକରି) ତେବେ ଏଇନା ସୁଦର୍ଶନଙ୍କୁ କୋଉ କଲେଜରେ ଆପଣ ଭର୍ତ୍ତି କରାଉଛନ୍ତି ?

କଣନ ଦେବୀ : ସେଇ କଥା ତ ଭାବୁଚ, କ'ଣ କରିବ ? ଆଗକୁ ପଢ଼ାଇବା ପାଇଁ ତ ବହୁତ ପଇସାପଇସା ଦରକାର । ଗୋଟାଏ ଘରର ଭଡ଼ା କେବଳ ମିଳୁଚି ତ !

ଶରନ : ଆଉ ପୁଣି ୧୨-୧୪ଟା କ୍ଲାସ ପାଶ କଲେବି ଚାକିରି କେଉଁଠି ଅବା ମିଳୁଚି ?

ସୁଦର୍ଶନ : ଆଜ୍ଞା, ଚାକିରି ପାଇଁ ମୁଁ ଚେଷ୍ଟାକରୁଚି । ଆଜି ମଧ୍ୟ ଇଣ୍ଟରଭିଉକୁ ଯାଇଥିଲି ।

ଶରନ : ପୁଅ, ଇଣ୍ଟରଭିଉ ତ କେତେଥର ଚକ୍କର ଦେବାପାଇଁ ହୁଏ । ଲୋକ-ଦେଖାଣିଆ ବା କେବଳ କାଗଜପତ୍ର କାରବାର ପାଇଁ ହୁଏ । ତା' ବ୍ୟତୀତ ବଡ଼ ବଡ଼ ଲୋକଙ୍କ ସୁପାରିଶରେ ଲୋକ ତ ଆଗରୁ ବଷ୍ଟ ହୋଇ ସାରିଥା'ନ୍ତି ।

କଣନ ଦେବୀ : ତା'ହେଲେ ଇଏ ତ ଖିଡମତ ଠକାମି ଧନ୍ଦା !

ଶରନ : ନୁହେଁ ତ ଆଉ କ'ଣ ? ଆପଣ ପୁଅକୁ ଉପର ଶ୍ରେଣୀଯାଏ ପଢ଼ାନ୍ତୁ—ଯଦ୍ଦ୍ୱାରା ସେ ସିଧା ବହୁତ ବଡ଼ ଅଫିସର, ଡାକ୍ତର, ବାରିଷ୍ଟର, ଜଜ୍ ବା ଇଂଜିନିଅର ହୋଇଯିବ ଏବଂ ନିଜେ ମଣିଷ ଭଳି ମଣିଷଟାଏ ହେଇ ପାରିବ । ନ ହେଲେ ଧକ୍କା ଖାଇବା କଥା ହିଁ ହେବ । ପୁଣି ଆଜିକାଲି ବେକାର ଏତେ ବଢ଼ିଗଲେଣି ଯେ, ବି. ଏ. ପାଶ କରି ଶ୍ରେଷ୍ଠ ଶ୍ରେଷ୍ଠ ଚାକିରି ପାଇଁ ବିକଳ ହେଉଛନ୍ତି ।

କଣନ ଦେବୀ : ତା'ହେଲେ ସୁଦର୍ଶନ, କହ—କ'ଣ ପଢ଼ିବୁ ?

ଶରନ : ଭଉଣୀ, ମୁରବୀଙ୍କର ମୁଣ୍ଡରେ ସିନା ବୋଝ । ଉପର ଶ୍ରେଣୀରେ ପଢ଼ିବା କୋଉ ଏବେ ସହଜ କଥା । ଖର୍ଚ୍ଚ କଥା ଭାବିଲେ ମୁଣ୍ଡ ଘୂରିଯାଉଚି । ଆପଣ ମୋ କଥା ଯଦି ମାନିବେ, ତେବେ କହିବି ପୁଅକୁ କୌଣସି ବେପାରରେ ଭର୍ତ୍ତି କରି ଦିଅନ୍ତୁ ।

ସୁଦର୍ଶନ : ମାଆ, ସେଇଆ କର ।

କଣନ ଦେବୀ : କାମଦାମର କୌଶଳ ତତେ ଏବେ କ'ଣ ଜଣା ! ତୁ ତ ଏଇନା ଗ୍ରେଷ୍ଟ ପିଲାଟା ।

ଶରନ : ନିଜେ ପଡ଼ିଉଠି ସବାର ହେବା ଶିଖିଯିବ । ଏ ଜଗତରେ ଏମିତି କିଏ ଅଛି ଯେ ସବୁକଥା ଆଗରୁ ଶିଖି ଆସିଛି । ଆପଣମାନଙ୍କ ପାଖରେ ଏବେ ଏତେବଡ଼ ଘର ଅଛି; ତାକୁ ବିକି ପଇସା ହାତପେଠ କର ଏବଂ ପୁଅକୁ କୌଣସି କାମରେ ଲଗେଇଦିଅ । ଲୋକେ କହନ୍ତିନି, ସୁନା ଭାଙ୍ଗିଲେ ଗଢ଼ିଲେ ସମାନ ।

କଣନ ଦେବୀ : (ଟିକିଏ ଜୋର୍‌ରେ) କିନ୍ତୁ ମୁଁ ଘର ବିକିବାକୁ ପ୍ରସ୍ତୁତ ନୁହେଁ । ନିଜ କୁଡ଼ିଆରେ ମୁଣ୍ଡ ଗୁଞ୍ଜି ବସିପାରୁଚି । ଭାଇ, ମୁ ତ ତୁମକୁ ପ୍ରଥମରୁ କହିସାରିଚି ଯେ ମୋର

ଘର ବିକିବାର ନାହିଁ ।

ଶରନ : ଓହୋ ! ତୁମେ ଭଉଣୀ ବଡ଼ ବୋକୀ ! ମୁଁ କେତେବେଳେ କହିଲି, ତମେ ଘରଟା ବିକିଦିଅ ବୋଲି ? ଏଇଟା ଏମିତି କଥା-କଥାରେ ବାହାରିପଡ଼ିଲା ନା, ମୋର କନ୍‌ଭିନ୍‌ସ୍ କରିବା ମତଲବ ନୁହେଁ । କିଛି ତରତର ହେବା ଦରକାର ନାହିଁ । ଟିକିଏ ବିଚାର ବିବେଚନା କରିନିଅ । ଚିନ୍ତା କରିବାଟାରେ କ'ଣ କ୍ଷତି ହେଉଚି ?

ସୁଦର୍ଶନ : ହଁ ମାଆ, ଏଥିରେ କ୍ଷତି ଅବା କ'ଣ ହଉଚି ?

ଶରନ : ଦେଖନ୍ତୁ, ଈଶ୍ୱର ମଣିଷକୁ ବିବେକ ଦେଇଛନ୍ତି । କ'ଣ ପାଇଁ ? ଭାବିବା-ଚିନ୍ତିବା ପାଇଁ ତ ! ତା'ଛଡ଼ା ଆପଣଙ୍କୁ ଆପଣଙ୍କ ପୁଅର ଭବିଷ୍ୟତ ଗଢ଼ିବାକୁ ହେବ । ଆପଣ ତାକୁ ରାସ୍ତା ଦେଖାଇବେ । ଆପଣଙ୍କର ତା ପ୍ରତି ସେବାଯତ୍ନ ରହିବା ଦରକାର । ମୋର ତ ଏଇ ରାଯ୍ନ । ଆପଣଙ୍କର ପୁଅ ଶ୍ରବଣକୁମାର ଭଳିଆ; ଆପଣଙ୍କର ମୋଟେ ଚିନ୍ତା କରିବା ଉଚିତ ନୁହେଁ । ପୁଅ କାମ ଧରିଗଲେନା, ସବୁ କିଛି ନିଜେ ଶିଖିଯିବ । କଥାରେ କହନ୍ତିନି, ସାପ ବଢ଼ିଲେ ଚିହ୍ନ ବଢ଼େ ।

କଣନ ଦେବୀ : କ'ଣ ସୁଦର୍ଶନ, କିଛି ଗୋଟା କାରବାରରେ ଲାଗିଗଲେ ଭଲ ।

ସୁଦର୍ଶନ : ଯାହା ତମ ଇଚ୍ଛା ।

ଶରନ : ବେପାର ପାଇଁ ତ ପୁଣି ପଇସା-କଉଡ଼ି ଦରକାର ହେବ । ଯଦି ଆପଣଙ୍କର ଘର ବିକି କରିବାର ନିଷ୍ପତ୍ତି ହୁଏ, ତେବେ ତ ଅଠର ହଜାର ଖଣ୍ଡେ ଟଙ୍କା ମିଳିଯିବ ।

କଣନ ଦେବୀ : (ରାଗରେ) ଅଠର ହଜାର ? ଆରେ ଭାଇ, ତୁମେ ତ ଆଚ୍ଛା କଥା କହୁଛ ! ଏଇ ଛଅମାସ ଆଗରୁ ଗୋଟାଏ ଦଲାଲ ବାଇଶି ହଜାର ଟଙ୍କା ମୂଲେଇଥିଲା, ଆଉ ସେ ପୁଣି ନେହୁରା-ନମତ ହେଇ କରି ।

ଶରନ : ହେଇପାରିଥାଏ । ମାତ୍ର ସେସବୁ ବେଳକାଳ ନେଇ କଥା ।

କଣନ ଦେବୀ : ମୁଁ ମଧ୍ୟ ବାଇଶି ହଜାରରୁ ଗୋଟାଏ ପଇସା କମ୍‌ରେ ଘର ବିକିବାକୁ ପ୍ରସ୍ତୁତ ନୁହେଁ ।

ଶରନ : ମୁଁ କେତେବେଳେ କହିଲି କି କମ୍ ନିଅ ବୋଲି ? ମୋର ମଧ୍ୟ ଚେଷ୍ଟା କରିବା ଦରକାର ଯେ, ଅଧିକରୁ ଅଧିକ ଭାଉ ବଢ଼ିଲେ ମୋ ଦଲାଲି ପାଉଣାଟା ଅଧିକ ମିଳିବ । କିନ୍ତୁ ମୁଁ ଏକଥା ନିଶ୍ଚିତ କହିବି ଯେ, କୌଣସି କଥାରେ ଗଣ୍ଠିକରି ବସିବା ଭଲ ନୁହେଁ । ସବୁ ସମୟରେ ତ ଆଉରିଆ ଗ୍ରାହକ ମିଳିବେ ନାହିଁ ··ସେ ଯାହାହେଉ, ଆପଣ ଭାବନ୍ତୁ । ମୁଁ ଯାଉଚି । ପୁଣି···

କଣନ ଦେବୀ : ନା-ନା, ମୁଁ ବାଇଶି ହଜାରରୁ ଗୋଟାଏ ପଇସା କମ୍ ନେବି ନାହିଁ ।

ଶରନ : (ଫେରିପଡ଼ି) ହଁ, ଆଉ ଗୋଟାଏ କଥା ମନେପଡ଼ିଗଲା । ଆପଣଙ୍କ ଘର

ଆଗରେ ଗୋଟାଏ କୂଅ ଥିଲା ନା ?

ସୁଦର୍ଶନ : ହଁ, କୂଅଟା ତ ଥିଲା ।

ଶରନ : ତା'ହେଲେ ତ ଲୋକଙ୍କର କହିବା କଥା ଠିକ୍ । କୂଅ ସାମ୍ନାରେ ଥିବା ଘରଟା ଅଶୁଭପ୍ରଦ ।

କଶନ ଦେବୀ : କିନ୍ତୁ ସେ କୂଅ ତ କେବେଠୁଁ ପୋତାହୋଇଗଲାଣି ।

ଶରନ : ସେଥିରୁ କ'ଣ ହେଲା ? ତାହାର ପ୍ରଭାବ ତ ରହିବ । କୂଅରେ କେତେ ପ୍ରକାରର ଭୂତ-ପ୍ରେତ ଓ ପିଶାଚମାନେ ଆଦି ରହନ୍ତି । ମୁଁ ବୁଝୁଚି, ସେଥିପାଇଁ ଆପଣ ଏ ଘରେ ସୁଖଭୋଗ କରିପାରିଲେନି ।

ସୁଦର୍ଶନ : (ଆଶ୍ଚର୍ଯ୍ୟରେ) ଭୂତ-ପିଶାଚ ଅଛନ୍ତି ନା କ'ଣ ?

କଶନ ଦେବୀ : ଯଥାର୍ଥରେ ଏଠି ମୁଁ ସୁଖ ଭୋଗି ନାହିଁ । ସୁଦର୍ଶନର ବାପ ମଲାବେଳକୁ ଏ ଘର ତିଆରି ହେବା ବର୍ଷେ ପୂରି ନ ଥିଲା ।

ଶରନ : ଗୁଡ଼୍, ବର୍ତ୍ତମାନ ମୋ ହାତରେ ଜଣେ ଗ୍ରାହକ ମଧ୍ୟ ଅଛି । ଏଇ ପାଖରେ ଅଛି । ମୁଁ ଅଧଘଣ୍ଟା ଭିତରେ ତାକୁ ଧରି ଆସୁଚି । (ଯିବାକୁ ଉଦ୍ୟତ ହେଲେ)

କଶନ ଦେବୀ : କିନ୍ତୁ ଭାଇ, ମୁଁ ତୁମକୁ କହିଦେଉଚି । ମୁଁ କମ୍ ନେବି ନାହିଁ ।

ଶରନ : (ଯାଉ ଯାଉ) ଆପଣ ଚିନ୍ତା କରନ୍ତୁ ନାହିଁ । ସୁଦର୍ଶନର ପିତାଙ୍କ ସାଙ୍ଗରେ ମୋର ଖୁବ୍ ଭଲ ସମ୍ବନ୍ଧ ଥିଲା । ଇଏ ତ ମୋ ନିଜ କାମ । (ପ୍ରସ୍ଥାନ)

କଶନ ଦେବୀ : କ'ଣ ସୁଦର୍ଶନ—ତା'ହେଲେ ଘର ବିକିଦେବା ?

ସୁଦର୍ଶନ : ଯେମିତି ତୁମ ଇଚ୍ଛା ! ହେଲେ ସେ ତ କହୁଛନ୍ତି ସାମ୍ନାରେ ଭୂତ-ପିଶାଚ ଆଦି ରହନ୍ତି । ମତେ ତ ଡର ମାଡ଼ିଲାଣି ।

କଶନ ଦେବୀ : ଯାଃ, ପାଗଳ ହେଲୁ କି ତୁ ! ଯୁଆନ୍ ପୁଅ ହୋଇକରି ଡରୁଚୁ ?···ହଁ, ତୋ ଇଣ୍ଟରଭ୍ୟୁରେ କ'ଣ ହେଲା ?

ସୁଦର୍ଶନ : ଏବେ କେମିତି ଜଣାପଡ଼ିବ ? କିନ୍ତୁ ଚାକିରି ମିଳିବାର ବିଶ୍ୱାସ ବିଲକୁଲ ନାହିଁ । ତାଙ୍କର ମୋଟେ ଆଠଜଣ ରଖିବାର କଥା । ମାତ୍ର ସେଠି ପଚିଶ ଜଣ ପହଞ୍ଚିଥିଲେ । ସେଥିରୁ କେତେଜଣ ବି. ଏ. ପାଶବାଲା ଥିଲେ ।

କଶନ ଦେବୀ : ତେବେ ଶରନ ସିଂହ ଠିକ୍ କଥା କହୁଥିଲା । ଘର ବିକି ତୁ କିଛି କାମ ଆରମ୍ଭ କରି ଦେ । କିନ୍ତୁ କି କାମ କରିବୁ ?

ସୁଦର୍ଶନ : ତମେ ଯାହା କହିବ ।

କଶନ ଦେବୀ : ତୁ ରୋଜଗାର କରିବସିଲେ କେତେ ଘର ତିଆରି କରିଦେବା । ତା'ପରେ ତୋର ବାହାଘର ମଧ୍ୟ ମୁଁ କରିଦେବି; ଆଉ ଟିକି ଲାଲ-ଟୁକୁଟୁକୁ ସୁନ୍ଦର ବୋହୂଟିଏ ବି ଘରକୁ ଆସିଯିବ । ମୁଁ ମରିବା ଆଗରୁ ନିଜ ମନସ୍କାମନା ପୂରା କରି ଯିବି ।

ସୁଦର୍ଶନ : (ଲଜ୍ଜା ସହିତ) ତେବେ ଠିକ୍ ଅଛୁ ମାଆ ! ନିଜର କିଛୁ ଗୋଟାଏ ବ୍ୟବସାୟ ଆରମ୍ଭ କରିନେଉଚ ।

କଣିକ ଦେବୀ : ହିଁ । ଭଗବାନ କେବେହେଲେ ତ ମୋ କଥା ଶୁଣିବେ । ଏମିତି ସୁନ୍ଦରୀ ରାଜକୁମାରୀ ଭଳି ବୋହୂ ମୁଁ ଆଣିବି ଯେ, ସେ ଭିତରେ ବସିଥିଲେ ବାହାର ବି ଉଜ୍ଜ୍ୱଳ ଦିଶିବ । ତା'ପରେ ମୋ ଘରକୁ ଶ୍ରେଷ୍ଠ ନାତି ଆସିବ । ଦିନରାତି ତାଆରି ସାଙ୍ଗରେ ଖେଳିବି । ମୋ ପାଇଁ ଈଶ୍ୱର ସୁଖର ଗଛ ରୋଇବେ ଯେ ।

(ଦରଜାରେ ଆଘାତ କରି ସଙ୍କେତ ହେଲା ।)

ସୁଦର୍ଶନ : ବୋଧହୁଏ, ମୁଁ ଭାବୁଚି ଶରନ ସିଂହ ଆସିଗଲା ।

ଶରନ : (ଭିତରକୁ ଆସି) ହଁ ଆଜ୍ଞା, ଅନୁମାନ ଏକବାର ଠିକ୍ । ମୁଁ ଆସିଚି । (ବଡ଼ ପାଟିରେ) ଭିତରକୁ ଆସିଯାଆନ୍ତୁ ଗ୍ରେପଡ଼ା ସାହେବ ।

(ଗ୍ରେପଡ଼ାଙ୍କର ପ୍ରବେଶ)

ଗ୍ରେପଡ଼ା : ନମସ୍କାର ।

କଣିକ ଦେବୀ : ନମସ୍କାର । ଆସନ୍ତୁ, ବସନ୍ତୁ ।

ଶରନ : ଗ୍ରେପଡ଼ା ସାହେବ ! ଇଏ ମୋ ନିଜ ଭଉଣୀର ଘର । ଏଇଟା ଡ୍ରଇଂରୁମ, ଆଉ ହେଇ ଦେଖନ୍ତୁ, ତା' ପଛକୁ ଶ୍ରେଷ୍ଠିଆ ବାଟଘରଟିଏ । ଆଉ ତା'ପଛକୁ ଆହୁରି ଗୋଟାଏ କୋଠରି । ଘରଟି ଷୋଳଗଜ ଲମ୍ବା ଏବଂ ଛ' ଗଜ ଚଉଡ଼ା ।

ଗ୍ରେପଡ଼ା : ୧୬ ଗଜ × ୬ ଗଜ ।

ଶରନ : ଅଢେଇ ମହଲା ଅଛୁ । ସେ ପୁଣି ଏମିତିଆ ଯେ ଦେଖିଲେ ପେଟ ପୂରିଯାଏ ।

କଣିକ ଦେବୀ : ମୁଁ ନିଜେ ପାଖରେ ଠିଆ ହୋଇ ଏ ଘର ନିଷ୍କାର ସହ ତିଆରି କରିଥିଲି । ଏ ଘର ନିଅଁରେ ତିନିଗଜ ଗମ୍ଭୀର ଯାଏ ମୁରୁମ ଗୋଡ଼ି କୁଟି କୁଟି ଦେଇଚି । ଆଉ ଚଟାଣ ଏମିତି ଚମକଦାର ହୋଇଚି ଯେ, ଚାହିଁଲେ ମୁହଁ ଦେଖାଯିବ । ଉପର କୋଠରି ତ ଏକବାର ପକ୍କା କାମ ହୋଇଚି ।

(ଗ୍ରେପଡ଼ା ଉଠିପଡ଼ି ଇଆଡ଼-ସିଆଡ଼କୁ, କାନ୍ଥକୁ, ସ୍ତମ୍ଭକୁ ଏବଂ ବାହାରକୁ ଦେଖିବାକୁ ଲାଗିଲେ ।)

ଶରନ : ତୁ ପୁଅ ବାବୁଙ୍କ ସାଙ୍ଗରେ ଯାଇ ଉପର କୋଠରିଗୁଡ଼ା ଦେଖାଇ ଆଣ ।

ଗ୍ରେପଡ଼ା : ଚାଲ ପୁଅ..., ସିଡ଼ି କୁଆଡ଼େ ?

ସୁଦର୍ଶନ : ଚାଲନ୍ତୁ ।

ଶରନ : ଇଆଡ଼େ ସିଡ଼ି ଗ୍ରେପଡ଼ା ସାହେବ, ଇଆଡ଼େ ।

(ସୁଦର୍ଶନ ଓ ଗ୍ରେପଡ଼ା ଭିତରକୁ ଚାଲିଗଲେ ।)

କଣିକ ଦେବୀ : ତାଙ୍କୁ ଦାମ କଥା ଶୁଣେଇଦେଇଚ ତ ଭାଇ ?

ଶରନ : ମୁଁ ତାଙ୍କୁ ବାଇଶି ହଜାର କଥା କହିଲି । ସେ ତ ସେଇଠି କାନରେ ହାତ ଦେଲେ । ମୁଁ କହିଲି, ଚାଲନ୍ତୁ ତ ଆଗ, ଭଉଣୀଙ୍କୁ ବୁଝେଇବି । କିଛି ନା କିଛି କମେଇ-ଦେବେ ।

କଣନ ଦେବୀ : ନାଇଁ-ନାଇଁ; ମୁଁ ଗୋଟାଏ ପଇସା ମଧ୍ୟ କମ୍ କରିବି ନାହିଁ ।

ଶରନ : ଏବେ ତାଙ୍କୁ ସାଙ୍ଗରେ ଆଣିବା ଦରକାର ଥିଲା । କାମ କରିବାକୁ ହେବ ତ ! ମୁଁ ଆପଣଙ୍କୁ ନ ପଚାରି ବାଇଶି-ଏକୋଇଶି ହଜାର କହିଦେଇଚି । ମୁଁ ଭାବିଲି, ମୋ କଥା ଭାଙ୍ଗିବ ନାହିଁ । ସେ ଅବା ଏବେ କୋଉ ମାନିଗଲାଣି ଯେ !

କଣନ ଦେବୀ : ଭାଇ ସାହେବ, କିଛି ବାଧ-ବାଧକତା ହେଉନି । ମୁଁ ମୋଟେ କମ୍ ନେବି ନାହିଁ ।

ଶରନ : ଏତେ ଧରିବସିଲେ ଚଳିବନି ଭଉଣୀ ! ଆପଣ ନିଜେ ଦେଖିନେଉନାହାନ୍ତି, ସାରା ବଜାର ଦିନକୁ ଦିନ ମାନ୍ଦା ପଡ଼ିଯାଉଚି । ଏମିତି କୋଉ ଜିନିଷ ଅଛି; ଯାହାର ମୂଲ୍ୟ କମିଯାଇନାହିଁ । ସୁନା, ରୁପା, ଗୁଡ଼, ଚିନି, ଘିଅ, ଗହମ ସବୁ ଜିନିଷର ଦାମ୍ ମାନ୍ଦା ହେଇଚି । ତିନି ମାସ ପୂର୍ବେ ଗୋଟାଏ ଘରକୁ ମୁଁ ବତିଶି ହଜାରକୁ ଲୋକ ଜୁଟେଇ ଦେଇଥିଲି । ସେତେବେଳେ ସେ ମାନିଲା ନାହିଁ । ଏବେ ସେ କହୁଛନ୍ତି ଯେ ଅଠେଇଶି ହଜାରକୁ ଯୋଗାଡ଼ କରିଦିଅ । ମାତ୍ର କୌଣସି ଗୋଟିଏ ହେଲେ ଗରାକ ପଚିଶି ହଜାରରୁ ଅଧିକ ଖର୍ଚ୍ଚ କରିବାକୁ ପ୍ରସ୍ତୁତ ନୁହଁନ୍ତି । କହୁନା, ମୁଁ କ'ଣ କରିବି ?

କଣନ ଦେବୀ : ତା'ହେଲେ ତୁମକୁ ଧରି ଲାଭ କ'ଣ ? —ଯଦି ପୂରା ଦାମ୍ ଦିଆଇ ନ ପାରିଲ ।

ଶରନ : କିନ୍ତୁ ଆପଣ ମଧ୍ୟ ଭାବନ୍ତୁ, କିଛି ବୁଦ୍ଧି-ବିଚାର କଥା କରିବା ଦରକାର—ଯେମିତିକି ଗ୍ରାହକ ଘଉଡ଼ି ନ ଯାଆନ୍ତୁ । ଏମିତି ନ ହେଉ, ଯେପରି ଦି'ମାସ ପରେ ଦର ପୁଣି କମି ନ ଯାଉ ।

କଣନ ଦେବୀ : (ବ୍ୟଙ୍ଗକରି) ହଁ, ଦାମ୍ ତ କମିବ ନିଶ୍ଚେ ।

ଶରନ : ଯଦି ଆପଣ କହିବେ,···କୋଡ଼ିଏ ହଜାର କହି ଦେଖିବି ?

କଣନ ଦେବୀ : ନା-ନା, କୋଡ଼ିଏ ହଜାର ବହୁତ କମ୍ ହେଉଚି ।

ଶରନ : ହଉ, ଚେଷ୍ଟାକରି ଦେଖିବି, ଯେମିତି ସାଢ଼େ କୋଡ଼ିଏ, ଏକୋଇଶିରେ ଦେପାରଟା ହେଇଯାଏ । ସେ ଆସିଲେ ଆପଣ ଭିତରକୁ ଚାଲିଯିବେ । ସେତିକିବେଳେ ତାଙ୍କ ସାଙ୍ଗରେ କଥା ହୋଇ ପାରିବ ।

କଣନ ଦେବୀ : ଏକୋଇଶି ହଜାରରୁ କମ୍ ବିଲ୍‌କୁଲ୍ କହିବନି ।

(ଗ୍ରେପଡ଼ା ଓ ସୁଦର୍ଶନଙ୍କର ପ୍ରବେଶ)

ଶରନ : ଆସନ୍ତୁ ଗ୍ରେପଡ଼ା ସାହେବ ! ଦେଖିଆସିଲେ ଆପଣ ?

କଣନ ଦେବୀ : ହଁ, ଭାଇ ! ଆପଣ କଥା ହୁଅନ୍ତୁ । ମୁଁ ସାଙ୍ଗେ ସାଙ୍ଗେ ଆସୁଚି । ଆରେ

ସୁଦର୍ଶନ, ତୁ ମୋ ସାଙ୍ଗରେ ଆ । (ଦୁହେଁ ଭିତରକୁ ଗ୍ୟଲଗଲେ)

ଶର୍ନ : କ'ଣ ଗ୍ରେପଡ଼ା ସାହେବ—ଘରଟା ଫାଷ୍ଟକ୍ଲାସ କି ନାହିଁ ? ଖାଣ୍ଟି ହାଗ୍, ହାଗ୍-ଖଣ୍ଡେ ।

ଗ୍ରେପଡ଼ା : ଗୁଡ଼, ଦିଶୁଚି ତ ଖୁବ୍ ଭଲ । ଏ ଘରର ମାଲିକ କିଏ ?

ଶରନ : ଏଇ ବିଧବା ସ୍ତ୍ରୀଲୋକର ଘର ଇଏ ।

ଗ୍ରେପଡ଼ା : ତାଙ୍କ ସ୍ୱାମୀଙ୍କର ନାମ କ'ଣ ?

ଶରନ : ତାଙ୍କ ନାଁ ?···ଆଜ୍ଞା; ତାଙ୍କ ନାଁ ମତେ ଜଣାନାହିଁ । ସେ ମୋର ପରିଚିତ ନ ଥିଲେ । ଗୁଡ଼ନ୍ତୁ, ଜଣାପଡ଼ିଯିବ । ସେଥିପ୍ରତି ଆପଣ ନିଶ୍ଚିନ୍ତ ରୁହନ୍ତୁ । ଏ ବେଉସାରେ କଳି-ତକରାଳ କରିବାବାଲା କେହି ନାହାନ୍ତି । ଆପଣ ନଗଦ ଦେଇ ଘର କିଣିବେ । ତା'ଛଡ଼ା ଗୋଟିଏ ମାତ୍ର ଅଳ୍ପବୟସ୍କ ପୁଅ । ତା' ମାଆ ତା'ର ମୁରବୀ ।

ଗ୍ରେପଡ଼ା : ତା'ହେଲେ ପୁଣି କେତେରେ କଥା ଛିଡ଼ିବ ? ଅଠର ହଜାର ନବ କି ନାହିଁ ?

ଶରନ : ଆପଣ ତ ଥଟ୍ଟା କରୁଛନ୍ତି ଗ୍ରେପଡ଼ା ସାହେବ ! ଜିନିଷ ଦେଖି ଆପଣ ଦାମ୍ କଷନ୍ତୁ । ବାଇଶି ହଜାର କୋଉଠି ଆଉ ଅଠର ହଜାର କୋଉଠି ! ସେ ମାନିବ ନାହିଁ । ମାତ୍ର ବିଶ୍ୱାସ ହଉଚି ଏକୋଇଶି ହଜାରରେ କଥା ତୁଟିବ । ତାହା ପୁଣି ଖୁବ୍ ଚେଷ୍ଟା କରିବା ପରେ ।

ଗ୍ରେପଡ଼ା : ଏକୋଇଶି ହଜାର ବେଶି ହେଇଯାଉଚି । ବହୁତ ବେଶି ହଁ, ମୋର ମନେହେଉଚି ଏ ଘର ଆଗରେ ଗୋଟାଏ କୂଅ ବୋଧହୁଏ ଥିଲା । କୂଅ ସାମ୍ନାରେ ଥିବା ଘରକୁ ତ ଲୋକେ ସନ୍ଦେହଚକ୍ଷୁରେ ଦେଖାଯାଏ ।

ଶରନ : ସେ ତ କେବଠୁଁ ବନ୍ଦ ହୋଇଯାଇଛି । ଆଉ ଗ୍ରେପଡ଼ା ସାହେବ ! ଆପଣ ମଧ୍ୟ ବଡ଼ ଅଜବ୍ ଲୋକ ! ଲେଖାପଢ଼ା ଲୋକ ହେଇକରି ଆପଣଙ୍କର ବହୁ ପୁରୁଣା ବିଚାର ରହି-ଯାଇଛି । ଲୁଚ୍ଛାଟାରେ ଆପଣ ଚିନ୍ତିତ ହେଇ ପଡ଼ୁଛନ୍ତି ।

ଗ୍ରେପଡା : ତଥାପି ମନକୁ ପାପ ଛୁଇଁଲା ଭଲ କଥାଟାଏ ତ !

ଶରନ : କେବେ ଏକଥା ଚିନ୍ତା କରିବାକୁ କଷ୍ଟ କରିଛନ୍ତି କି, ଏ ଅନ୍ଧବିଶ୍ୱାସ କେମିତି ଜନ୍ମ ନେଲା ?

ଗ୍ରେପଡ଼ା : କେମିତି ହେଲା ?

ଶରନ : ଥରେ ଜଣେ ବୁଢ଼ା କୂଅ ସାମ୍ନାରେ ଥିବା ଗୋଟାଏ ଘର ନେଲା । କୂଅ ପାଖକୁ କେତେ ରକମର ଲୋକ ଗାଧୁଆ-ଧୁଆ ପାଇଁ ଆସୁଥିଲେ । ଯୁଆନ୍ ଟୋକାମାନେ ତେଲ ଲଗେଇ ଦଣ୍ଡ-ବୈଠକ ମାରୁଥିଲେ । ବୁଢ଼ାର ଯୁବତୀ ସ୍ତ୍ରୀ ଝରକା ପାଖରେ ବସି ସେସବୁ ଦେଖୁଥିଲା । ଯୌବନରେ ଅନ୍ଧ ହୋଇ ସେ କୌଣସି ଏକ ଯୁବକ ସାଙ୍ଗରେ ପଳାଇଗଲା ।

କୁଅ—ତା'ପରେ କ'ଣ କଥା ଶୁଣିବ—ଲୋକେ କଥାର ଖିଅ ଧରିଲେ ଯେ, କୁଅ ସାମ୍ନାର ଘର ଥିଲା । ସେଥିପାଇଁ ଦୁର୍ଭାଗ୍ୟ ପଡ଼ିଲା । କୌଣସି ପିଶାଚ ସେ ସ୍ତ୍ରୀଲୋକକୁ ଉଠେଇ ନେଇ ଚାଲିଗଲା ।

ଗ୍ରେପଡ଼ା : (ହସି ହସି) ବଡ଼ ମଜାକଥା ସର୍ଦ୍ଦାର ସାହେବ, ଖୁବ୍ ମଜାକଥା । ଆପଣଙ୍କୁ ତ ବେଶ୍ କଥା କହିଆସେ ।

ଶରନ : ଲାଲଜୀ ! କଥା କହି ରୋଜଗାର କରି ତ ଆମେ ଚଳୁ । ଗାଆଁରେ କିଏ ଆମର ଗୃହବାସ କରୁଚି କି ?

ଗ୍ରେପଡ଼ା : ହଉ, କ'ଣ କରିବାକୁ ସ୍ଥିର କଲ ?

ଶରନ : ଯେମିତି ଆପଣ ଚାହିଁବେ । କିନ୍ତୁ ଆଉ ଅଧିକ କହିଲେ ଯାଇ କଥାବାର୍ତ୍ତା କରିବେ ।

ଗ୍ରେପଡ଼ା : ତା'ହେଲେ ଉଣେଇଶି ହଜାରରେ କଥା ଛିଣ୍ଡାଅ ।

ଶରନ : ମୋର କ'ଣ ଅଛି । ମୁଁ କଥାବାର୍ତ୍ତା କରି ଦେଖୁଚି । ଆପଣ ପାଞ୍ଚ ମିନିଟ୍ ପାଇଁ ବାହାରକୁ ଯାଆନ୍ତୁ । ମୁଁ ତାଙ୍କ ସାଙ୍ଗରେ କଥା ଛିଣ୍ଡାଏ ।

ଗ୍ରେପଡ଼ା : ଠିକ୍ ଅଛି । (ବାହାରକୁ ଚାଲିଗଲେ)

ଶରନ : (ଭିତର ଆଡ଼କୁ ପାଟିକରି) ଭଉଣୀ କୁଆଡ଼େ ଅଛ··· ସୁଦର୍ଶନ !

(ଦୁହେଁ ବାହାରକୁ ଆସିଲେ ।)

କାଶନ ଦେବୀ : ହଁ, କ'ଣ କଥା ଛିଣ୍ଡିଲା ?

ଶରନ : କାମଟା ହେଲା ଭଳି ଦେଖାଯାଉନି ଭଉଣୀ ! ସମସ୍ତ ବଦଳିଗଲାଣି । ଗରାକ ଏବେ ପଇସା ଖର୍ଚ୍ଚ କରିବାକୁ ଭୟ କରୁଛନ୍ତି । ସାଧ୍ୟମତେ ଚେଷ୍ଟା କଲେ ଯାଇ ଉଣେଇଶି ହଜାରରେ କଥା ଛିଣ୍ଡିପାରିବ ।

କାଶନ ଦେବୀ : ତେବେ ଛାଡ଼, ଆମେ ଏ ଘର ବିକିବା ନାହିଁ । ମୁଁ କେବଳ ତମର କଥା ରଖିବାକୁ ଯାଇ ହଜାରେ କମ୍ କରି କହିଦେଇଥିଲି ।

ସୁଦର୍ଶନ : ଥାଉ ଆଜ୍ଞା, ନ ହେଉଚି ଯଦି ନ ହେଉ । ଆମେ ତ ଆଉ ଘରଟାକୁ ଫୋପାଡ଼ି ଦଉନୁ ।

ଶରନ : ଭାବନ୍ତୁ । ହାତକୁ ଆସିଥିବା ଗ୍ରାହକକୁ ଛାଡ଼ିବା ଠିକ୍ ନୁହେଁ । ତା'ଛଡ଼ା ଏ ଘରଟା ତ 'ଶେରମୁଖୀ' ।

ସୁଦର୍ଶନ : ଶେରମୁଖୀ ? ସେ କଣ ?

ଶରନ : ପୁଅ, ଯୋଉ ଘରର ଆଗପଟଟା ଅଧିକ ଚଉଡ଼ା ଆଉ ପଛ ପଟି କମ୍ ଚଉଡ଼ା ଥାଏ, ତାକୁ ଶେରମୁଖୀ କହନ୍ତି ।

ସୁଦର୍ଶନ : ଶେରମୁଖୀ ହେଲେ କ୍ଷତି କ'ଣ ? ଏଇଟା ଗୋଟାଏ ଦୋଷ ନା କ'ଣ ?

ଶରନ : ଶେରମୁଖୀ ଘରର ମାଲିକଙ୍କୁ ସର୍ବଦା ବିପଦ । ଯେମିତି ବାଘ ଅନ୍ୟାନ୍ୟ ଜନ୍ତୁଙ୍କୁ ଖାଇଦିଏ, ସେମିତି ଏ ଘର ମାଲିକ ପ୍ରତି ବିପଦ ଲାଗିରହିଥାଏ ।

ସୁଦର୍ଶନ : (ଚକିତ ହୋଇ) ମାଆ ! ବାପାଙ୍କର ସ୍ୱର୍ଗବାସ ଏଇଠି ହୋଇଥିଲା ?

କଣନ ଦେବୀ : ତୁ ପାଗଳ ହେଲୁ କି ପୁଅ ?··· ଛିଇ, ତମେ ବି ଏଇ ଅନ୍ଧବିଶ୍ୱାସରେ ଧନ୍ଦି ହେଉଚ ? ତା'ଛଡ଼ା ଆମ ଘରର ପ୍ରକୃତ ରାସ୍ତା ତ ପଛ ଗଳି ଆଡ଼କୁ ଅଛି । ମୁଁ ତାକୁ ବନ୍ଦ କରି ଦେଇଛି । ପଛ ରାସ୍ତାଟା ଖୋଲିଦେଲେ ଘରଟା କ'ଣ 'ଗୋମୁଖୀ' ହେଇଯିବ ?

ଶରନ : ପଛ ରାସ୍ତାକୁ ହିସାବ କଲେ ଘରଟା ତ ଦୋ-ମୁହାଁ ହେଇଯାଉଚି ।

କଣନ ଦେବୀ : ଆଉ ଦୋ-ମୁହାଁ ଘର କ'ଣ କ୍ଷତି କରେ ?

ଶରନ : କ୍ଷତି ନାହିଁ କାହିଁକି ? ଅଛି । ଏଇ ଧର ଦୋ-ମୁହାଁ ସାପ । ସିଏ କ'ଣ ସବୁଠାରୁ ବେଶି ବିପଜ୍ଜନକ ନୁହେଁ ?

ସୁଦର୍ଶନ : ତା'ହେଲେ କ'ଣ କରିବା ମାଆ ?

ଶରନ : ଆପଣ ଘର ବିକନ୍ତୁ ବା ନବିକନ୍ତୁ, ସିଏ ଆପଣଙ୍କ ସମ୍ପତ୍ତି । ମୁଁ ମୋ ଦଲାଲି ଦ୍ୱାରା କେବେ କାହାକୁ ଭୁଲ୍ ରାୟ ଦେବି ନାହିଁ । ସେଥିପାଇଁ ମୋର ଯେତେ ବନ୍ଧୁ-ପରିଚିତ ଅଛନ୍ତି, ସମସ୍ତେ ଭୂ-ସମ୍ପତ୍ତିର ସବୁ କାମ ମତେ ପଚାରି ଯାଇ କରନ୍ତି ।

କଣନ ଦେବୀ : ତା' ହେଲେ ତମେ କ'ଣ କହୁଚ ?

ଶରନ : ମୋ ମତ ପଚାରିଲେ ଯଦି ମୁଁ କହୁଚି, ଗ୍ରାହକଙ୍କୁ ଛାଡ଼ନ୍ତୁ ନାହିଁ । ଏକେ ତ ଘର ପ୍ରତି ବିପଦର ଆଶଙ୍କା ହେଇଗଲାଣି । ଲୋକ-ବିଶ୍ୱାସର ମାମଲା । ଦ୍ୱିତୀୟରେ ଆପଣଙ୍କର ଏବେ ପଇସା ଦରକାର ।··· ପୁଅକୁ ମଧ୍ୟ ବେଉସା ଆରମ୍ଭ କରିବାକୁ ହେବ । ତୃତୀୟରେ ମାର୍କେଟରେ ଦିନକୁ ଦିନ ଦାମ୍ ମାନ୍ଦା ପଡ଼ିଯାଉଛି । ଯାହା ଦାମ୍ ଅଛି ଅଛି, ତାହା କାଲି ରହିବନି ।

କଣନ ଦେବୀ : ହେଲେ ମୁଁ କୋଡ଼ିଏ ହଜାରରୁ କମ୍ କୌଣସି ପ୍ରକାରେ ନେବି ନାହିଁ । ଇଚ୍ଛା ହେଲେ ଘର କିଣନ୍ତୁ, ନ କିଣନ୍ତୁ ।

ଶରନ : ହଉ, ମୁଁ ଚେଷ୍ଟା କରୁଚି । ଆପଣ ଟିକେ ଭିତରକୁ ଯାଆନ୍ତୁ । ଗ୍ରେପଡ଼ା ସାହେବ : ଆସନ୍ତୁ ଭିତରକୁ । ମୁଁ କଥାବାର୍ତ୍ତା କରି ଦେଖୁଚି ।

କଣନ ଦେବୀ : ଚାଲ୍ ସୁଦର୍ଶନ, ଆମେ ଭିତରକୁ ଯିବା । (ଦୁହେଁ ଭିତରକୁ ଗଲେ)

ଶରନ : (ଦୁଆର ପାଖରେ ଠିଆ ହୋଇ ଡାକିଲେ) ଗ୍ରେପଡ଼ା ସାହେବ, ଗ୍ରେପଡ଼ା ସାହେବ ! ଆପଣ ଭିତରକୁ ଆସିଯାଆନ୍ତୁ । (ଗ୍ରେପଡ଼ାଙ୍କ ପ୍ରବେଶ)

ଗ୍ରେପଡ଼ା : ହଁ ଆଜ୍ଞା, କ'ଣ କହିବେ ପରା ?

ଶରନ : ଗ୍ରେପଡ଼ା ସାହେବ ! ଆପଣ ମଧ୍ୟ ଭାବୁଥିବେ ଯେ, କେଉଁ ଗୋଟାଏ ଶରନ ସିଂହ ପାଲରେ ପଡ଼ିଯାଇଚ । ଦେଖନ୍ତୁ, ଆଉ ପଛକୁ ହଟିବାକୁ ପଡ଼ିବନି । କୋଡ଼ିଏ ହଜାରରେ କଥା ତୁଟାଇଦେବା ।

ଗ୍ରେପଡ଼ା : ନା-ନା-ନା । ମୁଁ କୌଣସି ପରିସ୍ଥିତିରେ ଉଣେଇଶି ହଜାରରୁ ଅଧିକ ଖର୍ଚ୍ଚ କରିବାକୁ ପ୍ରସ୍ତୁତ ନୁହେଁ । ଇଚ୍ଛା ହଉଚି ଯଦି ବିକନ୍ତୁ; ନ ହେଲେ ନାହିଁ ।

ଶରନ : ଦେଖନ୍ତୁ, ବେଶି ଗୋଳମାଳ କରନ୍ତୁ ନାହିଁ । ଇଲାକାଟା କ'ଣ ଦେଖୁଛନ୍ତି ତ ? ଗୃହମାଟଉକ । ଦିଲ୍ଲୀରେ ଲୋକ ଗ୍ରେଟ ଗ୍ରେଟ ଗଳାକନ୍ଧ ପାଇଁ ବିକଳ ହେଉଛନ୍ତି । ଲୋକ କୋଉଠି କୋଉଠି ଯାଇ ରହିଲେଣି । କିଏ ଲୋଧୀ କଲୋନୀରେ ରହୁଛନ୍ତି ତ କିଏ ପଟେଲ ନଗରରେ—କିଏ ଜବାହର ନଗରରେ ତ କିଏ କଂଗ୍ରେସୱେ; କେତେକ ଜଙ୍ଗପୁରରେ ତ କେତେକ ତ୍ରିବେଣୀରେ ରହିଲେଣି । ଏପରିକି ଦିଲ୍ଲୀର ସୀମାସରହଦ ଅତିକ୍ରମ କରି ଲୋକେ ଜୀବିତ ଥାଇ ମଧ୍ୟ ଇନ୍ଦ୍ରଲୋକ, ଚନ୍ଦ୍ରଲୋକ, ଦେବ ନଗର ଓ ସ୍ୱର୍ଗପୁରୀକୁ ଯାଇ ଆବାଦ୍ କଲେଣି ।

ଗ୍ରେପଡ଼ା : ଅର୍ଥାତ୍ ଜୀବିତ ଲୋକ ମଧ୍ୟ ସ୍ୱର୍ଗବାସୀ କହିବାର ଅଧିକାରୀ ହୋଇଛନ୍ତି । (ଦୁହେଁ ହସିଉଠିଲେ ।)

ଶରନ : ଠିକ୍ କହୁଛନ୍ତି ଆଜ୍ଞା ! ଆପଣ ତ ଜାଣିବା-ଶୁଣିବା ଲୋକ । ଗ୍ରେପଡ଼ା ସାହେବ, ଦିଲ୍ଲୀ ଚାରିଆଡ଼କୁ ପ୍ରସାରିତ ହେଉଛି । ତା'ଛଡ଼ା ଏଇ ଅଂଚଳଟା ହେଉଛି ଏକ୍‌ବାର ମଣି ଜାଗା ।

ଗ୍ରେପଡ଼ା : ହଁ, ଆପଣ ଯାହା କହୁଛନ୍ତି ଠିକ୍ ।

ଶରନ : ଠିକ୍ କ'ଣ ମ ? ଷୋଳ ଅଣା ଠିକ୍ କହୁଚି । ମୋର ଆପଣଙ୍କ ପ୍ରତି ବିଶେଷ ମମତା ଅଛି ନା ! କେବଳ ଆପଣଙ୍କ ଲାଭ ପାଇଁ ମୁଁ ଏ ସଉଦା କରାଇଦେଉଚି । ଏହାର ତ ଦିନକୁ ଦିନ ଦର ବଢ଼ୁଚି ।···ମୋ କଥା ମାନି ଏହାକୁ ହାତଛଡ଼ା କରନ୍ତୁନି ।

ଗ୍ରେପଡ଼ା : (ଇଆଡ଼-ସିଆଡ଼ ଦେଖି ପୁଣି ଅଗ୍ରନକ ଉଠିପଡ଼ି ଘରର ଲମ୍ବ-ପ୍ରସ୍ଥ ପ୍ରତି ଦୃଷ୍ଟି ନିକ୍ଷେପ କରି) ଦେଖ ସର୍ଦ୍ଦାରଜୀ, ଏ ଘରର ଆଗ ପଟଟା ବଡ଼ ଏବଂ ପଛ ପଟଟା ଗ୍ରେଟ । କ'ଣ କହୁଛନ୍ତି ଆଜ୍ଞା ? ମୋ ବିଚାରରେ ଏ ଘରଟା ଶେରମୁଖୀ । ଘରମାଲିକର ମୃତ୍ୟୁ ଏଇଠି ହେଇଥିଲା ନା ?

ଶରନ : (ହସି) ବାଃ ଗ୍ରେପଡ଼ା ସାହେବ, ବାଃ ! ଆପଣ ମଧ୍ୟ ଅଜା ପିଲାଙ୍କ ଭଳି କଥା କହୁଛନ୍ତି । ଆପଣ ଏମିତି ଗୋଟାଏ ଘର କୁହନ୍ତୁ ତ, ଯେଉଁଠି ଗୋଟାଏ ହେଲେ ଲୋକ ମରି ନ ଥିବେ । ଜନ୍ମ ମୃତ୍ୟୁ ସାଙ୍ଗେ ସାଙ୍ଗେ ଚାଲିଚି । ସେ କାହାଣୀ ଆପଣ ବି ଶୁଣିଥିବେ । ମହାତ୍ମା ବୁଦ୍ଧ ଜଣେ ସ୍ତ୍ରୀଲୋକକୁ କହିଥିଲେ—ତମେ ମୁଠାଏ ଶସ୍ୟ ଏମିତି ଗୋଟିଏ ଘରୁ ଆଣ, ଯେଉଁ ଘରୁ କେବେ କେହି ମରି ନ ଥିବେ । ତା'ହେଲେ ମୁଁ ତୁମ ପୁଅକୁ ବଂଚେଇଦେବି । ସେ

ବସୁଧା ଦୁଆର ଦୁଆର ଦୁଃଖ ମନରେ ଘୂରିବୁଲିଲେ; ମାତ୍ର ମୁଠାଏ ଶସ୍ୟ କେଉଁଠୁ ପାଇଲେ ନାହିଁ । ମିଳିଲା ଅବା କୁଆଡ଼ୁ ? ଶେଷରେ ସେ ବୁଝିଲେ, କୌଣସି ଘର ମୃତ୍ୟୁହୀନ ନୁହେଁ । ବସୁଧା କାନ୍ଦ-କୋଡ଼ ହୋଇ ପୁନି ଶୋକ ସହିଗଲେ !

ଗ୍ରେପଡ଼ା : ମାତ୍ର ଏକଥା ତ ଦୁନିଆ ଜାଣେ ଯେ, ଶେରମୁଖୀ ଘର ଦୁର୍ଭାଗ୍ୟଶାଳୀ ଅଟେ ।

ଶରନ : କିନ୍ତୁ ଏହାକୁ ଶେରମୁଖୀ ବୋଲି କିଏ କହୁଚ ? ଏ ଘର ତ ଗୋମୁଖୀ ଅଟେ । ଏହାର ପ୍ରକୃତ ସଦର ରାସ୍ତା ତ ପଛ ପଟକୁ ଅଛି । ଯଦି ଆପଣଙ୍କୁ ଏଇଟା ଅଡ଼ୁଆ ଲାଗୁଚ, ତେବେ ଏ ରାସ୍ତା ବନ୍ଦ କରିଦେବେ ଏବଂ ସେଇଟାକୁ ଖୋଲିଦେବେ ।

ଗ୍ରେପଡ଼ା : ତେବେ ଏ ଘରର ରାସ୍ତା କ'ଣ ଦୁଇ ପଟକୁ ଅଛି ?

ଶରନ : ଦୁଇ ପଟରୁ ପବନ ବା ଖରା ଆସୁଥିବା ଏମିତିଆ ଘରର ସନ୍ଧାନରେ ତ ଏବେକାର ଲୋକମାନେ ଅଛନ୍ତି । ଆପଣ ଯେତେ ନୂଆ ଢଙ୍ଗରେ ତିଆରି ହୋଇଥିବା ନୂଆ ଘରଗୁଡ଼ା ଦେଖିବେ, ସେସବୁ ନିଶ୍ଚେ ଦୁଇପଟକୁ ଖୋଲା ହୋଇଥିବ ।

ଗ୍ରେପଡ଼ା : କିନ୍ତୁ ଘର ପ୍ରକୃତ ରାସ୍ତା ତାକୁ ହିଁ ଧରିନିଆଯିବ, ଯାହା ବହୁତ ଦିନରୁ ଚାଲୁ ରହିଛି ।

ଶରନ : ଗ୍ରେପଡ଼ା ସାହେବ ! ବେକାର ସଂଶୟରେ ପଡ଼ିବାର ଲାଭ କ'ଣ ? ଗୋମୁଖୀ ଶେରମୁଖୀ କଥା ତ ଆପଣ ଶୁଣିସାରିଲେଣି । ଏହାର ଉଦ୍ଦେଶ୍ୟ କ'ଣ ଜାଣନ୍ତି ?

ଗ୍ରେପଡ଼ା : କି ଉଦ୍ଦେଶ୍ୟ ?

ଶରନ : ଘର ଯଦି ଗୋମୁଖୀ ହୋଇଥାଏ ତେବେ ତା'ର ଦ୍ୱାର ଶ୍ରେଷ୍ଠ ହୋଇଥାଏ । ଘରର ପରଦା ସେଭଳି ତିଆରି ହୁଏ । ଯା-ଆସ କରୁଥିବା ଲୋକ ଭିତରକୁ ସହଜେ ଦେଖି-ପାରେ ନାହିଁ । ଦୋକାନ ପାଇଁ ଶେରମୁଖୀ ପସନ୍ଦ କରାଯାଏ; କାରଣ ଦ୍ୱାର ଚଉଡ଼ା ହୋଇଥିବା ଦୃଷ୍ଟିରୁ ସାଜସଜ୍ଜା ଭଲଭାବେ କରିହୁଏ । ତା'ଛଡ଼ା ଏ କଥାରୁ ବା କ'ଣ ମିଳିବ ? ଶେରମୁଖୀ ଘର କାହାକୁ ପାଟିରେ ପକାଇ ଦିଏ ନାହିଁ, କିମ୍ବା ଗୋମୁଖୀ ଘରୁ ଦୁଧର ସ୍ରୋତ ବହେ ନାହିଁ ।

ଗ୍ରେପଡ଼ା : (ହସି ହସି) ତେବେ ଆପଣ ଏଇକଥା କହିବାକୁ ଚାହୁଁଛନ୍ତି, ଶେରମୁଖୀ ପଟେ ଦୋକାନ କରିନେବ ଏବଂ ଗୋମୁଖୀ ପଟେ ଘର ତିଆରି କରିବ ।

(ଦୁହେଁ ହସିଉଠିଲେ ।)

ଶରନ : ମାତ୍ର ମୁଁ ବୁଝିପାରୁନି; ଆପଣ ଏଭଳି ଭ୍ରମରେ ପଡ଼ି କ'ଣ ପାଉଛନ୍ତି ? ଆମ୍ବ ଖାଇବା ଲୋକ ଗଛ ଗଣି ଲାଭ କ'ଣ ? ଆପଣ ନିଶ୍ଚିନ୍ତ ରୁହନ୍ତୁ । ଦୁଇ ଚାରି ହଜାରର ଲାଭ ହିଁ ହେବ ।

ଗ୍ରେପଡ଼ା : ଠିକ୍ ଅଛି ସର୍ଦ୍ଦାରଜୀ ! ଯାହା ଆପଣଙ୍କର ଇଚ୍ଛା ।

ଶରନ : ତେବେ କୋଡ଼ିଏ ହଜାରରେ କଥା ପକ୍କା କରିଦେବ ?

ଗ୍ରେପଡ଼ା : ନା, ଉଣେଇଶି ହଜାରରୁ ଅଧିକ ନୁହେଁ ।

ଶରନ : ବାଃ ଭାଇ; ବାଃ ! ପଞ୍ଚପରମେଶ୍ୱରଙ୍କ କଥା ତ ଶିରୋଧାର୍ଯ୍ୟ; ହେଲେ କଥାଟା ଭଲ ହେବନି । ଆପଣଙ୍କୁ ଟିକେ ଖୋଲା ହେବାକୁ ପଡ଼ିବ । ଏମିତରେ କାମ ହୁଏ ନାହିଁ । ସାଢ଼େ ଉଣେଇଶି କହିବ କି ? ତା'ପରେ ସେ ଜାଣେ ଆଉ ତା' କାମ ଜାଣେ ।

ଗ୍ରେପଡ଼ା : ସାଢ଼େ ଉଣେଇଶିରୁ ଗୋଟିଏ ପଇସା ଅଧିକ ଦେବିନି ।

ଶରନ : ଆପଣ ମୋଟେ ଚିନ୍ତା କରନ୍ତୁନି । ବର୍ତ୍ତମାନ ଟଙ୍କା ବନ୍ଦୋବସ୍ତ କରନ୍ତୁ । (ବଡ଼ ପାଟିରେ) ସୁଦର୍ଶନ···ସୁଦର୍ଶନ···ଭଉଣୀଙ୍କୁ ପଦାକୁ ଟିକେ ପଠା ।

(ଦୁହେଁ ଆସିଲେ ।)

କଣକ ଦେବୀ : କ'ଣ କହିବ କୁହ ଭାଇ !

ଶରନ : ବସନ୍ତୁ ଭଉଣୀ ! ଆପଣଙ୍କୁ ଆଡ୍‌ଭାନ୍‌ସ ଦେଇଦଆହେଉଛି । ଗ୍ରେପଡ଼ା ସାହେବ ! ଶହେଟଙ୍କିଆ ନୋଟ୍‌ସବୁ ବାହାର କରନ୍ତୁ ।

ଗ୍ରେପଡ଼ା : (ପର୍ସ କାଢ଼ି ନୋଟ୍ ଦେଲେ) ଏଇ ନିଅନ୍ତୁ ସର୍ଦ୍ଦାର ସାହେବ !

ଶରନ : (ଟଙ୍କା ଦେଇ ଦେଇ) ଏଇ ଧରନ୍ତୁ ଭଉଣୀ, ଶହେଟଙ୍କିଆ ନୋଟ୍-ସାଢ଼େ ଉଣେଇଶି ହଜାର !

କଣକ ଦେବୀ : (ନୋଟ୍‌କୁ ଦୂରକୁ ଘୁଞ୍ଚେଇ ଦେଇ) ନା-ନା-ନା, ଭାଇ ! ମୁଁ ତୁମକୁ ଆଗରୁ କହିସାରିଚି, କୋଡ଼ିଏ ହଜାରରୁ ଗୋଟିଏ ପଇସା କମ୍ ନେବାକୁ ପ୍ରସ୍ତୁତ ନୁହେଁ ।

ଶରନ : ଭଉଣୀ; ଆପଣ ଆଗ ପଇସା ଧରନ୍ତୁ ।

କଣକ ଦେବୀ : କେମିତି ଟଙ୍କା ଧରିବି ? ପ୍ରଥମତଃ ମୁଁ ଦୁଇହଜାର କମ୍‌ରେ ରାଜି ହେଲି ବୋଲି ମୋ ପୁଅ ମୋ ଉପରେ ବିରକ୍ତ ହେଉଚି ।

ସୁଦର୍ଶନ : ନା ସର୍ଦ୍ଦାରଜୀ ! କୋଡ଼ିଏ ହଜାରରୁ କମ୍ ନେବୁ ନାହିଁ ।

ଶରନ : ଗ୍ରେପଡ଼ା ସାହେବ, ଛାଡ଼ ଏବେ । କଥାଟା ପୂରଣ ହେଇଯାଉ । ପାଞ୍ଚଶହ ପାଇଁ ଏମିତିଆ ସଉଦା ଛାଡ଼ିବା ଉଚିତ ନୁହେଁ ।

ଗ୍ରେପଡ଼ା : ନା ସର୍ଦ୍ଦାରଜୀ,···ଆପଣ ଏ କ'ଣ କହୁଛନ୍ତି ? ମୁଁ ତ ପ୍ରଥମରୁ ପାଞ୍ଚଶହ ଅଧିକ କହିଦେଇସାରିଛି ।

ଶରନ : ଛାଡ଼ନ୍ତୁ, ମୋ ପାଇଁ ଆଉ ପାଞ୍ଚଶହ ସହିଯାଆନ୍ତୁ । ଆପଣଙ୍କୁ ଆଉ କେଉଁଠି ପାଞ୍ଚଶହ ସୁବିଧା କରାଇଦେବି ।

ଗ୍ରେପଡ଼ା : ନା ସର୍ଦ୍ଦାର ସାହେବ; ଏମିତି କଥା ହୁଏନି । ମୁଁ କୌଣସି ପ୍ରକାରେ ସାଢ଼େ-ଉଣେଇଶିରୁ ଅଧିକ ଦେବାକୁ ପ୍ରସ୍ତୁତ ନୁହେଁ ।

ଶରନ : ତେବେ ଠିକ୍ ଅଛି । ମୋ ଉପରେ କ୍ଷତି କରିବାକୁ ଛାଡ଼ିଦିଅନ୍ତୁ । ନିଅନ୍ତୁ ଭଉଣୀ, ଶହେ ଟଙ୍କାଗୁଡ଼ା ଧରନ୍ତୁ । ଧରନ୍ତୁ ଟିକେ—ମୁଁ ଏବେ କଥା ତୁଟେଇ ଦଉଚି ।

କଶନ ଦେବୀ : (ଟଙ୍କା ଧରିଲେ) ହଉ, ଏବେ କୁହ ।

ଶରନ : ଆପଣଙ୍କ କଥା ରହୁ, ତାଙ୍କ କଥା ରହୁ । ଉଣେଇଶି ହଜାର ସାଢ଼େ ସାତଶହ ଟଙ୍କା ।

(ଗ୍ରେପଡ଼ା ଏବଂ କଶନ ଦେବୀ ଏକସାଙ୍ଗରେ କହିଉଠିଲେ ।)

ଗ୍ରେପଡ଼ା : ନା, ସର୍ଦ୍ଦାରଜୀ ନା ।

କଶନ ଦେବୀ : ନା ଭାଇ, ମୁଁ ମୋଟେ କମ୍ ନେବ ନାହିଁ ।

ଶରନ : ଗ୍ରେପଡ଼ା ସାହେବ ! ଆପଣ ଟିକେ ଚୁପ୍ ହେଲେ । ଭଉଣୀ, ଶୁଣନ୍ତୁ । ଘରକୁ ଆସିଲା ଧନର ମାୟା ଛୁଟେଇ ହଆଯାଏନାହିଁ । ଇଏ ହେଉଚ ଲକ୍ଷ୍ମୀ···ଲକ୍ଷ୍ମୀ । ଅଢ଼େଇଶହ ଟଙ୍କାର କଥା ଗୋଟା କ'ଣ କଥା ! ଟିକେ ଭାବନ୍ତୁ ।

କଶନ ଦେବୀ : କ'ଣ ସୁଦର୍ଶନ—ଭାବୁଚୁ କ'ଣ ?

ଶରନ : ସେ ବିଷୟ କ'ଣ କହିବ ? ଆଜି ସନ୍ଧ୍ୟାକୁ 'ଆବାସ ଅଧିକାରୀ' ପାଖକୁ ଯାଆନ୍ତୁ; ଆଉ କାଗଜପତ୍ରରେ ଲେଖାପଢ଼ା କାମ ପୂରା କରିଦିଅନ୍ତୁ ।

ଗ୍ରେପଡ଼ା : ହିଁ ! ଯେତେବେଳେ ଇଚ୍ଛା ଲେଖାପଢ଼ା କାମ କରିଦିଅ ।

ଶରନ : ଗ୍ରେପଡ଼ା ସାହେବ ! ଆପଣ ମୋ ପ୍ରତି ଆଉ ଟିକିଏ କୃପା କରିବେ । ଦଲାଲି ପଇସାରୁ ଅଧେ ମତେ ଏବେ ଦେଇଦିଅନ୍ତୁ । ଘରେ ମତେ ରେସନ୍ ପହଞ୍ଚାଇବାକୁ ହେବ । ଭାବିଥିଲି, ଗ୍ରେପଡ଼ା ସାହେବଙ୍କ କାମ ହେଇଗଲେ ମୁଁ ଏ କାମ କରିବି ।

କଶନ ଦେବୀ : ତୁମେ ଗୋଟିଏ ଜବରଦସ୍ତ ଲୋକ । ତୁମର ସେଇ କଥା ରହିଲା—ତମେ ଯୋଉଥିରେ ଲଗିଥିବ ଜୋକ ଭଳି ଲଗିଥିବ । ଧାଡ଼ି ଦେଇ ଦେଇ, କଥା କହି-ବୋଲି, ଶେଷରେ ମୋ ଘର ବିକେଇ ନିଃଶ୍ୱାସ ମାରିଲ ।

ଶରନ : ଭଉଣୀ, ଇଏ ଆମର ସବୁଦିନିଆ କାମ । କଥାରେ କହନ୍ତିନି—ହାକିମ ଗରମ ହେଇ, ଦୋକାନି ନରମ ହେଇ ଆଉ ଦଲାଲ ବେସରମ ହେଇ ଚଳେ ।

(ସମସ୍ତେ ହସିଉଠିଲେ ।)

□□□

# ଉଧଲିଆ

—କପୂର ସିଂହ ଘୂମ୍ମଣ

ପାତ୍ର

ଖଡ଼କୁ : ଜଣେ ଜାଠ

[illegible] : ଖଡ଼କୁର ବନ୍ଧୁ

କରତାରେ : ଖଡ଼କୁର ପତ୍ନୀ

ଜୀତା : ଖଡ଼କୁର ପୁଅ

ସଲମା : ଉଧଲିଆ (ଉଡ଼େଇ ଆଣିଥିବା ଝିଅ)

ଥାନା ଅଫିସର :

ଏବଂ

ସିପାହି ।

ସ୍ଥାନ : ଅମୃତସରର ଅଜନାଲା ତହସିଲରେ ପାକିସ୍ତାନ ସୀମା ନିକଟବର୍ତ୍ତୀ ଗୋଟିଏ ଗାଆଁ ପଣ୍ଡୁବାଲ ।

ସମୟ : ୧୯୪୯ ଜାନୁଆରୀର ଗୋଟିଏ ସକାଳ ।

[ଖିଡ଼କିରୁ ଜାଠର ଘର । ସାମ୍ନାରେ ଝାଟିମାଟିର ଢ଼ଆଲ୍ । ଏଥିର ଦୁଇଟି ଦୁଆର ଅଛୁ । ଡାହାଣ ହାତପଟେ ରୋଷେଇଘରକୁ ଏବଂ ବାଁ ପଟେ କୋଠଣକୁ ଦୁଆର । କୋଠରି ପଛକୁ ଆଉ ଏକ ଛୋଟ କୋଠରି ଅଛୁ । ବାହାରୁ ଆସିବା ପାଇଁ ରୋଷେଇଘର ଦରଜା ପାଖକୁ ଅନ୍ୟ ଏକ ଦରଜା ଅଛୁ । ଢ଼ଆଲ୍‌ର ଗୋଟିଏ ଦରଜା ଆଗରେ କାଠର ଚରଖା, ପିଡ଼ା, ଭୂଲା ବଲଣାର ଟୋକେଇ ତଥା କିଛୁ ଭୂଲା ରଖାହୋଇଛୁ । ଆଠ ବର୍ଷର ବାଳକ ଜୀତା ବସି ଆଖୁ ଖାଉଛୁ । ତା' ପାଖକୁ ଆଖୁଗୁଡ଼ାଏ ଗଦାହୋଇଛୁ । ଅଗଣାରେ ମଧ୍ୟ ଛୋପା ବିସ୍ତୃତ ହୋଇ ପଡ଼ିଛୁ । ରୋଷେଇ ଏବଂ ଝାଟିମାଟିର ଢ଼ଆଲ୍ ମଝିରେ କାଠ ବଇଠିରେ ଘଡ଼ି ରଖାହୋଇଛୁ । ପାଖରେ ଦୁଇଟି ଟିଙ୍କା ଅଛୁ । ଢ଼ଆଲ୍ ପଟକୁ ଗୋଟିଏ ଚୁଲି ଆଉ ପୀଡ଼ି ଅଛୁ । କେତେକ ଅଇଁଠା ବାସନ, ଥାଳିଆ, ଥାଳି ଓ କଟୋରା ଆଦି ବିକ୍ଷିପ୍ତ ଭାବେ ପଡ଼ିଛୁ । କୋଠରିର ଦରଜା ପାଖ ଖଟିଆ ଉପରେ ଗୋଟିଏ ପିଲା ଶୋଇଛୁ । ନିକଟରେ ଆଉ ଏକ ଖଟିଆ ପଡ଼ିଛୁ । କରତାରୋ ଦୁଧ ବାଲ୍‌ଟି ଧରି ଭିତରକୁ ଆସିଲା ।]

କରତାରୋ : ଆସ ଜୀତା ଫୀତା ! ଆରେ ଏ ଯାଏ ତୋର ଆଖୁଖିଆ ସରିନି ?

ଜୀତା : ସେଇଟା ତ ସରିଗଲାଣି ବୋଉ ! (ହାତରେ ଥିବା ଆଖୁ ଦେଖାଇ) ଏଇଟା ସରିନି ।

କରତାରୋ : କେମିତିଆ ଖୋଳିଲା ବେଳରେ ତୋର ଜନମ ହୋଇଥିଲା କେଜାଣି ! ରଇଜଲା, ସବୁବେଳେ ତୋ ପାଟି ଚାଲୁଛି ।

ଜୀତା : ବାପା କେତେ ଆଖୁ ଖାଇଯାଉଛନ୍ତି । ତାଙ୍କୁ ତ ତୁ କିଛୁ କହୁନୁ ।

କରତାରୋ : ଦଶଟା ଲୋକର କାମ ସେ ଏକୁଲା କରୁଛନ୍ତି । ତୋ ଭଳିଆ ସେ କେବଳ ଖାଇବା ପେଟୁ ହୋଇ ବସିନାହାନ୍ତି । (ରୋଷେଇ ଘରକୁ ବାଲ୍‌ଟି ରଖିବାକୁ ସେ ଚାଲିଗଲେ ।)

ଜୀତା : ବାପାଙ୍କ ଭଳି ବଡ଼ ହୋଇଗଲେ ମୁଁ ବି ବହୁତ କାମ କରିବି ।

କରତାରୋ : (ବାହାରକୁ ଆସି) ତୁ କାମ କଲେ ଦୁନିଆ ଦେଖିବ ଯେ ! ସ୍କୁଲରେ ସବୁଦିନେ ମାଡ଼ ଖାଉଚୁ, ପିଟାପିଟି କରୁଚୁ । ଇସ୍କୁଲ ପାଠପଢ଼ା ତ କରୁନୁ, କ୍ଷେତ କାମ ତୁ କରିପକେଇବୁ ?

ଜୀତା : ଦେଖିବୁ ରଇଥା ।

କରତାରୋ : ଯା; ଉଠ୍ ! କୂଅ ପାଖରେ ନେଇ ବାପାକୁ ଲସି ଦେଇଆ । ଗଲାବେଳେ ସାଙ୍ଗରେ ଦଉଡ଼ିଟା ଝୁଟି ଆଉ ଆଗ୍ନିର ନେଇଯିବୁ ।

ଜୀତା : ମୁଁ ଘରେ ଅଛୁ । ତୁ ନିଜେ ଯାଇ ଦେଇଆ ।

କରଡାଗେ : ଆରେ, ଉଠୁଚୁ ନା ନାହିଁ ? ଆହା, ରଜାଘର ପୁଅ ପାଲଟିଗଲାଣି ! (ଭିତରକୁ ଚାଲିଗଲା ।)

ଜୀତା : ତା'ହେଲେ ରୁଟି ଆଉ ଆଚାର-ଆଣ । (ଆଖୁ ଖାଇବାକୁ ଲାଗିଲା ।)

କରଡାଗେ : (ବାହାରକୁ ଆସି ରୁଟି ବନ୍ଧାହୋଇଥିବା ଲୁଗା ଏବଂ ଲସିଭର୍ତ୍ତି ନୋଟା ରଖିଲା ।) ଥରେ ଦ'ଥର କହିଲେ ବି ତୋର ଖାଉର ପଡ଼ୁନି । ଉଠୁନୁ ନା ନାହିଁ ! ଦେଖିବୁ ଏଇନେ; କେମିତି ତତେ ଠିଆ କରେଇବି ?

ଜୀତା : ମତେ ଭୋକ କରୁଚି ।

କରଡାଗେ : (ବାହା ଧରି) ଲକ୍ଷ୍ମଣୀ ସାଙ୍ଗରେ ଗଲଗାଉର ବାସିରୁଟି ପରା ଖାଇସାରିଚୁ ତୁ ! ଆଠ ଦଶଟା ଆଖୁ ପରା ଗିଳିସାରିଲୁଣି । ଆଉ କ'ଣ ଚାହୁଁ—ଗୋବର ? ଶୀଘ୍ର ଉଠ୍ ।

(କରଡାଗେ ଜୀତାର ଆଖୁକୁ ଦୂରକୁ ପକେଇଦେଲା । ଜୀତା ଓଠ ନେଫେଡ଼େଇଲା । ତା'ପରେ ମୁଣ୍ଡରେ ରୁଟିବନ୍ଧା ପୁଟୁଳି ରଖି ହାତରେ ନୋଟା ଧରି ବାହାରକୁ ଚାଲିଗଲା ।)

ଜୀତା : (ଦରଜା ପାଖରୁ) ମୁଁ ଫେରିଲାବେଳକୁ ସବୁ ଆଖୁ ସାରି ଦେଇ ନଥିବୁ ।

କରଡାଗେ : ଏ ଆଖୁଗୁଡ଼ାକୁ ଏଇନେ ଫିଙ୍ଗୁଚି ରହ । ଦଉଡ଼ିକରି ଯା; ବାପା ଅପେକ୍ଷା କରି ବସିଥିବେ ।

[ଜୀତା ବାହାରକୁ ଚାଲିଗଲା । କରଡାଗେ ଚୁଲିରେ ଘସି ପକାଇଲା; ଭାଙ୍ଗି ଭାଙ୍ଗି କରି ପକାଇଲା । ତା'ପରେ ଭିତରୁ ଦୁଧ ଆଣିଲା, ଘଡ଼ିରୁ ପାଣି ନେଲେ ଏବଂ ତାକୁ ଧୋଇ ପଲମରେ ଦୁଧ ଅଜାଡ଼ି ଚୁଲିରେ ରଖିଲା । ତା'ପରେ ଚରଖା ପାଖରେ ବସି ସୂତା କାଟିଲା । ବାହାରୁ ଅଣନିଶ୍ୱାସୀ ହୋଇ ବରସା ସିଂହ ଆସିଲା ।]

ବରସା : ଭାଉଜ ! ଭାଉଜ ଘରେ ଅଛ ?

କରଡାଗେ : ନାହିଁ-ନାହିଁ । ସବୁ ଭଲ ତ ? ଏମିତି ଅବସ୍ଥାରେ ତମେ କୁଆଡ଼େ ?

ବରସା : ବଡ଼ ଗାଆଁକୁ ପୁଲିସ ଆସିଗଲାଣି ।

କରଡାଗେ : ସେଠି ଲୋକେ ବହୁତ ମଦ ପିଉଥିଲେ ନା ?

ବରସା : ପୁଲିସ ମଦ ପାଇଁ ଆସିନାହିଁ ।

କରଡାଗେ : ତା'ହେଲେ ଆଉ କ'ଣ ପାଇଁ ?

ବରସା : ଉଡ଼େଇ ଆଣିଥିବା ସ୍ତ୍ରୀଲୋକକୁ ଖୋଜିବା ପାଇଁ ।

କରଡାଗେ : ଉଡ଼େଇ ଆଣିଥିବା ସ୍ତ୍ରୀଲୋକକୁ ଖୋଜିବା ପାଇଁ ?

ବରସା : ହଁ, ସାଙ୍ଗରେ ମିଲେଟେରୀ ଥିବା ଟ୍ରକ୍ ବି ଆସିଛି । ଯେଉଁ ସ୍ତ୍ରୀଲୋକମାନଙ୍କ ବିରୁଦ୍ଧରେ ଅଭିଯୋଗ ହୋଇଛି, ତାଙ୍କୁ ଖୋଜି ଖୋଜି ପାକିସ୍ତାନ ପଠାହେଉଛି ।

କରଡାଗେ : ତେବେ ତମେ ଏତେ ବିବ୍ରତ କାହିଁକି ହଉଚ ?

ବିରସା : ସେ ଯେଉଁ ଶେଖ୍ ନୁହେଁ ହଜୁର—ସେ ବଡ଼ ଗାଆଁର ମ ! ତାକୁ ବି ପୁଲିସ ଧରିନେଇଛି ।

କରତାରେ : ତାକୁ କାହିଁକି ନେଲା ?

ବିରସା : ସେ ଫଜଲଦ୍ଦିନ୍ ମୋଚିର ଝିଅକୁ କୁଆଡ଼େ କୋଉଠି ନେଇ ବିକି ଦେଇ ଆସିଥିଲା ।

କରତାରେ : ତା'ହେଲେ ତାକୁ ଠିକ ହେଇଛି । ମାଇକିନିଆମାନଙ୍କୁ ଗୋରୁ-ଗାଈ ଭଳି ବିକିବା କ'ଣ ନ୍ୟାୟ ?

ବିରସା : ହେଲେ ତା' ସାଙ୍ଗରେ ବି ନିର୍ଦ୍ଦୋଷ ଲୋକର ନାକ ରଗଡ଼େଇ ଦେଉଛନ୍ତି । ଯେଉଁ ଝିଅ ପାକିସ୍ତାନ ଫେରିବାକୁ ନ ଚାହୁଁଚି, ତାକୁ ମଧ୍ୟ ବଳପୂର୍ବକ ନେଇଯାଉଛନ୍ତି ।

କରତାରେ : ମାତ୍ର ତମେ କାହିଁକି ଡରିମାଉଚ ? ତମେ କ'ଣ କାହାକୁ ଉଡ଼େଇ ନେଇ-ଆସିଚ କି ?

ବିରସା : ଧର୍ମ ଦୁହାଇ ! ମୁଁ କାହାକୁ ନେଇଆସିନି । ସେସବୁ ଭଗବାନଙ୍କୁ ଜଣା । କିନ୍ତୁ ଗୋଟାଏ ଝିଅର ପ୍ରାଣ ମୁଁ ବଞ୍ଚାଇଛି ନିଶ୍ଚେ । ଯଦି ମରିବା ଲୋକକୁ ବଞ୍ଚାଇବା ଦ୍ୱାରା ପାପ ହୁଏ, ତେବେ ମୁଁ ନିଶ୍ଚୟ ପାପୀ ।

କରତାରେ : ତା'ହେଲେ ଡରୁଚ କାହିଁକି ? ସତ କଥାକୁ ଡର କଣ ? କୌଣସି ଲୁଟପାଟ ଘଟିନି ଯେ ଯାହାକୁ ଇଚ୍ଛା ତାକୁ ଧରିନେବେ ।

ବିରସା : ଆପଣାଗୁଏ କେହି ଧରେ ନାହିଁ ହଜୁର ! ଯେତେବେଳେ ଗାଆଁରୁ କେହି ଯାଇ ଅଭିଯୋଗ କରିଆସେ, ସେତେବେଳେ ପୁଲିସ ଆସେ ।

କରତାରେ : ବିରସା ! ଶେଷରେ ସତ୍ୟର ହିଁ ଜୟ ହେବ ।

ବିରସା : ତମ କଥା ଠିକ୍ । କିନ୍ତୁ ଚକିରେ ପଡ଼ିଥିବା ଗହମକୁ ଯଦି ପେଷି ଦିଆ ନ ଯାଏ···

କରତାରେ : ତମେ ଠିକ୍-ଠିକ୍ କରି କହ—ଅସଲ କଥା କ'ଣ ?

ବିରସା : ବର୍ତ୍ତମାନ ମୋର ଇଜ୍ଜତ; ଆଉ ଗୋଟିଏ ଝିଅର ଜୀବନର ପ୍ରଶ୍ନ ଜଡ଼ିତ ହଜୁର !

କରତାରେ : ମୁଁ ସବୁବେଳେ ତମକୁ ନିଜ ଦିଅର ଭଳି ଭାବେ । ମତେ କିଛି ଲୁଚା ନା ।

ବିରସା : ମୁଁ ବହୁତ ଚେଷ୍ଟା କରି ଏ ଯାଏ ଆସିଚି ।

କରତାରେ : ତମର ମାନ ତୁଟିବ ନାହିଁ; ଧୈର୍ଯ୍ୟ ଧର ।

ବିରସା : (ଖଟ ଉପରେ ବସିପଡ଼ି) ସଲମା ପାକିସ୍ତାନ ଯିବାକୁ ଚାହେଁନା । ଆଉ ମତେ ଯଦି ପୋଲିସ ଧରି ନେଇଯାଏ, ତେବେ ତା' ପାଇଁ ରହିବାକୁ ଆଉ ଜାଗା ନାହିଁ ।

କରତାରେ : ସଲମା କିଏ ?

ବରଷା : ସେଇ ବଡ଼ ଗାଆଁ ର ସଉଦୁର ଝିଅ—ଯିଏ ଗଣ୍ଡଗୋଳ ବେଳେ ଟୋକାମାନଙ୍କ ହାତରେ ପଡ଼ିଥିଲା ।

କରତାରେ : (ଆଖି ଛଳଛଳ କରି) ସଲମା ଭଳି ଭଗବାନ ଆଉ କାହାକୁ ଯନ୍ତ୍ରଣା ନ ଦିଅନ୍ତୁ । ମନେପଡ଼ିଲେ କଲଜା ଥରିଉଠୁଚି ।

ବରଷା : ରାଉଲପିଣ୍ଡିରୁ ଆସିଥିବା ଲୋକମାନେ ଏମିତିଆ କଥା କହିଲାବେଳେ ମୋର ବିଶ୍ୱାସ ହେଉନଥିଲା । ବନ୍ଧୁ ପଡ଼ୋଶୀର ଝିଅ-ଭଉଣୀଙ୍କର ପଟୁଆର ବାହାର କରିବା, ସେମାନଙ୍କୁ ଛେଳି-ଗୋରୁଙ୍କ ଭଳି ବିକିବା ଆଉ କାଟିବା—ଏସବୁ ମତେ ବଡ଼ୁତ ଖରାପ ଲାଗୁଥିଲା । ମାତ୍ର ସଲମା ସାଙ୍ଗରେ ସେସବୁ ହିଁ ମୋ ସାମ୍ନାରେ ହେଲା ।

କରତାରେ : ତମରି ଆଗରେ ? ଆଉ ତମେ ଚୁପ୍‌ଚାପ୍ ଦେଖୁଥିଲ ବରଷା ? ତମେ କୌଣସି ବଦମାସ୍‌କୁ ଅଟକେଇଲନି ? କାହାରି ହାତଟାଏ ଭାଙ୍ଗି ଦେଇପାରିଥାଆନ୍ତ !

ବରଷା : ମୋ ଶକ୍ତି କୁଲେଇଥିଲେ ମୁଁ ସବୁ କିଛି କରିଥାଆନ୍ତି । ମାତ୍ର ଚକଟି ହେଇଥିବା ସାପ ଭଳି ମୁଁ ବିଷ ଗ୍ରୁଡ଼ିବା ବ୍ୟତୀତ କିଛି କରିପାରିଲି ନାହିଁ । ଏଇ ଦେଖ (ନିଜ ଦେହକୁ ଖୋଲିକରି ଦେଖାଇ), ସଲମାର ଇଜ୍ଜତ ବଞ୍ଚାଇବା ପାଇଁ ମୁଁ ସେଇ ଉଗ୍ର ପାଗଳ ଲୋକଙ୍କ ଉପରକୁ ଲମ୍ଫ ଦେଲି । କିନ୍ତୁ ସେମାନେ ମିଳିମିଶି ମତେ ଖୁବ୍ ପିଟିଲେ । ଜଞ୍ଜିରରେ ବାନ୍ଧି ଅଶ୍ୱତ୍ଥ ଗଛରେ ଛାଡ଼ିଦେଲେ । ସଲମାକୁ ବାପ ଏବଂ ଭାଇଙ୍କ ସାମ୍ନାରେ ସେମାନେ ସବୁ କିଛି କଲେ, ଯାହା ମୁଁ କହିପାରିବି ନାହିଁ । କୌଣସି ଭାଇ କି କୌଣସି ବାପ ସେ ଦୃଶ୍ୟ ଦେଖି ପାରି ନ ଥାନ୍ତେ ।...... ସେମାନେ ସଲମାର ମାଂସକୁ ଛିନ୍‌ଭିନ୍ କଲେ—ପାଗଳ କୁକୁରଙ୍କ ଭଳି, ଭୋକିଲା ଶାଗୁଣାଙ୍କ ଭଳି । ସଲମାର ସ୍ୱାମୀକୁ ସବୁଦିନ ପାଇଁ ହତ୍ୟା କରିଦିଆଗଲା । ଉଡ଼ନ୍ତା ସାପକୁ ଦୁଧ ପିଆଇବା ନାଁରେ ସେମାନେ ସବୁଦିନ ଲାଗି ହତ୍ୟା କରିଦେଲେ ।

(କରତାରେ ଲୁହ ପୋଛିଲା)

କେତେ ଥର ତାକୁ ବିକା ହେଲା । କେତେ ଥର ତା' ପ୍ରତି ଦୁର୍ବ୍ୟବହାର କରାଗଲା । ଆଉ ପୁଣି ଗୋଟାଏ ଘଟକୁ ପକେଇଦେଇ ତାକୁ ଅଚେତ କରିଦିଆଗଲା ।

ଗଲା ରବିବାର ଦିନ ସନ୍ଧ୍ୟାରେ, ମୁଁ ଯେତେବେଳେ ପଶୁମାନଙ୍କ ପାଇଁ ଘାସ ଧରି ଲାଲୁବାଜ୍ ଗାଆଁ ପାଖ ଦେଇ ଯାଉଥିଲି, କେହି ଜଣେ କୂଅରେ ପଡ଼ିଯିବାର ଶୁଣାଗଲା । ମୁଣ୍ଡର ବୋଝକୁ ସେଇଠି ପକେଇ ଯେତେବେଳେ ମୁଁ ନଇଁପଡ଼ି କୂଅକୁ ଚାହିଁଲି—ଦେଖି ଅନୁମାନ କଲି କୌଣସି ମଣିଷର ଶରୀର । ମୁଁ ଡେଇଁପଡ଼ିଲି ଆଉ ସେଇ ବୁଡ଼ିଯାଉଥିବା ସ୍ତ୍ରୀଲୋକକୁ ବାହାରକୁ ଆଣି ଯେତେବେଳେ ଦେଖିଲି, ଅବାକ୍ ହେଇଗଲି । ସେ ଥିଲା ସଲମା ।

କରତାରେ : ସଲମା !

ବରସା : ସେ ଠିକ୍‌ରୂପେ ହୋସ୍‌ରେ ନଥିଲା । ମାତ୍ର ହୋସ୍ ଆସିଲାମାତ୍ରେ ସେ ଉଠିପଡ଼ି ପୁଣି କୂଅ ଆଡ଼କୁ ଦଉଡ଼ିଲା । ମୁଁ ତାକୁ ଜୋର୍-ଜବରଦସ୍ତ ଅଟକାଇଲି—'ତୁ ଏବେ କୁଆଡ଼େ ଯାଇ ପାରିବୁନି ସଲମା ! ମୁଁ ତତେ ରକ୍ଷା କରିବି । ତତେ ତୋର ମାଆ-ବାପାଙ୍କ ପାଖରେ ପହଞ୍ଚେଇଦେବି । ମୁଁ କହୁଥିଲି ଏସବୁ; କିନ୍ତୁ ସେ ବଂଚିରହିବାକୁ ଚାହୁଁ ନ ଥିଲା । ସେ ନିଜର ସକଳ ଶକ୍ତି ଖଟେଇ ହାତ ଗୋଡ଼ ପିଟିଲା । ମୋ ହାତକୁ ଜୋର୍‌ରେ କାମୁଡ଼ି-ଦେଲା; କିନ୍ତୁ ମୁଁ ତାକୁ ଛାଡ଼ିଲି ନାହିଁ ।

କରତାରେ : ତା'ପରେ ?

ବରସା : ମୁଁ କହିଲି, ଏଇ ଦୁନିଆରେ ଯେଉଁଠି ତୋ ଉପରେ ପ୍ରବଳ ଅତ୍ୟାଚାର ହୋଇଛି—ସଲମା ! ସେଇଠି ମୁଁ ତୋତେ ନ୍ୟାୟ ଦେବାକୁ ଚାହେଁ । ତୋ ପ୍ରତି ଦୁର୍ବ୍ୟବହାର କରିଥିବାଲୋକଙ୍କ ମୁଣ୍ଡ କାଟି ମୁଁ ତୋର ପାଦ ତଳେ ଆଣି ରଖିଦେବି । ତୋ'ର ମାଂସ କାଟିଥିବା ଜାନୁଆରଙ୍କ ମୁଣ୍ଡକୁ ତୋ'ର ଜୋତାରେ ପିଟିବି । ମୁଁ ତୋ'ର ହାତ ଧରିବି—ତୋର ଭାଇ ସାଜି, ତୋର ସ୍ୱାମୀ ସାଜି । ଯେଉଁ ରୂପରେ ମତେ ତୁ ଇଚ୍ଛାକରୁ, ସ୍ୱୀକାର କରି-ନେଇପାରୁ । ତୋର ପାଇଁ ମୁଁ ସାରା ଜଗତ ସାଙ୍ଗରେ ଟକ୍କର ଦେଇପାରିବି । ତୁ ମତେ ଆପଣାର କରି ଦେଖ୍, ପରୀକ୍ଷା କରିଦେଖ୍ ।

କରତାରେ : ସେ କ'ଣ ରାଜି ହୋଇଥିଲା ?

ବରସା : ରାଜିହେଲା ଯେ···କିନ୍ତୁ ଏକ ଜିଦ୍ଖୁ ର ସର୍ତ୍ତ ସହିତ ।

କରତାରେ : କି ସର୍ତ୍ତ ?

ବରସା : କାହା ପ୍ରତି ପ୍ରତିଶୋଧ ନିଆଯିବ ନାହିଁ, କାହାକୁ ହତ୍ୟା କରାଯିବ ନାହିଁ । ତା'ପ୍ରତି ଅତ୍ୟାଚାର କରୁଥିବା ଲୋକେ ଅଲଗା କେହି ନୁହନ୍ତି ।

କରତାରେ : ଅଲଗା ନୁହନ୍ତି ?

ବରସା : ହଁ, ଜାଣେନା, ତା' ହୃଦୟ କୋଉ ଉପାଦାନରେ ଗଢ଼ା କେଜାଣି ? ଯେଉଁ ଲୋକମାନେ ତା' ଶରୀରକୁ କାଟି କାଟି ଖାଇଲେ, ତାଙ୍କର ରକ୍ତପାତ ହେଉ—ସେ ଦେଖିବାକୁ ଚାହେଁନାହିଁ । ତାଙ୍କୁ ଦଣ୍ଡ ଦେବାକୁ ସେ ପ୍ରସ୍ତୁତ ନୁହେଁ । କହୁଛି, 'ତାଙ୍କୁ କେବଳ ଲଜ୍ଜିତ କରିବ । ସାତପୁରୁଷ ପର୍ଯ୍ୟନ୍ତ ତାଙ୍କର କେହି ମୁଣ୍ଡଟେକି ଗାଁରେ ଚାଲିପାରିବେ ନାହିଁ ! ମୁଁ ସଲମାର ଏ ସପନକୁ ପୂର୍ଣ୍ଣ କରିବାକୁ ଚାହେଁ । କିନ୍ତୁ ମୋର ଚିନ୍ତା ହେଉଛି, ପୁଲିସକୁ ଆଉ ଏହାର ସୂଚନା ମିଳିଯିବନି ତ ! ଏତେବେଳେ ତମ ବ୍ୟତୀତ ଆଉ କେହି ଆଶ୍ରା ଦେଲାବାଲା ନାହିଁ, ଭାଉଜ !

କରତାରେ : ମୁଁ ସବୁପ୍ରକାର ତମୁକୁ ସାହାଯ୍ୟ କରିବି । ତମେ ଯାହା କହିବ, ତାହା କରିବି ।

ବରସା : କେହି ଜାଣନ୍ତୁନି ସଲମା ମୋ ପାଖରେ ଅଛି । ମାତ୍ର କଥାରେ କହନ୍ତିନ, 'କାନ୍ଥର ବି କାନ ଅଛି' ।

ଜୀତା : ମତେ ସିପେଇଗୁଡ଼ାଙ୍କ ଡର ମାଡ଼େ । ଆଉ ମତେ ବ ଖୁବ୍ ଭୋକ କଲାଣି ।

କରତାରେ : କିଆଁ ଲାଗୁ ତୋ ଭୋକ ମୁହଁରେ ! ତୋ ଭିତରେ କୋଉ ଡାଆଣୀ ପଶିଛ କି ?

ଜୀତା : ମୁଁ ଆମ୍ବୁ ଖାଇବ ମାଆ ?

କରତାରେ : ଖା, ମୁଁ ଆଉ ଗୋଟା କାହାକୁ ଗୁରୁଦ୍ୱାର ପଠାଉଚ ।

(ଜୀତା ବସି ଆମ୍ବୁ ଖାଇବାରେ ଲାଗିଲା । କରତାରେ ପିଢ଼ା ଉପରେ ବସିପଡ଼ିଲା । ଜଣେ ସିପାହି ଭିତରକୁ ଆସିଲା । ଜୀତା ଭୟଭୀତ ହୋଇଗଲା ।)

ଜୀତା : ମାଆ, ସିପେଇ !

(ଆମ୍ବୁ ପକାଇ ଦେଇ ଜୀତା ଭୟରେ ଘର ଭିତରକୁ ପଶିଗଲା । ସିପାହିକୁ ଦେଖି କରତାରେର ରଙ୍ଗ ଫିକା ପଡ଼ିଗଲା ।)

ସିପାହି : ଖଡ଼କୁ ସିଂହର ଘର ଏଇଟା ତ ?

କରତାରେ : ହଁ ।

ସିପାହି : ସେ କାହିଁ ?

କରତାରେ : କୂଅ ମୂଳକୁ ଯାଇଛନ୍ତି ।

ସିପାହି : ଏ ଘରେ ଆଉ କେହି ତ ରହନ୍ତି ନାହିଁ ?

କରତାରେ : ନା ।

ସିପାହି : କୂଅ ମୂଳରୁ ଖଡ଼କୁ ସିଂହକୁ ଯାଇ ଶୀଘ୍ର ଡାକ ଆଣ ।

କରତାରେ : କଥା କ'ଣ ?

ସିପାହି : ତା' ସାଙ୍ଗରେ କଥାବାର୍ତ୍ତା ଅଛି ।

କରତାରେ : ସେ ତ କେବେ କୌଣସି ଖରାପ କାମ କରନାହାନ୍ତି । ଲୁଟ୍-ମାର ବି ସେ କେବେ କରନାହାନ୍ତି । କେବେ ତ ମଦ ଘାନ୍ଧ ନାହାନ୍ତି । ତାଙ୍କ ସହ କୋଉ କଥାବାର୍ତ୍ତା କରିବେ ?

ସିପାହି : ମୁଁ କହୁଚ, ଖଡକୁ ସିଂହକୁ ଶୀଘ୍ର ଡକାଅ । କଥା ପରେ କହିବ ।

କରତାରେ : ଜୀତୁ ! ଆ ଜୀତୁ !!

ସିପାହି : (ରାଗରେ) ଆବେ ଜୀତୁ, ବାହାରକୁ ଆ ! ଶୀଘ୍ର ।

(ଜୀତା ଭୟଭୀତ ହୋଇ ହାତଯୋଡ଼ି ବାହାରଆସିଲା ।)

ଜୀତା : ମୁଁ କେବେହେଲେ ମଦ ପିଏ ନାହିଁ ସିପାହି ମହାଶୟ—ମୁଁ ତ ଆମ୍ବୁ ଖାଉଥିଲି ।

ସିପାହି : ଶୀଘ୍ର ଯାଇ କୂଅ ଭିତରୁ ତୋ ବୋପାକୁ ବାହାର କରି ଆଣ ।

ଜୀତା : ମୋ ବାପା ମଧ୍ୟ ମଦ ପିଅନ୍ତି ନାହିଁ ସିପାହି ମହାଶୟ ! ବୈଶାଖି ପର୍ବ ଦିନ ବ

ସେ ପିଅନ୍ତି ନାହିଁ ।

ସିପାହି : ଆବେ ଶଳା, ମୁଁ କହୁଚ ତୋ ବୋପାକୁ ଡାକିଆଣ । ଶୀଘ୍ର ଯା ।

ଜୀତା : ଯାଉଚ ଆଜ୍ଞା !

ସିପାହି : ଦୌଡ଼ି ଦୌଡ଼ି ଯା । ପଳେଇ ଯା ଶୀଘ୍ର । ଯଦି ଡେରି କରିବୁ ପିଟା ହେବ । (ଜୀତା ସିପାହି ଆଡ଼କୁ ଚାହିଁଲା ।)

ସିପାହି : ଆବେ, ଏତେବେଳଯାଏ ଏଇଠି ଠିଆ ହେଇ ବଲେଇ ଭଳି ଚାହିଁଚୁ ।

ଜୀତା : ଗୁରୁଦ୍ୱାରଠାରେ ଆହୁରି ଗୁଡ଼ାଏ ସିପେଇ ଅଛନ୍ତି । ସେମାନେ ମତେ ଧରିନେଇ-ଯିବେ ।

ସିପାହି : କେହି ତତେ ଧରିବେ ନାହିଁ । ମୁଁ ଯାହା କହିଲି ସେଇଆ କର । ଶୀଘ୍ର ଦଉଡ଼ ଯା । (ଜୀତା ଦଉଡ଼ ଦଉଡ଼ ଗଲା ।)

କରତାରେ : ଲସି ପିଇବେ ଜମାଦାର ସାହେବ ?

ସିପାହି : ହଁ, ଲସି ପିଇ ହେବ ।

କରତାରେ : ଖଟ ଉପରେ ବସିଯାଆନ୍ତୁ ।

(କରତାରେ ଶ୍ରେଷେଇ କରିବାରେ ଲାଗିଗଲା । ସିପାହି ଖଟ ଉପରେ ବସି ଇଆଡ଼େ-ସିଆଡ଼େ ଚାହିଁଲା । କରତାରେ ଲସି ପାତ୍ର ଆଣି ତାକୁ ଦେଲା । ତା' ଭିତରେ ଲହୁଣୀ ଭାସୁଥିଲା ।)

ସିପାହି : (ଲହୁଣୀକୁ ପାଟିରେ ପକାଇ) ଖଡ଼କୁ ସିଂହ ତମର କ'ଣ ହୁଅନ୍ତି ?

କରତାରେ : ଆଜ୍ଞା, ସେ ମୋ ଘରମଣିଷ ।

ସିପାହି : ତମ ନାଁ କ'ଣ ?

କରତାରେ : ଆଜ୍ଞା, କରତାରେ କାଉର ।

ସିପାହି : (ଲସି ପିଇ) ବଡ଼ ଗାଁରେ ଆମେ ଦଇଟା ଝିଅଙ୍କୁ ସନ୍ଧାନ କରିଚୁ ।

କରତାରେ : ଦଇଟା ଝିଅ ?

ସିପାହି : ହଁ । ଆଉ ଏଠି ଗୋଟାଏ ଝିଅ ଥିବାର ଖବର ମିଳିଚ ।

କରତାରେ : କେମିତି ?

ସିପାହି : ଗାଆଁରୁ କେହି ରିପୋର୍ଟ ଦେଇଚ । ଆମେ ତ ଆଉ ସପନ ଦେଖୁନୁ ?

କରତାରେ : ସେ ଝିଅଟି କିଏ ?

ସିପାହି : ଥାନାଦାର ଏବେ କହୁଥିଲା । ମୁଁ କହି ପାରିବି ନାହିଁ । (ବ୍ୟଙ୍ଗକରି) ଏଠି କେହି ନାହାନ୍ତି ତ ?

(ଦରଜାରେ ଆବାଜ ହେଲା । କରତାରେ ବ୍ୟସ୍ତ ହେଇ ଦରଜା ପର୍ଯ୍ୟନ୍ତ ଧାଇଁଗଲା । ଜୀତା ଭିତରକୁ ଆସିଲା ।)

କରତାରେ : ଆରେ ତୁ ଗଲୁନି ? ମର ଯାଉନୁ ତୁ !

ଗୀତା : ମତେ ସିପେଇମାନଙ୍କୁ ଦେଖି ଡର ମାଡ଼ୁଚି ।

ସିପାହି : ସିପେଇମାନେ ଭୂତ ନୁହନ୍ତି ରେ ଗଧ ! ଚାଲ, ତତେ ବଳେଇ ଦେଇ ଆସୁଚି । କରତାରେ କାଉର ! ଖଡ଼କୁ ସିଂହ ଆସିଲା ମାତ୍ରେ ବାହାର ଗୁରୁଦ୍ୱାରକୁ ପଠାଇଦବ ।

କରତାରେ : ଠିକ୍ ଅଛୁ ଆଜ୍ଞା !

(ଗୀତା ଓ ସିପାହି ବାହାରକୁ ଚାଲିଗଲେ । ସଲମା ଅରଖ ଗଛର ବୋଝ ମୁଣ୍ଡରେ ଧରି ଭିତରକୁ ଆସିଲା । କରତାରେ ଝଟାପଟ୍ ଭିତରୁ ଶିକୁଳି ଲଗାଇଦେଲା । ସଲମା ବୋଝ ପକେଇ ଦେଇ ଇଆଡକୁ ସିଆଡ଼କୁ ଦେଖିଲା ।)

କରତାରେ : ଈଶ୍ୱର ପର୍ଦ୍ଦା ପକେଇଦେଲେ ଲୋ ସଲମା ! ତୁ ଟିକିଏ ଆଗରୁ ଆସି ଯାଇଥିଲେ ନା ସାରା ଚହଟାନ୍ତି ପଦାରେ ପଡ଼ିଯାଇଥାଆନ୍ତା ।

ସଲମା : ମୋ ଛାତି ତ ଏବେ ବି ଦୁଲୁକୁଚି । ଏହାଠାରୁ ଭଲ ହୋଇଥାଆନ୍ତା ମୁଁ ଯଦି କପା କ୍ଷେତରେ ରହିଯାଇଥାନ୍ତି ।

କରତାରେ : ତୁ ଏବେ ଚିନ୍ତା କରନା । ତତେ ଆଉ ଏଠି କେହି ଦେଖିପାରିବେ ନାହିଁ ।

ସଲମା : ପୁଲିସ ସବୁଘର ତଲାସ କରିବ ।

କରତାରେ : ହଁ, ଏଠିକି ବି ପୁଲିସବାଲା ନିଶ୍ଚୟ ଆସିବେ ।

ସଲମା : ତା'ହେଲେ ମୁଁ କ'ଣ କରିବି ?

କରତାରେ : ଏ କୋଠରି ପଛକୁ ଆଉ ଏକ ଛୋଟିଆ କୋଠରି ଅଛି । ସେଠି ଘାସି ରହିଛି । ତୁ ସେଇ ଘାସିଗଦା ପଛରେ ଲୁଚିଯାଆ । ମୁଁ ତୋ ଉପରେ ଘାସି ବିଛେଇଦେବି ।

ସଲମା : ତେବେ ଆସ ଭଉଣୀ, ଶୀଘ୍ର । ମୋର ପୋଲିସକୁ ବହୁତ ଡର ।

କରତାରେ : ତତେ ଗୋଟାଏ କଥା ପଚାରିବି ?

ସଲମା : ଶୀଘ୍ର ।

କରତାରେ : ପାକିସ୍ଥାନରେ ଥିବା ତୁ ତୋର ବାପ-ମାଆଙ୍କ ପାଖକୁ ଚାଲିଯାଉନୁ କାହିଁକି ?

ସଲମା : (ଚମକିପଡ଼ି) ତମେ ଏସବୁ କ'ଣ କହୁଚ ଭଉଣୀ ? ତମର ଉଦ୍ଦେଶ୍ୟ କ'ଣ ? ତମେ ମତେ ଆଉ···

କରତାରେ : ନା-ନା । ସେମିତି କିଛି ନୁହେଁ ମ ! ମୁଁ କରସା ସିଂହକୁ କଥା ଦେଇଚି ତତେ ରକ୍ଷା କରିବି । କିନ୍ତୁ ମୁଁ ହେଲି ମାଇପିଲୋକ । ତୋ ପ୍ରତି ମୋ ମନରେ ଦୟା ଆସିଚି । ମୁଁ ଭାବିଲି, ସାହସ କରେ । ଆଚ୍ଛା, ତୁ ନିଜ ଇଚ୍ଛାରେ ଏଠି ରହିବାକୁ ଚାହୁଁଚୁ କି ନାହିଁ ?

ସଲମା : ବାପ-ମା'ଙ୍କ ପାଖକୁ କୋଉ ମୁହଁ ନେଇ ଯିବି ? ସେମାନଙ୍କ ଆଖିକୁ ମୁଁ କେମିତି ଚାହିଁପାରିବି ? କିଏ ମତେ ବିବାହ କରିବାକୁ ଇଚ୍ଛା କରିବ ? ମୋ ପେଟରେ ବଢି ଉଠିଥିବା ପାପକୁ କିଏ ପଣତରେ ବାନ୍ଧିନେବ ? କୋଉ ଶାଶୁ ମତେ ଆଦର କରିବ ? କୋଉ ନଣନ୍ଦ ମତେ ହାଡ଼ଜଳା ଉଲୁଗୁଣା ନ ଦେବ ? କୋଉ ଜାତି, ସମାଜ ମୋ ନାକ ନ କାଟି ଛାଡ଼ିବ ? କୋଉ ପିଲା ମୋ ଭଳି ମାଆ ଲାଗି ଗର୍ବ କରିବ ?

କରତାରେ : ଏଥିରେ ତୋର ଅବା ଦୋଷ କ'ଣ ? ତା'ଛଡ଼ା ତୁ ଏଠି ରହିକରି କ'ଣ ଆଦର ପାଇ ପାରିବୁ ?

ସଲମା : ମୁଁ ବଞ୍ଚିବାକୁ ଚାହେଁନା । ମାତ୍ର ନ ଚାହିଁ କରି ମଧ୍ୟ ମତେ କିଛି ଦିନ ବଞ୍ଚି-ରହିବାକୁ ପଡ଼ିବ ।

କରତାରେ : କୋଉଥିପାଇଁ ?

ସଲମା : ସେଇଥିପାଇଁ—ଯେଉଁମାନଙ୍କ କଳା କର୍ମର ଫଳକୁ ମୁଁ ମୋ ପେଟରେ ପୋଷୁଚି, ଏ କଳଙ୍କ ସେଇମାନଙ୍କ ମଥାରେ ଲଗାଇଦେବି । ତାଙ୍କର ସ୍ତ୍ରୀ ଏବଂ ପିଲାମାନେ ସେମାନଙ୍କ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ତାଙ୍କୁ ବେଇଜତ୍ କରନ୍ତୁ । ସେମାନଙ୍କ ନିର୍ଦ୍ଦୋଷତାର ଚାଦର ଦେହରେ ପାପର ଦାଗ ଲଗାଇ ଛାଡ଼ିବି ।

କରତାରେ : ନାରୀମାନଙ୍କ ମଧ୍ୟରେ ତୁ ହୀରା ଖଣ୍ଡେ ଲୋ ସଲମା ! ତୋ ପାଇଁ ମୁଁ ସବୁକିଛି କରିବାକୁ ପ୍ରସ୍ତୁତ ଅଛି ।

ସଲମା : ତା' ହେଲେ ମତେ ଟିକେ ଜଲଦି ଲୁଚେଇ ଦିଅ । କଥା ହେବାକୁ ତ ଆଉ ଅନ୍ୟ ବେଳ ଅଛି ।

କରତାରେ : ଭିତରକୁ ଚାଲ ।

(କରତାରେ ଓ ସଲମା କୋଠରି ଭିତରକୁ ଗଲେ । ବାହାର ଦରଜାରେ ଆବାଜ ହେବାକୁ ଲାଗିଲା । କରତାରେ ଭସ୍ତ-ବିବ୍ରତ ହୋଇ ବାହାରକୁ ଚାଲିଆସିଲା । କୋଠରିର କବାଟ ବନ୍ଦକରି ବାହାର ଦରଜାର ଶିକୁଳି ଖୋଲିଲା । ଖଡ଼କ ସିଂହର ପ୍ରବେଶ ।)

ଖଡ଼କ : ଘରକୁ ଆମର ସିପେଇ ଆସିଥିଲା କି ?

କରତାରେ : ହଁ । ଜୀତା ଯାଙ୍ଗରେ ତମର ଭେଟ ହେଲା ?

ଖଡ଼କ : ନା ।

କରତାରେ : ଭଲ ହେଲା । ପୁଲିସ ଆମଠୁଁ କ'ଣ ଚାହୁଁଚି କେଜାଣି ?

ଖଡ଼କ : ନମ୍ବରଦାର ପାଖକୁ ଯାଇଥିଲି । ତାଙ୍କର ଦେଖା ହେଲା ନାହିଁ । ବୁଝିପାରୁନି, କଥା କ'ଣ ?

କରତାରେ : କିଏ କ'ଣ ରିପୋର୍ଟ କରିବ କି ?

ଖଡ଼କ : ଆଉ [illegible] କିଏ [illegible] ରିପୋର୍ଟ କଲା ।

କରତାରେ : ମିଥ୍ୟା କଥାକୁ ଲୋକ ଫାନ୍ଦଫୁନ୍ଦ ଦେଇଥିବେ ।

(ଥାନାଦାର ଓ ସିପାହିଙ୍କର ପ୍ରବେଶ)

ଥାନାଦାର : ତମ ନାଁ ଖଡ଼କ ସିଂହ ?

ଖଡ଼କ : ହଁ ଆଜ୍ଞା ! ଆସନ୍ତୁ, ବସନ୍ତୁ ହଜୁର ! ଖଟ ଉପରେ··· ।

ଥାନାଦାର : ଆମ ପାଖରେ ବସିବାକୁ ସମୟ ନାହିଁ । ଇଏ କିଏ ?

ଖଡ଼କ : କରତାର କାଉର, ଆଜ୍ଞା ! ମୋର ସ୍ତ୍ରୀ, ମୋ ଘରଲୋକ ।

ଥାନାଦାର : (ବ୍ୟଙ୍ଗକରି) ସ୍ତ୍ରୀ ? ହୁଁ ! ତା' ପୂର୍ବରୁ କ'ଣ ଥିଲା ?

ଖଡ଼କ : ବିବାହ ଆଗରୁ ?

ଥାନାଦାର : ହଁ । ଇଏ କୋଉ ଗାଆଁ ର ?

ଖଡ଼କ : ଠିକେଦାରିବାଲର, ଆଜ୍ଞା !

ଥାନାଦାର : (ଖୁସି ହୋଇଉଠି) ବାହାରପଡ଼ିଲାନା କଥା ! ଏହାର ବାପା ନାଁ କ'ଣ ?

ଖଡ଼କ : (ଭୟଭୀତ ହୋଇ) କିନ୍ତୁ ଆପଣ ଏସବୁ କାହିଁକି ପଚାରୁଛନ୍ତି ?

ଥାନାଦାର : ଯାହା ପଚାରୁଚି, ଜବାବ ଦେ । ଏହାର ବାପା ନାଁ କ'ଣ ?

ଖଡ଼କ : ମତେ ଜଣା ନାହିଁ ଆଜ୍ଞା !

ଥାନାଦାର : ଠିକ୍ କରି କହ । ନ ହେଲେ ତତେ ବି ସାଙ୍ଗରେ ନେଇଯିବି ।

ଖଡ଼କ : ମତେ, ଆଜ୍ଞା !

ଥାନାଦାର : ଆଉ କ'ଣ ? ମୋ ସାଙ୍ଗରେ ଖେଳକି ଦେଖଉଚୁ ? କହ, ତୋ ସ୍ତ୍ରୀ କରତାରେ ନୁରଦୀନ୍ କମାରର ଝିଅ ବରକତ୍ କି ନୁହେଁ ?

ଖଡ଼କ : କିନ୍ତୁ ଆଜ୍ଞା, ଆମ ବାହାଘର ତ···

ଥାନାଦାର : ତୋ ବାହାଘର ଏଇଠି ସେଇଠି···· । ହଁ କି ନାହିଁ ଉତ୍ତର ଦେ । ଇଏ ନୁରଦୀନ୍‌ର ଝିଅ ବରକତ୍ କି ନୁହେଁ ?

ଖଡ଼କ : ତାଙ୍କ ଝିଅ ଯେ—। କିନ୍ତୁ ଇଏଁ ତ ପରେ ଅମୃତଲଗ୍ନା ହୋଇଥିଲା ।

ଥାନାଦାର : ଅମୃତ ତ ସମସ୍ତଙ୍କଠେଇଁ ଲଗେ । ମାତ୍ର ଆମକୁ ହୁକୁମ ଆସିଚି, ଏହାକୁ ନେଇ ତା' ମା-ବାପଙ୍କ ପାଖରେ ପାକିସ୍ତାନରେ ଛାଡ଼ିବାକୁ ହେବ ।

ଖଡ଼କ : ହେଲେ ହଜୁର, ଇଏ ତ ଦଶବର୍ଷ ହେଲା ମୋ ଘରେ ଅଛି । ଏହାଠାରୁ ତ ମୋ ପୁଅ ଜୀତାର ଜନ୍ମ—ଆଠ ବର୍ଷର ହେଲାଣି ।

ଥାନାଦାର : ଏ କଥାର ଫଇସଲା ଥାନାରେ ହେବ । ତମର ଗାଆଁ ରୁ ରିପୋର୍ଟ ହୋଇଚି କରତାରେ ଗୋଟାଏ ଉଧୁଲିଆ ଝିଅ—ଉଡ଼େଇ ଆଣିଥିବା ମାଇକିନିଆ ।

ଖଡ଼କ : (କିଂକର୍ତ୍ତବ୍ୟବିମୂଢ଼ ହୋଇ) ଉଧୁଲିଆ ? ଉଡ଼େଇ ଆଣିଥିବା ମାଇକିନିଆ ?

କରତାରେ : (ମିନତି କରି) ମୁଁ ଉଧୁଲିଆ ଝିଅ ନୁହେଁ ଆଜ୍ଞା ! ହଜୁର, କୋଉ ବଦମାସ

ଭୁଲ କଥାଗୁଡ଼ା ଗପିଚ । ମତେ ଉଡ଼େଇ ଅଣାଯାଇନାହିଁ । ମୋ ବାପ-ମା'ଙ୍କୁ ଏସବୁ ଜଣା ଅଛି । ମୁଁ ନିଜ ଇଚ୍ଛାରେ···

ଥାନାଦାର : ଚୁଣ୍ଡାଲୀ ! ବେଶି ପାଟିତୁଣ୍ଡ କରନା । ଗୃହଟା ଦିନ ଜାଠଘରେ ରହିଯାଇ ଚୌଧୁରାଣୀ ପାଲଟିଯାଇଚ । ଫୌଜା ସିଂହ, ଉଠା ଯାକୁ ଟ୍ରକରେ ।

(ଫୌଜା ସିଂହ ସିପାହି ଥାନାଦାରଙ୍କୁ ସାଲ୍ୟୁଟ୍ କରି କରତାରେର ବାହାକୁ ଧରିନେଲା । କରତାରେ ଛଡ଼େଇବାକୁ ଚେଷ୍ଟାକଲା; କାନ୍ଦିଲା । ଖଟ ଉପରେ ଶୋଇଥିବା ପିଲାଟା କାନ୍ଦିଉଠିଲା । ଥାନାଦାର ନିଜର କଳା ବାଡ଼ିକୁ ନିଜର ଡାହାଣ ଗୋଡ଼ରେ ରଗଡ଼ୁଥିଲା । ଖଡ଼କ ଅବାକ୍ ହେଇ ଥାନାଦାର ମୁହଁକୁ ଦେଖୁଥିଲା ।)

ସିପାହି : ଏ ପିଲାଟା ବି ଯିବ ଆଜ୍ଞା !

ଥାନାଦାର : ତାକୁ ବି ନେଇଯିଲ; ତା' କୋଳରେ ଦେଇଦିଅ । ନଚେତ୍ ଆଉ ଥରେ ଆସିବାକୁ ପଡ଼ିପାରେ ।

ଖଡ଼କ : (ହାତଯୋଡ଼ି) ମୋ ପ୍ରତି ଦୟାକରନ୍ତୁ ହଜୁର ! ମୋ ଘର ଉଜୁଡ଼ିଯିବ ।

ଥାନାଦାର : (କ୍ରୋଧରେ ଗର୍ଜିଉଠି) ପିଲାଟାକୁ ଉଠେଇ ନେଇ ସେ ମାଇକିନିଆକୁ ଦେ । ଜଲଦି !

(ଖଡ଼କ ସିଂହ ଲୁହ ପୋଛି ପିଲାଟିକୁ ଉଠାଇଲେ । କରତାରେ କହିଁକହିଁ ହୋଇ କାନ୍ଦୁଥିଲା ।) □□□

## ପାତ୍ର

ମିସ୍ ଗୁରଚରଣ : ବୟସ ୨୪ ବର୍ଷ
ମିସ୍ ରଜିନ୍ଦର : ବୟସ ୨୩ ବର୍ଷ
ମିଷ୍ଟର ସନ୍ଧୁ : ବୟସ ୨୪ ବର୍ଷ

[ ଲମ୍ବା ପାତଳଦେହା ମିସ୍ ଗୁରଚରଣ ଆଟାଚ କେଶ୍‌ରେ ଲୁଗା ରଖୁଥାନ୍ତି । କୋଠରର ଗୋଟାଏ କଡ଼କୁ ଦୁଇଟା ଟ୍ରଙ୍କ ଏମିତଭାବେ ରଖାହୋଇଛି, ଯେମିତ କ ବାହାରକୁ ନେଇ ଯିବାର ଅଛି । ଗୋଟିଏ ଟେବୁଲ୍‌ର ଦୁଇପଟେ ଦୁଇଟି ଚଉକ ପଡ଼ିଛି । ଡାହାଣ ପଟ କାନ୍ଥ ଆଡ଼କୁ ଆଉ ଦୁଇଟା ଚଉକ ରଖାହୋଇଛି । ବୁକ୍‌ସେଲଫ୍ ଉପରେ ରଖାହେଇଥିବା ଛବରେ ମିସ୍ ଗୁରଚରଣ ଓ ମିସ୍ ରାଜନ୍ଧର ପରସ୍ପରର କାନ୍ଧରେ ହାତ ରଖିଛନ୍ତି । ଅଣ୍ଡା ପଡ଼ୁଥିବା ଯୋଗୁ ବାହାରର କବାଟ ଝରକା ବନ୍ଦ ଅଛି ।

କିଛି ସମୟ ପରେ ଦୀର୍ଘ ପାତଳ ଶରୀରର ମିସ୍ ରାଜନ୍ଧର ବାହାର ପଟ ଦରଜା ଦେଇ ଦ୍ରୁତ ପଦକ୍ଷେପରେ ଭିତରକୁ ଆସିଲେ । ତାଙ୍କର ପରିଧାନ ବିଲକୁଲ ମିସ୍ ଗୁରଚରଣଙ୍କ ଭଳି । ମିସ୍ ଗୁରଚରଣ କାମ ଛାଡ଼ି ତାଙ୍କ ଆଡ଼କୁ ଗଲେ ।]

ରାଜନ୍ଧର : ମୋ ଆସିବାଟା ବେଶି ସମୟ ଲାଗିନ ତ ?

(ହାତରେ ବନ୍ଧାହୋଇଥିବା ଘଣ୍ଟା ଦେଖିଲେ ।)

ଗୁରଚରଣ : (ଟିକିଏ ହସି) ତୋର ଆସିବା ବହୁତ ଡେରି ହେଲା ଲୋ ବଉଳ !

ରାଜନ୍ଧର : ମୋଟେ ଅଧଘଣ୍ଟା ତ ଲାଗିଲା ।

ଗୁରଚରଣ : ନା, ଅଧା ଯୁଗ ଲାଗିଗଲା ।

ରାଜନ୍ଧର : ଚନ୍ନୀ !

(ତାକୁ କୁଣ୍ଢାଇ ଧରିଲା ।)

ଗୁରଚରଣ : (ଭଙ୍ଗା କଣ୍ଠରେ) ତୋ ବିନା ମୁଁ କେମିତ ବଂଚବି ଲୋ ବଉଳ ?

ରାଜନ୍ଧର : ବ୍ୟସ୍ତ ହଅନା ଚନ୍ନୀ ! ମୁଁ ତ ତୋ'ର ସାଙ୍ଗରେ ଯାଉଚ ।

(ଗୁରଚରଣ ହଠାତ୍ ତା'ଠାରୁ ଅଲଗା ହୋଇଗଲା ।)

ଗୁରଚରଣ : ତୁ···ମୋ ସାଙ୍ଗରେ···ଯାଉଚୁ···!! (ହଠାତ୍ ଖୁସି ହେଇପଡ଼ି)···କ'ଣ ପ୍ରିନ୍‌ସିପାଲ ରାଜି ହୋଇଗଲା ?

ରାଜନ୍ଧର : ନା, ମୁଁ ଇସ୍ତଫା ଦେଇ ଆସିଲି ।

ଗୁରଚରଣ : (ଆଶ୍ଚର୍ଯ୍ୟ ହୋଇ) ଇ-ସ୍ତ-ଫା ?

ରାଜନ୍ଧର : ମୁଁ ପ୍ରିନସିପାଲଙ୍କୁ ସ୍ପଷ୍ଟ କହିଦେଲି ଯେ—ଗୁରଚରଣ ମୋ ବିନା ବଂଚରହି-ପାରିବନ, କ ମୁଁ ତା' ବିନା ରହିପାରିବନ ।

ଗୁରଚରଣ : କିନ୍ତୁ ଇସ୍ତଫା···!

ରାଜନ୍ଧର : (ମଝିରେ କହିଉଠିଲା) ସେ କହିଲା, ଏଇଟା କ'ଣ ସ୍ପଷ୍ଟ କଥା ?

ଗୁରଚରଣ : ତୋର ଚୁପ୍ ରହିବା ଉଚତ ଥିଲା ।

ରାଜନ୍ଦର : ମୁଁ କହିଲି, ମିଛ ବୋଲି ଭାବୁଛନ୍ତି କାହିଁକି ? ଏଇ ନିଅନ୍ତୁ ମୋର ଇସ୍ତଫା-ପତ୍ର ।

ଗୁରଚରଣ : ବଉଲ ! ତୁ ବହୁତ ତରବର ହେଇପଡ଼ିଲୁ । ରାଜନ୍ଦରକୁ ନାଚ ମାରିବା···

ରାଜନ୍ଦର : (ହଠାତ୍ ମଝିରେ ଭଙ୍ଗା କଣ୍ଠରେ କହିଉଠିଲେ) କ'ଣ ମୋ ଚନ୍ନୀ ମତେ ରୋଜ ଘ'ଣ୍ଟା ଲେଖାଁ ଚପାଉ ନ ଦବନି ?

ଗୁରଚରଣ : ବଉଲ ! (ତାକୁ ଭିଡ଼ିଧରିଲା) ତୁ ମତେ ଗୋଟାଏ ଫୁଲ ମାଗି ବସିଲେ ମୁଁ ସାରା ବଗିଚାଟା ତତେ ସମର୍ପିଦେବି ଲୋ !

ରାଜନ୍ଦର : ମୋର ପ୍ରିୟ ଚନ୍ନୀ ! ତୁ କେତେ ଭଲ ଲୋ !

ଗୁରଚରଣ : ଯଦି ତୁ ଲଜାଇନ କରିନଥାନ୍ତୁ ନା, ସମ୍ଭବତଃ ମୁଁ ସେଠିକି ଯାଇ ପ୍ରଥମ କାମ ଏଇୟା କରିଥାଆନ୍ତି । ତୁ ଗଲାପରେ ମୁଁ ତିନିଥର କାନ୍ଦିଲିଣି ।

ରାଜନ୍ଦର : (ହସି) ପାଗଲୀ !

ଗୁରଚରଣ : ତୋଠୁଁ କେବେ ଅଲଗା ହେଇନି ଲୋ ବଉଲ !

(ଦୁହେଁ ଚଉକିରେ ବସିଲେ ।)

ରାଜନ୍ଦର : ପ୍ରିନ୍‌ସିପାଲ ମତେ ଦେଖିବାମାତ୍ରେ ହସିଉଠିଲି,—ଆଉ କହିଲି (ଅନୁକରଣ କଲା ଢଙ୍ଗରେ) ବଡ଼ ଆଶ୍ଚର୍ଯ୍ୟର କଥା, ଆଜି ମୁଁ ପ୍ରଥମ କରି ଗୋଟିକିଆ ଚୁଟି ଦେଖୁଚି । ବେଣୀ କାହିଁ ? ସେ କ'ଣ ଏଠୁ ଗଲାଣି ?

ଗୁରଚରଣ : (ରାଗରେ) ତୋର ବ ଏମିତି ଗ୍ରେଟଟିଏ ମାରିବା ଉଚିତ ଥିଲା, ଯେମିତିକି ତା'ର ଦେହ ମନରେ···

ରାଜନ୍ଦର : (ବାଧାଦେଇ) ମୁଁ ଟିକିଏ ଥମିଗଲି । କାରଣ ମୁଁ ତ ପ୍ରାର୍ଥନାପତ୍ର ଧରି ଯାଇଥିଲି ।

ଗୁରଚରଣ : ମୋର ପୂରା ବିଶ୍ୱାସ ଯେ, ମୋର ବଦଳି ସେଇ କରିଚି ଈର୍ଷାରେ ।

ରାଜନ୍ଦର : ମୁଁ ଯେତେବେଳେ କହିଲି—ଗୁରଚରଣ ସାଙ୍ଗରେ ମୋ ବଦଳି କରିଦିଅନ୍ତୁ ସେ ଖିଲଖିଲ ହୋଇ ହସିଉଠିଲି ।

ଗୁରଚରଣ : ତା'ପରେ ?

ରାଜନ୍ଦର : କହିବାକୁ ଲାଗିଲି, ମିସ୍ ରାଜ ! ତମର ଆଉ ଗୁରଚରଣର ବନ୍ଧୁତା ମଧ୍ୟ ବଡ଼ ଅଜବ ଧରଣର ।

ଗୁରଚରଣ : ମୋ ଧାରଣା ଏକ୍‌ବାର ଠିକ୍ । ଏସବୁ ଈର୍ଷା ଯୋଗୁ ହିଁ···

ରାଜନ୍ଦର : (ବାଧାଦେଇ) ପୁଣି ସେ କହିଲି, ଏହା 'ମୋଷ୍ଟ ଅନ୍‌ନାଚୁରାଲ'—ବହୁତ ଅପ୍ରାକୃତିକ ।

ଗୁରଚରଣ : ଏ କଥାଗୁଡ଼ା ସାଇକୋଲଜି ପ୍ରଫେସରଙ୍କର—ଯାହାକୁ ସେ ତାଙ୍କ ଷ୍ଟୁଡେଣ୍ଟସ୍‌ଙ୍କୁ କହନ୍ତି ।

ରାଜନ୍ଦର : ସେ ମାଆ ମୂର୍ତ୍ତିକ ପୁଣି ରହସ୍ୟକର କହିଲେ, (ଅନୁକରଣ କରିବା ଢଙ୍ଗରେ) ମୁଁ ଶୁଣିଚି, ତମର ମିସ୍ ଗୁରଚରଣଙ୍କ ସହ କୁଆଡ଼େ ପ୍ରକୃତ ବିବାହ ହୋଇଗଲାଣି ।

ଗୁରଚରଣ : ତୋର ସେତିକିବେଳେ କହିଦେବାର ଥିଲା, ହଁ ସତ । ଯେତେବେଳେ ଦୁଇଟା ହୃଦୟ···

ରାଜନ୍ଦର : (ବାଧାଦେଇ) ମୁଁ ପଚାରିଲି, 'ଏକ ଆତ୍ମା ଦୁଇ ରୂପ' ପ୍ରବଚନଟି କଣ କେବଳ ପତି-ପତ୍ନୀଙ୍କ ପାଇଁ ଉଦ୍ଦିଷ୍ଟ ?

ଗୁରଚରଣ : ତା' ପରେ ?

ରାଜନ୍ଦର : କିନ୍ତୁ ସେ ପୁଣି ଖିଲଖିଲ ହୋଇ ହସିଉଠିଲା । ତା' ପରେ ହସ ବନ୍ଦ କରି ଦୁଷ୍ଟାମିମିଶା କଣ୍ଠରେ କହିଲା 'ଏକ ଆତ୍ମା ଦୁଇ ରୂପ' ?—କହୁ କହୁ ପୁଣି ହସିଲା ।

ଗୁରଚରଣ : (ରାଗରେ) ଗ୍ରେଟଲେକ !

ରାଜନ୍ଦର : ମତେ ରାଗ ମାଡ଼ିଲା । ମୁଁ ତାକୁ ପଚାରିଲି, "ଆପଣଙ୍କର ଅନ୍ୟ ମୂର୍ତ୍ତିଟି କୁଆଡ଼େ ଗଲେ ?" ଏ କଥା ଶୁଣୁ ଶୁଣୁ ତା' ହସ ବନ୍ଦ ହୋଇଗଲା । ଅଟକି ଅଟକି କରି କହିଲା—(ଅନୁକରଣ କଲା ଢଙ୍ଗରେ) "କୋଉ ମୂର୍ତ୍ତି ?" ମୁଁ କହିଲି, "ଯାହା ସାଙ୍ଗରେ ପୁରୋହିତ ଆପଣଙ୍କ ହାତ ଛନ୍ଦି ଦେଇଥିଲେ ?"

ଗୁରଚରଣ : (ଅତି ଉତ୍ସାହ ସହ) ସାବାସ୍ ! (ତାକୁ ପିଠିରେ ଆଉଜେଇ ନେଇ) ତୁ ମତେ ଖୁବ୍ ଖୁସି କରିଦେଲୁ ଲୋ ବଉଲ !

ରାଜନ୍ଦର : ହଠାତ୍ ସେ ଅଭିନେତ୍ରୀଙ୍କର ମୁହଁ ଫିକା ପଡ଼ିଗଲା । କୌଣସି ଉତ୍ତର ସ୍ଫୁରିଲା ନାହିଁ । ରହି ରହି କରି କହିଲା, (ଅନୁକରଣ କଲା ଭଙ୍ଗୀରେ) ସେ···ସେ···ମୁଁ··· ଆଉ ସେ ପ୍ରାୟ ଗୃହବର୍ଷରୁ···ଅଲଗା ହୋଇସାରିଚୁ ।

(ଦୁହେଁ ହସି ଉଠିଲେ ।)

ଗୁରଚରଣ : (ବ୍ୟଙ୍ଗକରି) ଏକ ଆତ୍ମା ଦୁଇ ରୂପ !

ରାଜନ୍ଦର : ତା'ପରେ ମୁଁ ଉଠି ଠିଆହେଲି ଏବଂ କହିଲି, 'ମାଡ଼ାମ୍ ! ମିସ୍ ଗୁରଚରଣ ଏବଂ ରାଜ ସବୁଦନ ପାଇଁ ଏକ । ସାଙ୍ଗହୋଇ ବଞ୍ଚିବେ, ସାଙ୍ଗ ହୋଇ ମରିବେ ।

ଗୁରଚରଣ : ସାବ୍ ଦୁନିଆ ଜଳପୋଡ଼ି ମରୁ । ଚାଲ ଏବେ ଖାଇନେବା ।

ରାଜନ୍ଦର : ତୁ ଏଯାଏଂ ଖାଇନୁ ?

ଗୁରଚରଣ : ତତେ ଛାଡ଼ି ମୁଁ କେମିତି ଖାଇଥାଆନ୍ତି ଯେ ! ଆଗରୁ କେବେ କ'ଣ ଖାଇଥିଲି ?

ରାଜନ୍ଦର : (ଚିନ୍ତିତ ସ୍ୱରରେ) ତା' ହେଲେ ଶୀଘ୍ର ବ୍ୟବସ୍ଥା କର । ମତେ ତ ବହୁତ ଭୋକ ହେଉଥିଲା । ତୋ ପେଟ ତ ଆଉଟି-ପାଉଟି ହେବଣି ।

[ଦୁହେଁ ପଛରେ ଥିବା କୋଠରି ଆଡ଼କୁ ଚାଲିଲେ । ସେମାନେ ଗୋଟାଏ ପାଦ ଆଗକୁ

ଆସିବା ବେଳକୁ ବାହାର ଦରଜାରେ ଠକ୍ ଠକ୍ ଶବ୍ଦ ଶୁଣାଗଲା । ଦୁହେଁ ଅଟକିଗଲେ । ପ୍ରଥମେ ଦରଜା ଆଡ଼କୁ ଚାହିଁ ପରେ ଜଣେ ଆରଜଣକୁ ଚାହିଁରହିଲେ ।]

ରାଜନ୍ଦର : (ବଡ଼ପାଟିରେ) କିଏ ସେ ?

ବାହାରୁ : (ବଡ଼ପାଟିରେ) ସନ୍ଧୁ ନାଲଙ୍ଗ !

ଦୁହେଁ : (ଆଶ୍ଚର୍ଯ୍ୟରେ) ସନ୍ଧୁ ?

ରାଜନ୍ଦର : କୋଉ ସନ୍ଧୁ ?

ଗୁରଚରଣ : ମୁଁ ତ କୋଉ ସନ୍ଧୁକୁ ଜାଣେନା ।

(ଦରଜାରେ ପୁଣି ଠକ୍ ଠକ୍ ଧ୍ୱନି ହେଲା ।)

ରାଜନ୍ଦର : ମୁଁ ଝରକାବାଟେ ଦେଖୁଚି, କିଏ ସେ ? (ସେ ଝରକା ପାଖକୁ ଯାଇ ବାହାରକୁ ଚାହିଁଲା । କିଛି ବିଳମ୍ବରେ—) କିଏ ଜଣେ ଅଜଣା ଯୁବକ—ପ୍ୟାଣ୍ଟ, କୋଟ୍, ଟାଇ ପିନ୍ଧିଚି !

ଗୁରଚରଣ : ଅନ୍ୟ କିଏ ଦେଖିଲେ କ'ଣ ଭାବିବ ? ଆଗରୁ ତ କୌଣସି ଯୁବକ ଆମ ଘରକୁ ଆସୁ ନ ଥିଲେ; କିନ୍ତୁ…

ବାହାରୁ : ମିସ୍ ସେଖେଁ। । ମୁଁ ବିଶେଷ କରି ଆପଣଙ୍କ ସାଙ୍ଗରେ ସାକ୍ଷାତ କରିବାକୁ ଆସିଚି ।

ରାଜନ୍ଦର : (ବିଗିଡ଼ି ଯାଇ) ନନସେନ୍ସ ! ବିଶେଷ ସାକ୍ଷାତ ପାଇଁ…

ଗୁରଚରଣ : ସାକ୍ଷାତ କରି ଦେଖ । ଏମିତି କୋଉ ମୁହଁରେ…

ରାଜନ୍ଦର : (କଥା ମଝିରେ) ଯା ମ ! ଜାଣେନା କୋଉ ଲୋଫର୍…

ବାହାରୁ : ମିସ୍ ରାଜନ୍ଦର !

ଗୁରଚରଣ : ନେ ସମ୍ଭାଳ । ଏବେ ତ ତୋ ନାଁ ଧରି ଡାକିଲାଣି ।

ରାଜନ୍ଦର : କିନ୍ତୁ ମୁଁ ତ ତାକୁ ଜାଣେନାହିଁ । ଆଗରୁ ମୁଁ କେବେ ତା' ଚେହେରା ବି ଦେଖିନାହିଁ ।

ଗୁରଚରଣ : ତୋର କୌଣସି ସମ୍ପର୍କୀୟ ନୁହଁନ୍ତି ତ ଆଉ !

ରାଜନ୍ଦର : ମୋର କୌଣସି ରିଲେଟିଭ ନାହାନ୍ତି । କେବଳ ଜଣେ କକା ଅଛନ୍ତି, ଯିଏ ମତେ ଲାଳନ-ପାଳନ କରିଛନ୍ତି ।

ଗୁରଚରଣ ! ତୋର ଜଣେ ଭାଇ ତ ଅଛି, ଯିଏ ଇଂଲଣ୍ଡ ଯାଇଛି ।

ରାଜନ୍ଦର : ସେ ତ ଲମ୍ବା ଏବଂ ଡେଙ୍ଗା । ଇଏ ତ…

(ଦରଜାରେ ପୁଣି ଠକ୍ ଠକ୍ ଧ୍ୱନି ।)

ଗୁରଚରଣ : ଚାଲ, ଦୁହେଁ ଯାଇକରି ଦେଖିବା । ସେ ଚଢ଼ାବାଢ଼ ହେଇନି ଯେ ଆମକୁ ଖାଇଦେଇ ପଳେଇଯିବ ?

[ଦୁହେଁ ବାହାର ଦରଜା ଆଡ଼କୁ ଗଲେ । ତା'ପରେ ଦରଜା ଖୋଲଲେ । ହାତରେ ଆଟାଚ କେଶ ଧରି ମିଷ୍ଟର ସନ୍ଧୁ ଠିଆହୋଇଥିବା ଦେଖାଗଲା ।]

ସନ୍ଧୁ : ଗୁଡ଼ ଇଭିନିଙ୍ଗ !

ଗୁରୁଚରଣ : କ୍ଷମା କରିବେ, ଆମେ ଆପଣଙ୍କୁ ଚିହ୍ନିପାରୁନୁ ।

ସନ୍ଧୁ : ମୁଁ···ସନ୍ଧୁ । ଇଂଲଣ୍ଡରୁ ଆସୁଚି ।

ରାଜାନ୍ଦର : ଇଂଲଣ୍ଡରୁ :

ସନ୍ଧୁ : ହଁ, ଇଂଲଣ୍ଡରୁ । ସେଖୋର ସାକ୍ଷାତ ଏବଂ ଖବର ଧରି ଆସିଚି ।

ରାଜାନ୍ଦର : ଆପଣ ମୋ ଭାଇଙ୍କ ପାଖରୁ ଆସିଚନ୍ତି ?

ସନ୍ଧୁ : ହଁ ଆଜ୍ଞା, ସେଖୋଁ ମୋର ଘନିଷ୍ଠ ବନ୍ଧୁ ।

ରାଜାନ୍ଦର : ଭାଇଙ୍କର ଖବର କ'ଣ ?

ସନ୍ଧୁ : ଠିକ୍ ଅଛନ୍ତି ସେ । ସବୁ କୁଶଳ । ଆପଣଙ୍କ ପାଇଁ କିଛି ଜିନିଷ···
(ଆଟାଚକୁ ଟେବୁଲ ଉପରେ ରଖିଲା ।)

ରାଜାନ୍ଦର : ଭିତରକୁ ଆସନ୍ତୁ । ଆଗ ଭାଇଙ୍କର ଖବର ସବୁ କୁହନ୍ତୁ ।

ସନ୍ଧୁ : (ଆଟାଚ ଉଠାଇ ଦୁହିଁଙ୍କ ପଛେ ପଛେ ଭିତରକୁ ଆସିଲେ । ତା'ପରେ ସମସ୍ତେ ଚଉକରେ ବସିଲେ ।) ସେଖୋଁ ମଜାରେ ଅଛି । ନୂଆ ଫ୍ଲାଟଟାଏ କିଣିଚି । ଗୋଟିଏ ମେମ୍ ମଧ୍ୟ ବାଛିସାରିଲେଣି ।

ରାଜାନ୍ଦର : (ଆନନ୍ଦରେ ଆଶ୍ଚର୍ଯ୍ୟ ହୋଇ) ଭାଇ ବାହା ହୋଇ ସାରିଲେଣି ?

ସନ୍ଧୁ : କୋର୍ଟସିପ୍, ଲଭ ମ୍ୟାରେଜ୍ (ହସି ଉଠିଲା) । ସେଖେଁ କହୁଥିଲା, ମୋ ଭଉଣୀକୁ କହିଦବୁ, ଯଦି ସେ ବାହା ନ ହୋଇଚି ତେବେ ଶୀଘ୍ର ବାହା ହୋଇ ପଡ଼ିବ । କ'ଣ ଆପଣ ମ୍ୟାରେଡ୍ ?

ରାଜାନ୍ଦର : ନା ।

ସନ୍ଧୁ : (ଖୁସିରେ) ଗୁଡ଼୍ ।

ଗୁରୁଚରଣ : ତା'ର ବାହା ହେବାରେ ଇଚ୍ଛା ନାହିଁ ।

ସନ୍ଧୁ : ନଟ୍ ଏ ବ୍ୟାଡ୍ ଆଇଡ଼ିଆ ! ଆପଣ ମିସ୍ ସେଖୋଁଙ୍କର··· ?

ରାଜାନ୍ଦର : ସେ ମୋ ଭଉଣୀ ।

ସନ୍ଧୁ : ଭଉଣୀ ! ଅର୍ଥାତ୍, ଏକା ମାଆ ପେଟର ଭଉଣୀ ? କିନ୍ତୁ ସେଖୋଁ ତ କହୁଥିଲା, ତା'ର ଗୋଟିଏ ମାତ୍ର ଭଉଣୀ ।

ରାଜାନ୍ଦର : ଯଦି କେହି କାହାର ମରିବା-ବଞ୍ଚିବା ସହିତ ଏକାକାର ହୋଇଯାଏ, ସେ ନିଜ ମାଆ ପେଟର ଭାଇ-ଭଉଣୀଠାରୁ ଅଧିକ ହୋଇଯାଏ ।

ସନ୍ଧୁ : ସତ କଥା । ସମଗ୍ର ବର୍ମିଂହାମ୍ ମତେ ଆଉ ସେଖୋଁକୁ ଗୋଟିଏ ବାପର ପୁଅ

ବୋଲି ମନେକରୁଥିଲା । ରହିବା ଗୋଟାଏ ଜାଗା, ପିନ୍ଧିବା ଏକାପ୍ରକାରର, ସାଙ୍ଗ ହୋଇ ବୁଲିବା ଆଉ ଖାଇବା ଜାଗା ବି ଏକା । କିନ୍ତୁ… (ଟିକିଏ ଦୁଃଖମିଶା ଗଳାରେ) ହଠାତ୍ ସେ ଚୁପ୍‌ଚାପ୍ ବାହା ହୋଇପଡ଼ିଲା ଏବଂ ମୋଠାରୁ ଅଲଗା ହୋଇଗଲା ।

ଗୁରଚରଣ : ଆପଣଙ୍କୁ ତାଙ୍କ ରୋମାନ୍‌ସ ବିଷୟରେ ଆଗରୁ ସୂଚନା ମିଳି ନ ଥିଲା ?

ସନ୍ଧୁ : ବିଲ୍‌କୁଲ୍ ନୁହେଁ । ସେ ତ 'ଛୁପା ରୁସ୍ତମ୍' ସାଜିଥିଲା । କିନ୍ତୁ ମୁଁ ତାକୁ ଶେଷରେ କହିଲି, ସେଖୋଁ ! ତୁ ଆଗ ବାହା ହେଲୁ । ଏଣିକି ମୁଁ ବାହା ହୋଇ ପଡ଼ିବି । ଏକଥା ଶୁଣି ସେ ଆନନ୍ଦରେ ନାଚିଉଠିଲା । ପଚାରିଲା, କୋଉ ମେମ୍ ସାଙ୍ଗରେ ବାହାଘର ହବ ? ମୁଁ କହିଲି, 'କୌଣସି ମେମ୍ ସାଙ୍ଗରେ ନୁହେଁ । ମୁଁ ଶୀଘ୍ର ପଂଜାବ ଚାଲିଯିବି ଏବଂ ସେଇଠି ବାହା ହେବି ।

ଗୁରଚରଣ : ତା' ହେଲେ ଆପଣ ବାହା ହେବାକୁ ଆସିଛନ୍ତି ।

ସନ୍ଧୁ : ହଁ, ସେଇ ଅଭିପ୍ରାୟ ନେଇ ତ ଆସିଚି ।

ଗୁରଚରଣ : ଆପଣ କାହିଁକି ପଛରେ ପଡ଼ିଗଲେ ?

ସନ୍ଧୁ : ସେଖୋଁ ମୋତେ ବହୁତ ରଗେଇଦେଲା ।

(ସମସ୍ତେ ହସିଉଠିଲେ ।)

ରାଜନ୍ଦର : ଆରେ, ଆମେ ତ କଥାବାର୍ତ୍ତା ଭିତରେ ଭୁଲିଗଲେଣି । କିଛି ଖିଆପିଆ କରନ୍ତୁ ?

ସନ୍ଧୁ : କିଛି ଖାଇବିନି । ଆପଣ ଆପଣଙ୍କର ଜିନିଷ ସମ୍ଭାଳନ୍ତୁ ଏବଂ ମତେ ଛୁଟିଦିଅନ୍ତୁ । ଆଉ ଅଧଘଣ୍ଟା ପରେ ମୋ ଗାଡ଼ି…

ଗୁରଚରଣ : କିଛି ଖିଆ ପିଆ ନକଲେ ଆମେ ଯିବାକୁ ଦେବୁନି । କଫି, ଚା, ନା ଖାଇବା ଜିନିଷ ? ଖାଦ୍ୟ ପ୍ରସ୍ତୁତ ଅଛି ।

ସନ୍ଧୁ : କିଛି ଖାଇବିନି ଆଜ୍ଞା ! କେବଳ ଛୁଟି ।

ଗୁରଚରଣ : ତା'ହେଲେ ଫଳ ଚାଲିବ । (ଉଠିପଡ଼ିଲା)

ରାଜନ୍ଦର : ତୁ ବସ୍ ଚନ୍ନୀ ! ମୁଁ ଆଣୁଚି ।

ଗୁରଚରଣ : ଏକା କଥା ମ !

ସନ୍ଧୁ : ଆପଣ ଦୁହେଁ ବସନ୍ତୁ । ମତେ ଅଳ୍ପ ସମୟ ଭିତରେ ଷ୍ଟେସନରେ ପହଂଚିବାକୁ ହେବ ।

ଗୁରଚରଣ : ମୁଁ ପାଞ୍ଚ ମିନିଟ୍ ଭିତରେ ଆସୁଚି ।

(ରାଜନ୍ଦରକୁ ଚଉକିରେ ବସାଇ ନିଜେ ପଛପଟ କୋଠରିକୁ ଚାଲିଗଲା ।)

ସନ୍ଧୁ : ମିସ୍ ସେଖୋଁ ! ତୁମ ଭାଇ ବହୁତ ଭାଗ୍ୟବାନ୍ ।

ରାଜନ୍ଦର : ମୋ ଭାଉଜ କେମିତିଆ ?

ସନ୍ଧ୍ୟା : ଡେମ୍ ବିଉଟିଫୁଲ୍ !

ରାଜନ୍ଧର : ଏକଥା ଶୁଣି ମତେ ଖୁବ ଖୁସି ଲାଗୁଛି ।

ସନ୍ଧ୍ୟା : ସେ କହୁଥିଲା ଯେ, ମୋର ସୁନା ଭଉଣୀକୁ କହିବ···

ରାଜନ୍ଧର : କ'ଣ ?

ସନ୍ଧ୍ୟା : ସେ ବିବାହ କରି ନବ ।

ରାଜନ୍ଧର : ମୋ ଭଉଣୀ ଏଣିକେ ତ ଆପଣଙ୍କୁ କହିସାରିଛି ଯେ, ମୁଁ ବିବାହ କରୁନି ।

ସନ୍ଧ୍ୟା : କିନ୍ତୁ ସେ ତ ଏହାର କୌଣସି କାରଣ କହିଲେ ନାହିଁ; ଆପଣ କୁହନ୍ତୁ । ସେଖେଁକୁ ତ ଯାଇ କିଛି ଗୋଟା କହିବାକୁ ପଡ଼ିବ ।

ରାଜନ୍ଧର : କାରଣ ସେମିତି କିଛି ନାହିଁ । ବାସ୍···

ସନ୍ଧ୍ୟା : ଆପଣଙ୍କର ଇଚ୍ଛା । କିନ୍ତୁ ବିବାହ ନ କରିବାର ତ କାରଣ କିଛି ଥିବ । ବିଶେଷ କରି ଝିଅ ଜଣେ ଯେତେବେଳେ ବିବାହ ନ କରିବାର ଦୃଢ଼ନିଶ୍ଚୟ କରିନିଏ, ସେତେବେଳେ ତା' ପାଖରେ କିଛି କାରଣ ଥିବା ଦରକାର ।

ରାଜନ୍ଧର : ଆପଣ ଭାଇଙ୍କୁ କହିବେ, ଯେଉଁ ଝିଅ ସାଙ୍ଗରେ ମୁଁ ରହୁଛି, ତା'ର ମାଆ-ବାପ, ଭାଇ-ଭଉଣୀ କେହି ନାହାନ୍ତି । ତାକୁ ମଧ୍ୟ ତା'ର କୌଣସି ସମ୍ପର୍କୀୟ ପାଳିଛି ଏବଂ ପାଠ ପଢ଼ାଇଛି । ସେ ମୋ'ରି ପାଇଁ ବିବାହ କରୁ ନାହିଁ । ଆଉ ମୁଁ ମଧ୍ୟ ତା' ପାଇଁ ସାରା ଜୀବନ କୁମାରୀ ରହିବାକୁ ଚାହୁଁଛି ।

ସନ୍ଧ୍ୟା : (ସ୍ମିତ ହସି) ବେଶ୍ କଥା ! (ଦୀର୍ଘ ଶ୍ୱାସ ଛାଡ଼ି) ଦିନେ ମୁଁ ଏବଂ ସେଖେଁ ମଧ୍ୟ ଏମିତି କଥା ହେଉଥିଲୁ । କିନ୍ତୁ ସେଇ ମେମ୍ ଆସିଗଲା ପରେ···ଛାଡ଼ନ୍ତୁ । ସେଖେଁ ଖୁସିରେ ଅଛି, ଆଉ ମୁଁ ମଧ୍ୟ । ତା'ଛଡ଼ା ମୁଁ ତ ବିବାହ କରିବା ପାଇଁ ବର୍ମିଙ୍ଗହାମ୍‌ରୁ ଏଠିକି ଆସିଛି । (ଯେମିତିକି ହଠାତ୍ କିଛି ଗୋଟାଏ ସ୍ମୃତିପଟକୁ ଆସିଗଲା ।) ଓହୋ, ଆପଣଙ୍କୁ ସାକ୍ଷାତ କରି ଭୁଲିଯାଉଥିଲି । ଏଇ ନିଅନ୍ତୁ ଏ ଘଡ଼ି—(ଜର୍ସି ପକେଟ୍‌ରୁ କାଢ଼ି ଦେଲେ) ଶୀଘ୍ର ହାତରେ ବାନ୍ଧିପକାନ୍ତୁ ।

ରାଜନ୍ଧର : ଗୋଟାଏ ତ ଆଗରୁ ବାନ୍ଧିଛି ।

ସନ୍ଧ୍ୟା : (ହସିଉଠିଲା) । ଏଇ ନିଅନ୍ତୁ---(ଆଙ୍ଗୁଠିରୁ କାଢ଼ି) ସୁନା ମୁଦି । କ୍ଷମା କରିବେ —ଯଦି ଏମିତି ଆଙ୍ଗୁଠିରେ ପୂରାଇ ନ ଆଣିଥାଆନ୍ତିନା, ତେବେ ମୋଟେ ଆଣି ପାରି ନ ଥାନ୍ତି ।

ରାଜନ୍ଧର : କିଛି କଥା ନାହିଁ ।

ସନ୍ଧ୍ୟା : ଏ ମୁଦିଟା ଆପଣଙ୍କ ମଝି ଆଙ୍ଗୁଠିକୁ ଠିକ୍ ହେବ । ଟିକେ ପିନ୍ଧିକରି ଦେଖନ୍ତୁ ।

ରାଜନ୍ଧର : ଏବେ ନୁହେଁ ।

ସନ୍ଧ୍ୟା : ଏବେ ପିନ୍ଧିବନି ? (ହସି କରି) ହଉ, ଯାହା ଆପଣଙ୍କର ଇଚ୍ଛା । (ଆଖାଡ଼କୁ ଚାହିଁ

ଟଙ୍କା ବାହାର କରି) ଇଏ ହେଉଚି ଶହେ ଟଙ୍କିଆ ନୋଟ୍, ଦଶଟା ଗଣିନିଅନ୍ତୁ ।

ରାଜନ୍ଦର : ଆପଣ ଏସବୁ କ'ଣ କହୁଛନ୍ତି ?

ସନ୍ଧୁ : ମିସ୍ ରାଜନ୍ଦର ! ମନି ମ୍ୟାଟର୍‌ରେ କାହାରି ଲଜ୍ଜା କରିବା ଉଚିତ ନୁହେଁ । ସେଥିଁର ଅମାନତ ଆପଣଙ୍କ ପାଖରେ ପହଞ୍ଚେଇ ଦେଇ ମୁଁ ନିଜେ ଭାରି ଆନନ୍ଦ ଅନୁଭବ କରୁଚି । ହଁ, ଗୋଟାଏ କଥା କହିବି ?—ମୁଁ ମୋର ଭାବୀ ପତ୍ନୀ ପାଇଁ ମଧ୍ୟ ବହୁତ ଗୁଡ଼ାଏ ଜିନିଷ ନେଇ ଆସିଚି ।

ରାଜନ୍ଦର : ସତେ !

ସନ୍ଧୁ : ଏ ଘଡ଼ିଟା, ବୁଲେଟା ମୁଦି, ପେନ୍, ଜୋତା, ପର୍ସ, ରୁମାଲ ଏବଂ ରେଡିମେଡ୍ ସୁଟ୍ ।

ରାଜନ୍ଦର : (ଆଶ୍ଚର୍ଯ୍ୟ ହୋଇ) ରେଡିମେଡ୍ ସୁଟ୍ ?

ସନ୍ଧୁ : ହଁ, ସେଠି ବହୁତ ମିଳେ ।

ରାଜନ୍ଦର : ମୋର କହିବାର ମତଲବ ହେଉଚି, ଯଦି ସେଇଟା ଆପଣଙ୍କ ଭାବୀ ପତ୍ନୀଙ୍କୁ ଫିଟ୍ ନ କରେ, ତେବେ— ?

ସନ୍ଧୁ : ଯଦି ସୁଟ୍ ଲମ୍ବା ହେବ ତେବେ ଶ୍ରେଟ କରାଇନେବି । ଆଉ ଯଦି ଶ୍ରେଟ ହୁଏ ...ତେବେ ମୁଁ ତାହାକୁ ଲମ୍ବା କରାଇବି ନାହିଁ । ମୁଁ ନବବଧୂକୁ ଡାଳପକା ଲୁଗା ପିନ୍ଧାଇବି ନାହିଁ ।

ରାଜନ୍ଦର : (ହସିବାକୁ ଲାଗିଲେ ।)

ସନ୍ଧୁ : ମିସ୍ ରାଜନ୍ଦର ! କ୍ଷମା କରିବେ; ଯଦି ମୁଁ କହେ ଯେ, ମୁଁ ଆଣିଥିବା ସୁଟ୍‌କୁ ପିନ୍ଧିବାବାଲା ଝିଅର ଶାରୀରିକ ଗଠନ ଆପଣଙ୍କଠାରୁ ଅଧିକ ନୁହେଁ, ତେବେ—?

ରାଜନ୍ଦର : (ଟିକିଏ ଲଜ୍ଜିତ ହୋଇ) ଆପଣ ଏକଥା କେମିତି କହିପାରୁଛନ୍ତି ?

ସନ୍ଧୁ : ଆପଣ ଟଲ୍ ଏଣ୍ଡ ସ୍ଲିମ୍...ମାନେ ଡେଙ୍ଗୀ ଏବଂ ପାତଳୀ । ମୁଁ ଏ ସୁଟ୍‌କୁ ଠିକ୍ ଏମିତିଆ ଗୋଟିଏ ଝିଅପାଇଁ ଆଣିଚି ।

ରାଜନ୍ଦର : (ଟିକେ ସ୍ପଷ୍ଟ ଭାବରେ) ଲମ୍ବା ଏବଂ ପାତଳୀ ଝିଅଙ୍କୁ ଆପଣ ପସନ୍ଦ କରନ୍ତି କାହିଁକି ?

ସନ୍ଧୁ : ଏଇଥିପାଇଁ ସେ ଯେତେବେଳେ ଚାଲେ, ମୋର ମନେହୁଏ, ଯେମିତିକି ଆକାଶରେ ଉଡ଼ୁଥିବା କୌଣସି ଘୁଡ଼ିକୁ କିଏ ଆସ୍ତେ ଆସ୍ତେ ଟାଣୁଚି । ସେ ଯେତେବେଳେ ହସେ, ମତେ ତା' ଗାଲର ଶ୍ରେଟ ଶ୍ରେଟ ଭଉଁରି ଗାତ ଖୁବ୍ ଭଲଲାଗେ । ମତେ ଇନ୍ଦ୍ରଧନୁ ଭଳି ଭଲଲାଗେ । ସେ କଥା ସବୁ ଛାଡ଼ନ୍ତୁ । ଆପଣ ଏଯାଏ ଆପଣଙ୍କ ଆଙ୍ଗୁଠିରେ ମୁଦି ପିନ୍ଧି-ନାହାନ୍ତି ?

ରାଜନ୍ଦର : ମୋର ସଉକ୍ ନାହିଁ ।

ସନ୍ଧୁ : ସତ୍‌କ୍ ନାହିଁ । କିନ୍ତୁ··· ମୁଁ ଟିକେ ଦେଖନ୍ତୁ ।

ରାଜନ୍ଦର : ଦେଖି କରି କ'ଣ କରିବେ ?

ସନ୍ଧୁ : ସ୍ତ୍ରୀଲୋକ ଯେତେବେଳେ ବେଶଭୂଷା ହୁଅନ୍ତି, ସେ ଭଲ ଭାବରେ ଜାଣନ୍ତି ତାଙ୍କର ଏ ବେଶଭୂଷା କ'ଣ ପାଇଁ ?

ରାଜନ୍ଦର : ଇଂଲଣ୍ଡରେ ରହି ଆପଣ ସ୍ତ୍ରୀଲୋକଙ୍କ ସାଇକୋଲଜି ସହିତ ବେଶ୍ ପରିଚିତ ହୋଇଯାଇଛନ୍ତି · ଦେଖୁଛି ।

ସନ୍ଧୁ : ଇଂଲଣ୍ଡର ସ୍ତ୍ରୀଲୋକଙ୍କୁ ଚିହ୍ନିବା କଠିନ ବ୍ୟାପାର ନୁହେଁ; ବରଂ ଭାରତୀୟ ସ୍ତ୍ରୀଲୋକମାନେ ଜଟିଳ ।

(ଦୁହେଁ ହସିଉଠିଲେ ।)

ରାଜନ୍ଦର : (ଖୋଲଖୋଲ ଭାବେ) ଆପଣ କେବେ ବିବାହ କରୁଛନ୍ତି ?

ସନ୍ଧୁ : ବହୁତ ଶୀଘ୍ର । 'ଆଜି ମଙ୍ଗନ, କାଲି ବାହା' ଧନ୍ଦା ଇଏ । ତା'ଛଡ଼ା ଇଂଲଣ୍ଡକୁ ଦୁଇଟା ସିଟ୍ ମଧ୍ୟ ବୁକ୍ ହୋଇଛି ।

ରାଜନ୍ଦର : ଇଂଲଣ୍ଡ ନଗଲେ କ'ଣ ଆପଣଙ୍କ ଗୁଜୁରାଣ ମେଣ୍ଟିବନି ?

ସନ୍ଧୁ : ଇଂଲଣ୍ଡକୁ ନିଶ୍ଚୟ ଯିବି । ମୁଁ ସେଠାଁକୁ ନିଜର ପଂଜାବୀ ସ୍ତ୍ରୀ···

ରାଜନ୍ଦର : (ବାଧା ଦେଇ) ମୋର କହିବାର ଉଦ୍ଦେଶ୍ୟ ହେଉଛି, ଆପଣଙ୍କର ବିବାହ ଏମିତିଆ କୌଣସି ଗୋଟିଏ ଝିଅ ସାଙ୍ଗରେ ସିଦ୍ଧ ହୋଇଯାଏ, ଯିଏ ସାତ ସମୁଦ୍ର ପାରି ହୋଇ ନିଜ ମା-ବାପ, ସଖୀ-ସହୋଦରଙ୍କୁ ଛାଡ଼ି ନ ଯାଇ ପାରେ, ତେବେ— ?

ସନ୍ଧୁ : ହୁଁ । ତେବେ ଏସବୁ ବେଳ ଆସିଲେ ବିଚାର କରାଯାଇ କୁହାଯାଇପାରେ ।

ରାଜନ୍ଦର : ବିବାହ କେତେ ପ୍ରକାରର ତ୍ୟାଗ ଦାବୀ କରେ ।

ସନ୍ଧୁ : ସେ ତ ଠିକ୍ କଥା । ଜୀବନରେ କିଛି ଦେଇ, କିଛି ପାଆନ୍ତି ।

ରାଜନ୍ଦର : ମୁଁ କଥା-କହସରେ ହାତରେ ଘଡ଼ି ବାନ୍ଧିସାରିଲଣି ।

ସନ୍ଧୁ : ଖୁବ୍ ସୁନ୍ଦର ଦିଶୁଛି । ହାତକୁ ସଜାଇବା କଳା ଆମ ସ୍ତ୍ରୀଲୋକମାନଙ୍କୁ ଜଣା । ବିଦେଶୀ ସ୍ତ୍ରୀଲୋକମାନଙ୍କର ସମସ୍ତ ଶକ୍ତି·· । ଆଙ୍ଗୁଠିରେ ମୁଦିଟା ପିନ୍ଧି ନିଅନ୍ତୁ ।

ରାଜନ୍ଦର : ଏଇଟା ମଝିଆଁ ଆଙ୍ଗୁଠିକୁ ତ ବିଲ୍କୁଲ ଫିଟ୍ ହେଉଛି ।

ସନ୍ଧୁ : ମୁଁ ତ କହୁଥିଲି ।

(ଦୁହେଁ ହସିଉଠିଲେ ।)

ରାଜନ୍ଦର : ତା'ହେଲେ ଆପଣ ଶୀଘ୍ର ବିଦେଶ ଫେରିଯିବେ ?

ସନ୍ଧୁ : ବିବାହ ପରେ କେତେ ନୂଆ କାର୍ଯ୍ୟକ୍ରମ ହୋଇପାରେ ।

ରାଜନ୍ଦର : ମଝି ଆଙ୍ଗୁଠିକୁ ମୁଦିଟି ବେଶ୍ ମାନୁଛି ।

ସନ୍ଧ୍ୟା : ହଁ, ଚମତ୍କାର ଦିଶୁଛି ।

(ଭିତର କୋଠରିରୁ ଗୁରୁଚରଣ ଫଳ ପ୍ଲେଟ୍ ଧରି ଆସିଲା ।)

ଗୁରୁଚରଣ : ତୋ ହାତକୁ ଘଡ଼ିଟା ଖୁବ୍ ସୁନ୍ଦର ଦିଶୁଛି ଲୋ ବଉଳ !

ସନ୍ଧ୍ୟା : (ଆଶ୍ଚର୍ଯ୍ୟରେ ) ବଉଳ !

ଗୁରୁଚରଣ : ମୁଁ ତାକୁ 'ବଉଳ' ବୋଲି ଡାକେ । ଇଏ ତ ମୋର ଜୀବନ ।

ସନ୍ଧ୍ୟା : (ହସି ଦେଇ) ତା' ତ ମୁଁ ବୁଝିପାରୁଛି ।

ଗୁରୁଚରଣ : ବଉଳ ! ତୋ ହାତକୁ ମୁଦିଟା ଭଲ ମାନୁଛି ।

ରାଜାଧର : (ବିବ୍ରତ ଢଙ୍ଗରେ) ମୁଁ ଏମିତି ପିନ୍ଧୁ ପିନ୍ଧୁ ପିନ୍ଧିପକାଇଲି । ଏହାକୁ କାଢ଼ିଲେ···

ଗୁରୁଚରଣ : ପାଗଳୀ ! ପିନ୍ଧିଥା ।

ରାଜାଧର : (ଉଠି ପଡ଼ି) ମୁଁ ଟିକେ ଆସୁଛି ।

(ପଛ ପଟ କୋଠରିକୁ ଚାଲିଗଲା ।)

ଗୁରୁଚରଣ : କୁଆଡ଼େ ଯାଉଛୁ ?

ରାଜାଧର : (ଯାଉ ଯାଉ) ମୁଁ ଯାଙ୍ଗେ ଯାଙ୍ଗେ ଆସୁଛି ।

ଗୁରୁଚରଣ : (ହସିଉଠି) ବହୁତ ଲାଜକୁଳୀ ହୋଇଥାଏ ।

ସନ୍ଧ୍ୟା : (ହସି ହସି) ଆପଣଙ୍କ ଯୋଡ଼ିଟି ବେଶ୍ ହୋଇଛି । ଯେମିତି ଗୋଟାଏ ଦେହ, ଗୋଟାଏ ପ୍ରକାରର ପୋଷାକପତ୍ର, ଏକାପ୍ରକାରର ରୂପ-ରଂଗ ।

ଗୁରୁଚରଣ : ଆମ ଦୁହିଁଙ୍କର ପ୍ରାୟ ସବୁ ଜିନିଷ ଏକାଭଳି ।

ସନ୍ଧ୍ୟା : ଆପଣମାନେ ଏତେ ଘନିଷ୍ଠ କେମିତି ହେଲେ ?

ଗୁରୁଚରଣ : ମନର ମିଳନ । ଯେତେବେଳେ ମନ ମିଳିଲା, ସବୁ ଠିକ୍ ଠାକ୍···

ସନ୍ଧ୍ୟା : ବିଲ୍‌କୁଲ ଠିକ୍ । କିନ୍ତୁ···(ନାଁ ଭୁଲିଯାଇଥିଲି )

ଗୁରୁଚରଣ : ଗୁରୁଚରଣ !

ସନ୍ଧ୍ୟା : ଥ୍ୟାଂକ୍ ୟୁ । ମୁଁ କହୁଥିଲି କ'ଣ କି, ମିସ୍ ଗୁରୁଚରଣ ! ମୁଁ ଏବଂ ସେଖୋଁ ଦିନେ ଏମିତି ଘନିଷ୍ଠ ଥିଲୁ । କିନ୍ତୁ ସେ (ଉଦାସ ସ୍ୱରରେ) ଦିନେ ଚୁପ୍‌ଚାପ୍ ବାହା ହୋଇ ପଡ଼ିଲା ।

ଗୁରୁଚରଣ : (ବ୍ୟଙ୍ଗାତ୍ମକ ହସ ସହ) ବିବାହ '

ସନ୍ଧ୍ୟା : ମୋର ଆଗରୁ ଅବିବାହିତ ରହିବାର ଇଚ୍ଛା ଥିଲା ।

ଗୁରୁଚରଣ : ତା'ପରେ ଆପଣଙ୍କୁ ମାୟା ଆସିକରି ଘେରିଗଲା ।

ସନ୍ଧ୍ୟା : ମାୟା ନୁହେଁ ମିସ୍ ଗୁରୁଚରଣ !

ଗୁରୁଚରଣ : ସମାଜ ଆଗରେ ସଚ୍ଚୋଟ ଦେଖାଇ ହେବାକୁ ଚାହାନ୍ତି ?

ସନ୍ଧ୍ୟା : ସେ କଥା ବି ନୁହେଁ ।

ଗୁରଚରଣ : ତେବେ ଆଉ କୋଉ କଥା ? ଆପଣ କାହିଁକି ସମୁଦ୍ର ପାରହୋଇ ବିବାହ କରିବାକୁ ଏଠିକି ଆସିଲେ ?

ସନ୍ଧ୍ୟା : ମିସ୍ ଗୁରଚରଣ ! ମୁଁ ଅନୁଭବ କଲି ଯେ, ମଣିଷ ମନରେ ବିବାହ କରିବାର ବିଗ୍ରହ ସେଇଭଳି ସୃଷ୍ଟିହୁଏ, ଯେଉଁଭଳି ଖାଇବା-ପିଇବା, ଶୋଇବା-ଉଠିବା, ଚଲା-ବୁଲା କରିବା, ହସିବା-ଗାଇବାର ବିଗ୍ରହ ମନକୁ ଆସେ ।

ଗୁରଚରଣ : (ବ୍ୟଙ୍ଗ କରି) ବିଗ୍ରହ !

ସନ୍ଧ୍ୟା : ଆପଣ ଟିକିଏ ଭାବି ଦେଖନ୍ତୁ । ଆପଣଙ୍କୁ···

ଗୁରଚରଣ : (କଥା କାଟି) ବିଗ୍ରହ କେବଳ ମାତ୍ର ଗୋଟାଏ ଭାବନା । କେହି କେହି ତାକୁ ଟାଣି-ଓଟାରି ମୋଟା ବଡ଼ ସୃଷ୍ଟି କରନ୍ତି, ଆଉ କେତେକ ତାକୁ ସଂକୁଚିତ କରି ଗୋଟାଏ ଶବ୍ଦରେ ପରିଣତ କରିଦିଅନ୍ତି । ମାତ୍ର ତାହା ଶୁଦ୍ଧ ନ ହୋଇଥିବା ହେତୁ ଲିଭେଇ ଦିଆଯାଏ ।

ସନ୍ଧ୍ୟା : ମୋର ଏବେବି ସେହି ବିଗ୍ରହ ଅଛି, ମିସ୍ ଗୁରଚରଣ !—ବିବାହର ଭାବନାକୁ ଲିଭାଇଲେ ତାହା ଲିଭେ ନାହିଁ । ହଁ, ଅବଶ୍ୟ ତାକୁ ଅବଦମିତ କରିଯାଇପାରେ । କିନ୍ତୁ ଏ କଥା ମଧ୍ୟ ସତ୍ୟ ଯେ, ତାହା ଯେତେବେଳେ ବହିଃପ୍ରକାଶିତ ହୁଏ, ସେତେବେଳେ ଅବସ୍ଥାଟା ଭୋକିଲା ବାଘ ଭଳି ହୋଇଯାଏ ।

ଗୁରଚରଣ : (ବ୍ୟଙ୍ଗାତ୍ମକ ହସ ହସି) ଭୋକିଲା ବାଘଭଳିଆ ?

ସନ୍ଧ୍ୟା : ଯେମିତିକି ଗୋଟାଏ ବାଘ ଜୁଆନ୍ ଥିବା ପର୍ଯ୍ୟନ୍ତ ସେ ସବୁକିଛି କରିବାକୁ ସକ୍ଷମ ହୋଇଥାଏ । ମାତ୍ର ଯେତେବେଳେ ତା'ର ନଖ ଭାଙ୍ଗିଯାଏ ଏବଂ ଦାନ୍ତ ଗଲାପଡ଼େ, ସେତେବେଳେ···

ଗୁରଚରଣ : (କଥା ମଝିରେ କହିଉଠିଲେ) ଆପଣ କିଛି ଖାଆନ୍ତୁ ନା !

ସନ୍ଧ୍ୟା : (ପ୍ଲେଟ୍ ଉଠାଇ) ଆପଣ ବି ନିଅନ୍ତୁ ।

ଗୁରଚରଣ : (ପ୍ଲେଟ୍ ଆଡ଼କୁ ହାତ ବଢ଼ାଇଲେ ।)

ସନ୍ଧ୍ୟା : ଜୀବନର ଲକ୍ଷ୍ୟ ହେଉଛି ସେ ସବୁ ସମୟରେ କାହାରି ନା କାହାରି ସାଙ୍ଗ ରହେ ।

ଗୁରଚରଣ : ରାଜନ୍ଧର ସବୁଠି ମୋ ସାଙ୍ଗରେ ଥାଏ ।

ସନ୍ଧ୍ୟା : ଆପଣ ତୁହେଁ ଭାରି ଭାଗ୍ୟବତୀ ।

ଗୁରଚରଣ : ଆପଣଙ୍କର ବାହାଘର କେବେ ହେଉଚି ?

ସନ୍ଧ୍ୟା : ବହୁତ ଜଲ୍ଦି ।

ଗୁରୁଚରଣ : କେଉଁଠି ?

ସନ୍ଧ୍ୟ : ଏ ଯାଏ କୋଉଠି ଦେଖିନି । ଆପଣ କହନ୍ତୁ ?

ଗୁରୁଚରଣ : ମୁଁ କହିବି ? (ବିବ୍ରତ ହୋଇ) ମୁଁ…ମୁଁ କ'ଣ କହିବି ? ମୁଁ ତ କୌଣସି ମ୍ୟାରେଜ୍ ବ୍ୟୁରୋ ନୁହେଁ ।

(ସନ୍ଧ୍ୟ ହସିପକାଇଲା । ଗୁରୁଚରଣ ମଧ୍ୟ ହସିଲା । ସେତିକିବେଳେ ରାଜାନ୍ଦର ଭିତରକୁ ଆସିଲା ।)

ସନ୍ଧ୍ୟ : ଆସନ୍ତୁ ମିସ୍ ରାଜ !

ଗୁରୁଚରଣ : ଓହ୍ଲେଇ ଦେଇ ଆସିଲୁ କି ବଉଳ ?

ରାଜାନ୍ଦର : (ଲଜ୍ଜିତ ହୋଇ) ଓହ୍ଲେଇ ଦେଇଥିଲି; କିନ୍ତୁ ପୁଣି ପିନ୍ଧିପକେଇଲି ।

(ସନ୍ଧ୍ୟ ଓ ଗୁରୁଚରଣ ହସିଉଠିଲେ ।)

ସନ୍ଧ୍ୟ : (ଘଡ଼ି ଦେଖି) ଓଃ, ମୋର ଗାଡ଼ି ଷ୍ଟେସନକୁ ଆସିଯିବଣି । ହଉ, ମତେ ଏବେ ଯିବାକୁ ଦିଅନ୍ତୁ । (ଆଟାଚି ଧରି ଉଠି ଠିଆହେଲା ।) ମୁଁ ଆପଣଙ୍କୁ ମୋ ଠିକଣା ଦେଇ ଯାଉଚି । (ପକେଟରୁ କାର୍ଡ କାଢ଼ି ଦୁହିଁଙ୍କ ଆଡ଼କୁ ବଢ଼ାଇଲେ ।) ଏଇଥିପାଇଁ ଯେ ଆପଣ ଦୁହେଁ ମତେ ବହୁତ ଭଲ ଲାଗିଛନ୍ତି । ଯଦି ଦୁହିଁଙ୍କ ଭିତରୁ କାହାର ମତେ ବିବାହ କରିବାର ଆଗ୍ରହ ହୁଏ, ତେବେ ମତେ ଏଇ ଠିକଣାରେ ଲେଖିବେ । ପନ୍ଦର ଦିନ ପର୍ଯ୍ୟନ୍ତ ମୁଁ ଆପଣ-ମାନଙ୍କ ପତ୍ରକୁ ଅପେକ୍ଷା କରିବି । ତା' ପରେ ନୁହେଁ । (କାର୍ଡ ଟେବୁଲ ଉପରେ ରଖି ଦେଲା ।) ବାଏ-ବାଏ !!

(ସନ୍ଧ୍ୟ ଦ୍ରୁତପଦରେ ବାହାରକୁ ଚାଲିଗଲା । ଦୁଇଟିଯାକ ଝିଅ ତା'ର ଯିବାବାଟକୁ ଚାହିଁ ରହିଥିଲେ । ତା'ପରେ ଦୁହେଁ କିଛି ସମୟ ପାଇଁ ଗୁମ୍‌ସୁମ୍ ହୋଇ ବସିରହିଲେ ।)

ଗୁରୁଚରଣ : ବଉଳ !

ରାଜାନ୍ଦର : ଉଁ ।

ଗୁରୁଚରଣ : ଆମ ଉପରେ ଉଦାସତା ଲଦି ହୋଇ ଯାଇଚି ।

ରାଜାନ୍ଦର : ହଁ ।

ଗୁରୁଚରଣ : ତାଙ୍କର ତ ଯିବାର ଥିଲା ।

ରାଜାନ୍ଦର : ସେ ତାଙ୍କ ଆଡ୍ରେସ ଛାଡ଼ିଯାଇଛନ୍ତି ।

ଗୁରୁଚରଣ : ସେଥିରୁ ଆମେ ପାଇବା କ'ଣ ?

ରାଜାନ୍ଦର : ଚାଲ, ତାକୁ ଝରକାବାଟେ ବାହାରକୁ ପକେଇଦେବା ।

ଗୁରୁଚରଣ : ଏଠି ଏବେ ପଡ଼ିରହିଲେ ଆମର କ'ଣ ହେଇଯିବ କି ?

ରାଜାନ୍ଦର : ସତ କଥା । କାଲି ସକାଳୁ ତ ଆମର ଚାଲିଯିବାର ଅଛି ।

ଗୁରଚରଣ : କୌଣସି ନୂଆ ଭଡ଼ାଟିଆ ଆସିବ । ସେ ଏହାକୁ ବାଜେ ମନେ କରି ଟିଣ ବାହାରକୁ ଫିଙ୍ଗିଦେବ ।

ସୁନ୍ଦରର : ତା'ଠୁଁ ବରଂ ଭଲହେବ, ଆମେ ଏହାକୁ ସାଙ୍ଗରେ ନେଇଯିବା ।

ଗୁରଚରଣ : ହଁ, ନେଇଯିବା ଚାଲ । ଆମର କ'ଣ ବା ବଗିଡ଼ିବ ।

(ଦୁହେଁ ଠିକଣା ନେବାପାଇଁ ହାତ ବଢ଼ାଇଲାବେଳେ ପରଦା ପତନ ।)



# ଲେଖକ ପରିଚୟ

## 1. ଈଶ୍ୱର ଚନ୍ଦର ନନ୍ଦା (1892-1966)

ଜନ୍ମ : 30 ସେପ୍ଟେମ୍ବର 1891 । ଗାଁ—ଗାଣ୍ଡିୟାଁ ପୁଞ୍ଜୟାଡ଼, ଜିଲା —ଗୁରୁଦାସପୁର ।

ଶିକ୍ଷା : ଇଂରାଜୀ ସାହିତ୍ୟରେ ଏମ୍. ଏ. ; ଦୟାଲ ସିଂହ କଲେଜ, ଲାହୋର । ଏଫ୍. ସି. କଲେଜ, ଲାହୋର, ତଥା ଅକ୍ସଫୋର୍ଡ ୟୁନିଭରସିଟି ।

ବ୍ୟବସାୟ : ଅଧ୍ୟାପନା, ପଂଜାବ ଶିକ୍ଷା ବିଭାଗ । 1947ରେ ଅବସରପ୍ରାପ୍ତ ।

ଦେହାନ୍ତ : 2 ସେପ୍ଟେମ୍ବର 1966 ମସିହା ଗ୍ରୀଡ, ଦିଲ୍ଲୀରେ ।

ପ୍ରଥମ ପଂଜାବୀ ଏକାଙ୍କିକା ନାଟକ 'ଦୁଲ୍ହନ' 1913ରେ ଲେଖିଥିଲେ ଏବଂ ଦୟାଲସିଂହ କଲେଜ, ଲାହୋରରେ ମଞ୍ଚସ୍ଥ କରାଇଥିଲେ ।

ନାଟକ : ସୁଭଦ୍ରା (1920), ଶାମୁ ଶାହ (1928)—ସେକ୍ସପିଅରଙ୍କ ନାଟକ 'ମରଚେଣ୍ଟ ଅଫ୍ ଭେନିସ୍' ଉପରେ ଆଧାରିତ), ବରଧର (1928), ସୋଶଲ ସର୍କଲ (1954) ।

ଏକାଙ୍କିକା ସଂଗ୍ରହ : ଝଲକାରେ, ଲିଶକାରେ, ଚମକାରେ ।

ଈଶ୍ୱର ଚନ୍ଦର ନନ୍ଦା ଆଧୁନିକ ପଂଜାବୀ ନାଟକ ଓ ରଙ୍ଗମଞ୍ଚ ପରମ୍ପରାର ପ୍ରବର୍ତ୍ତକ ଅଟନ୍ତି । ନାଟ୍ୟ ଲେଖନ, ଅଭିନୟ ଏବଂ ନାଟ୍ୟ ନିର୍ଦ୍ଦେଶନା—ଏହି ତିନୋଟି କ୍ଷେତ୍ରରେ ନନ୍ଦାଙ୍କର ସହଯୋଗ ଐତିହାସିକ ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ ଏବଂ କଳା ଦୃଷ୍ଟିରୁ ମଧ୍ୟ । ଯଦିଓ ନିଜ ସମକାଳୀନଙ୍କ ପ୍ରଭାବରେ ନନ୍ଦା ନିଜ ନାଟ୍ୟ-ରଚନାର ଆଦର୍ଶ ରୂପେ ସମାଜ-ସଂସ୍କାରକୁ ଗ୍ରହଣ କରିଛନ୍ତି, ତଥାପି ସେସବୁରେ ନୈତିକ ଶିକ୍ଷାକୁ ସାମିଲ୍ କରି ଦେଇଛନ୍ତି । ମାତ୍ର ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ହୋଇ ସର୍ବଦା ସହଜ ତଥା ସୁସ୍ଥ ମନୋରଞ୍ଜନ ହିଁ ରହିଛି ।

ଈଶ୍ୱର ଚନ୍ଦର ନନ୍ଦାଙ୍କର ପାତ୍ରମାନେ ସମକାଳୀନ ପଂଜାବୀ ସମାଜର ପୂର୍ଣ୍ଣ ପ୍ରତିନିଧିତ୍ୱ କରୁଛନ୍ତି । ଏଥିରେ ସୁଧଖୋର ସାହୁ, ଅନ୍ଧବିଶ୍ୱାସ ଓ ବ୍ୟର୍ଥ ପରମ୍ପରାର ଶିକାର ହୋଇଥିବା ଋଣକର୍ତ୍ତା, ପାଷଣ୍ଡ ସାଧୁ, ସରଳ ଲୋକଙ୍କ ଘର ଲୁଟୁଥିବା ଗୃହସ୍ଥ, ବାଲ୍ୟ-ବିବାହର ବଳି-ବେଦୀରେ ଶିକାର ହେଉଥିବା ଅବଳା କନ୍ୟା, ବାଲ୍ୟ ବିଧବା, ବିଦେଶୀ ଇଂରେଜୀପଣିଆର ଉପାସକ ନବ୍ୟ ନବାବ, ସ୍ୱାର୍ଥପର ସାମାଜିକ ବହୁରୂପୀ, ଲାଂଚଖୋର ଅଫିସର ଓ ଲୋଭୀ

ବେପାର୍ଶ୍ୱ ଆଦି ଅଛନ୍ତି । ଏ ସମସ୍ତଙ୍କର ଚରିତ୍ରଚିତ୍ରଣ ନନ୍ଦା ମହାଶୟ ପୂର୍ଣ୍ଣ ଦକ୍ଷତା ଓ କୌଶଳସହକାରେ କରିଛନ୍ତି ।

ନନ୍ଦା ବ୍ୟକ୍ତିଗତ ଚରିତ୍ରକୁ ନୁହେଁ, ପ୍ରତିନିଧି ଚରିତ୍ରକୁ ରେଖାଙ୍କିତ କରିଛନ୍ତି । ନନ୍ଦାଙ୍କର ଚରିତ୍ରମାନେ ସାମାଜିକ ସ୍ତରରେ ନିନ୍ଦନୀୟ ହୁଅନ୍ତୁ, ଅଥବା ନୈତିକ ରୂପରେ ପତିତ ହୁଅନ୍ତୁ, ତାଙ୍କର ପ୍ରେରଣା-ସ୍ରୋତ ସର୍ବଦା ପରିହାସ ବା ବ୍ୟଙ୍ଗପୂର୍ଣ୍ଣ—ଦ୍ୱେଷମୂଳକ ନୁହେଁ । ତଦ୍ଦ୍ୱାରା ଖଳନାୟକର କେବଳ ମାତ୍ର ମାନବିକତା ପରିସ୍ଫୁଟ ହୁଏ ନାହିଁ, ଓଲଟି ପାଠକ ବା ଦର୍ଶକଙ୍କର ସହାନୁଭୂତି ମଧ୍ୟ ସାମୂହିକ ଭାବରେ ଅର୍ଜନ କରେ । ଈଶ୍ୱର ଚନ୍ଦର ନନ୍ଦାଙ୍କର ନାଟକସ୍ଥ ଚରିତ୍ରମାନଙ୍କଠାରେ ଯଥାର୍ଥତାର ତୀକ୍ଷ୍ଣ ପ୍ରକଟ ହୁଏ ଏବଂ ତାଙ୍କର ନାଟକୀୟ ସଂଳାପ ମଧ୍ୟ ବାସ୍ତବିକତାରେ ଓତପ୍ରୋତ ହୋଇ ଉଚ୍ଚକୋଟିର, ତୀକ୍ଷ୍ଣ, ମୁଖରିତ ଓ ମନୋରଂଜକ ହୁଏ ।

## 2. ସନ୍ତସିଂହ ସେଖୋଁ । (1908)

ଜନ୍ମ : 30 ମେ 1908, ଚକ୍କ ନମ୍ବର 70, ଜିଲା—ଲାୟଲପୁର (ଏବେ ପଶ୍ଚିମ ପଂଜାବ ପାକିସ୍ତାନରେ) ପୈତୃକ ଗାଁ—ଦାଖା, ଜିଲା—ଲୁଧିଆନା ।

ଶିକ୍ଷା : ଏମ୍. ଏ. (ଇଂରେଜୀ ସାହିତ୍ୟ ଓ ଅର୍ଥଶାସ୍ତ୍ର), ଏଫ. ସି. କଲେଜ, ଲାହୋର ।

ବ୍ୟବସାୟ : କଲେଜରେ ପ୍ରାଧ୍ୟାପକ । 1931-1951 ଯାଏ ଖାଲସା କଲେଜ, ଅମୃତସରରେ ଅର୍ଥଶାସ୍ତ୍ର, ଇଂରେଜୀ ଏବଂ ପଂଜାବୀର ଅଧ୍ୟାପକ ଥିଲେ । 1951-61 ଯାଏ ଗୁରୁସର ଖାଲସା କଲେଜ, ସୁଧାରରେ ଇଂରାଜୀ ବିଭାଗ ଅଧ୍ୟକ୍ଷ । 1961-71 ମାତା ଗୁଜରୀ କଲେଜ, ଫତେହଗଡ଼ ସାହିବ ଖାଲସା କଲେଜ, ପାତିଆଲା ଏବଂ ଗୁରୁ ଗୋବିନ୍ଦ ସିଂହ ରିପବ୍ଲିକ୍ କଲେଜ, ଜଣ୍ଡିଆଲାରେ ପ୍ରିନ୍ସିପାଲ ରହିଲେ । ମଝି-ମଝିରେ ଇଂରେଜୀ ରିପୋର୍ଟର ମଧ୍ୟ ସାଜିଥିଲେ । ପ୍ରାୟ ପାଞ୍ଚ ବର୍ଷ ଖଣ୍ଡେ ପବ୍ଲିକ୍ ଓ୍ୱାର୍କସ୍ ଡିପାର୍ଟମେଣ୍ଟରେ ଠିକାଦାରୀ ତଥା ରାଜନୀତି କାମ କରିଥିଲେ । ଅଗଷ୍ଟ 1971ରେ ଜଣ୍ଡିଆଲାରେ ଅବସରପ୍ରାପ୍ତ ହୋଇ ନିଜ ଗାଆଁ ଦାଖାରେ ଲେଖା-ପଢ଼ା ସାଙ୍ଗରେ କ୍ଷେତର ଦେଖା-ଶୁଣା କରୁଛନ୍ତି ।

ପ୍ରକାଶିତ ନାଟକ : କଳାକାର (1946), ନାରକୀ (1952), ମୋଇୟାଂ ସାର ନ କାଇ, ବାରିସ, ବେଡ଼ା ବନ୍ଧୁ ନ ମୋଇୟେଁ, ଭୁମିଦାନ (1954), ସିୟ୍ୟାଲିଂ ଦୀ ନଦୀ, ଦମୟନ୍ତୀ (1964), ମିତ୍ତର ପ୍ୟାରା (1970)—(ଏହି ପୁସ୍ତକ ପାଇଁ ସେଖୋଁଙ୍କୁ 1972ର ସାହିତ୍ୟ ଏକାଡେମୀ ପୁରସ୍କାର ମିଳିଲା ।)

ଏକାଙ୍କିକା ସଂଗ୍ରହ : ଛେ ଘର (1940), ତପିୟା କେଁୟା ଖପିୟା, ନାଟ୍ ସୁନେହେ ।

ଅନୁବାଦ : ମେକ୍‌ବେଥ (ସେକ୍ସପିଅର) ।

ସନ୍ତସିଂହ ସେଖୋଁ ବହୁମୁଖୀ ପ୍ରତିଭାରେ ଧନୀ । ଏକ ସିଦ୍ଧାନ୍ତବାଦୀ ସମୀକ୍ଷକ ରୂପେ ତାଙ୍କୁ

ସୁଖ୍ୟାତି ମିଳିଛି । କିନ୍ତୁ ପଂଜାବୀ ଗଦ୍ୟ (ଲଘୁ କାହାଣୀ ତଥା ଉପନ୍ୟାସ), ନାଟକ ତଥା କାବ୍ୟ କ୍ଷେତ୍ରରେ ମଧ୍ୟ ତାଙ୍କ ଭୂମିକା ପ୍ରଶଂସନୀୟ । ବିଶେଷ କରି ଗଦ୍ୟ ତଥା ନାଟକ କ୍ଷେତ୍ରରେ ଏସବୁ କାର୍ଯ୍ୟ ବ୍ୟତୀତ ସେ ଭାଷା-ବିଜ୍ଞାନ, ପଂଜାବୀ ସାହିତ୍ୟର ଇତିହାସ ଲେଖନ, ପଂଜାବୀ କୋଷ କାର୍ଯ୍ୟ, ସାଂସ୍କୃତିକ ଐତିହାସିକତା ତଥା ଇଂରେଜୀର ରଚନାତ୍ମକ ଏବଂ ଜ୍ଞାନ ସାହିତ୍ୟକୁ ପଂଜାବୀରେ ଅନୁବାଦ କରିଛନ୍ତି । ଅର୍ଥାତ୍ ପଂଜାବୀ ଭାଷା ସହିତ ସମ୍ବନ୍ଧ ରଖିଥିବା ପ୍ରତ୍ୟେକ ବୌଦ୍ଧିକ ପକ୍ଷରେ ସେଖୋଁ ଆହୁତି ଦାନ କରିଛନ୍ତି । ତେଣୁ ପଂଜାବୀ ସାହିତ୍ୟରେ ତାଙ୍କ ସ୍ଥାନ ସର୍ବୋତ୍ତମ ।

ପଂଜାବୀ ନାଟକ କ୍ଷେତ୍ରରେ ସନ୍ତସିଂହ ସେଖୋଁଙ୍କର ଦୁଇଟି ବିଶେଷତ୍ୱ ଉଲ୍ଲେଖନୀୟ । ତାଙ୍କର ନାଟ୍ୟରଚନାର କେନ୍ଦ୍ର ଘଟଣାର ସୂତ୍ରାତ୍ର ଘାତ-ପ୍ରତିଘାତ ପାଖରେ ନଥାଏ, କି ସୁସଂଯୋଜିତ ସଂଳାପ ପାଖରେ ଥାଏ ନାହିଁ । ଏକ ଅନନ୍ତ ବୌଦ୍ଧିକ ଜିଜ୍ଞାସା ତାଙ୍କ ନାଟକକୁ ଗତିମାନ୍ କରିଥାଏ । ମନୁଷ୍ୟର ବାସ୍ତବ ବାହ୍ୟ ସଂଘର୍ଷ ଏବଂ ତହିଁରୁ ଉତ୍ପନ୍ନ ଭାବର ତୀବ୍ରତାକୁ ତାଙ୍କ ନାଟକରେ ଗୌଣ ସ୍ଥାନ ମିଳିଥାଏ ।

ତୀକ୍ଷ୍ଣ ଓ ଯୁକ୍ତିସଂପନ୍ନ ଜ୍ଞାନର ଆଲୋକରେ ନାଟକୀୟ ଚରିତ୍ର ଏବଂ ନିଜକୁ ବୁଝିବାର ପ୍ରକ୍ରିୟା ମାଧ୍ୟମରେ ମାନବୀୟ ସ୍ଥିତିର ଅର୍ଥ ସନ୍ଧାନ କରିବାହିଁ ତାଙ୍କ ରଚନାର ମୂଳ ଉଦ୍ଦେଶ୍ୟ । ଜଣେ ସମୀକ୍ଷକ ଭାବରେ ସେବାର ସିଦ୍ଧାନ୍ତଯୁକ୍ତ ନିଷ୍ଠାର ଆଧାରହିଁ ତାଙ୍କର ସମାଜବାଦୀ ଦର୍ଶନ । ମାତ୍ର ତାଙ୍କର ସ୍ୱୀୟ ରଚନାତ୍ମକ ସାହିତ୍ୟର ବୌଦ୍ଧିକ ପରିଧି ଅପେକ୍ଷାକୃତ ଅଧିକ ବିସ୍ତୃତ । ସମାଜବାଦୀ ଦର୍ଶନ ସହିତ ସେଖୋଁ ନିଜ ସୃଷ୍ଟିରେ ପଶ୍ଚିମୀ ସମାଜଶାସ୍ତ୍ର ଓ ମନୋ-ବିଜ୍ଞାନକୁ ବୌଦ୍ଧିକ ପୃଷ୍ଠଭୂମି ଭାବେ ପ୍ରୟୋଗ କରିଛନ୍ତି ।

ସନ୍ତସିଂହ ସେଖୋଁଙ୍କ ନାଟ୍ୟକଳାର ଦ୍ୱିତୀୟ ବିଶେଷତ୍ୱ ହେଉଛି, ଭାରତୀୟ ପୌରାଣିକ କଥା ଓ ମଧ୍ୟ-କାଳୀନ ଭାରତ(ବିଶେଷ କରି ପଂଜାବ)ର ରାଜନୈତିକ ଏବଂ ସାଂସ୍କୃତିକ ଇତିହାସର ପୃଷ୍ଠଭୂମିରେ ନିଜ ରଚନାକୁ ସମୃଦ୍ଧ କରିବା । ପୌରାଣିକ କଥା ('କଳାକାର'ରେ ଇନ୍ଦ୍ର ଓ ଅହଲ୍ୟାଙ୍କ କଥା ଏବଂ 'ଦମୟନ୍ତୀ'ରେ ନଳ-ଦମୟନ୍ତୀଙ୍କ କଥା), ମଧ୍ୟ-କାଳୀନ ଇତିହାସ ('ବେଡ଼ା ବନ୍ଧ ନ ମୋଇୟୋଁ, ମୋଇୟା ସାର ନ କାଈ') ଏବଂ ସାଂସ୍କୃତିକ ଇତିହାସ ('ସିୟୋଲ ଦୀ ନିଦ୍ଧୀ' ଏବଂ 'ବାରିସ')ର ପ୍ରସଙ୍ଗରେ ସମକାଳୀନ ଦୃଷ୍ଟିରେ ମନନ ଏବଂ ପୁନର୍ବିବେଚନ ତାଙ୍କ ନାଟ୍ୟ-ସାଧନାକୁ ନୂତନ ଅଧ୍ୟାୟ ଦିଏ । ଏଥିରୁ ଏହା ହିଁ ଲାଭ କରାଯାଏ ଯେ, ସମକାଳୀନ ବ୍ୟକ୍ତିର କୌଣସି ସ୍ଥିତିକୁ ଐତିହାସିକ ଘଟଣାରେ ସ୍ଥାନାନ୍ତରିତ କଲେ କେବଳ ଏକ ମୁକ୍ତ ମଞ୍ଚାୟନର ସୁଯୋଗ ମିଳେନାହିଁ; ବରଂ ବୌଦ୍ଧିକ ବ୍ୟାପକତାର ଚିତ୍ର ମଧ୍ୟ ଅଙ୍କନ କରାଯାଇପାରେ ।

ସନ୍ତସିଂହ ସେଖୋଁ ନିଜ ନାଟ୍ୟକୃତିରେ ରଙ୍ଗମଞ୍ଚ ଦିଗ ପ୍ରତି ବିଶେଷ ଦୃଷ୍ଟି ଦେଇ ନାହାନ୍ତି—ଏ କଥା ସ୍ପଷ୍ଟ ଭାବେ କୁହାଯାଇପାରେ । ତାଙ୍କର ଲେଖାଗୁଡ଼ିକୁ ଗମ୍ଭୀର

ମନୋନିବେଶ କରି ପଢ଼ିଲେ ତହିଁରୁ ଏକପ୍ରକାର ବୌଦ୍ଧିକ ସନ୍ତୋଷ ଲାଭ କରି ହୁଏ ।

## 3. ଗୁରଦୟାଲ ସିଂହ ଖୋସଲ (1912—)

ଜନ୍ମ : 15 ଜାନୁୟାରୀ, 1912, ଲାହୋର ।

ଶିକ୍ଷା : ଏମ୍. ଏ. ( ଇଂରାଜୀ ସାହିତ୍ୟ), ଗଭର୍ଣ୍ଣମେଣ୍ଟ କଲେଜ, ଲାହୋର ।

ବ୍ୟବସାୟ : ଖାଲସା କଲେଜ । ଅମୃତସରରେ ଗୋଟିଏ ବର୍ଷ ଅଧ୍ୟାପକ ହେବାପରେ ଦକ୍ଷିଣ-ପଶ୍ଚିମ ରେଲୱେରେ ଅଧିକାରୀ ନିଯୁକ୍ତି ପାଇଲେ । 1970ରେ ପଶ୍ଚିମ ରେଲୱେର ଜେନେରାଲ ମ୍ୟାନେଜର ପଦରେ ଥିବା ସମୟରେ ଅବସର ଗ୍ରହଣ—ପରେ ପାଟିଆଲାସ୍ଥ ପଂଜାବୀ ବିଶ୍ୱବିଦ୍ୟାଳୟରେ ଭାଷଣ ଓ ନାଟକ ବିଭାଗରେ ଦୁଇ ବର୍ଷ ପରାମର୍ଶଦାତା ରହିଲେ । ସମ୍ପ୍ରତି ଦିଲ୍ଲୀସ୍ଥ ପଂଜାବୀ ଥିଏଟର ସଂସ୍ଥାର ସଂଯୋଜକ ଅଛନ୍ତି ।

ପ୍ରକାଶିତ ରଚନା :

ନାଟକ : ବୂହେ ବୈଠୀ ଧୀଂ (1950), ମର ମିଟଣ ବାଲେ, ପରଲୋ ତୋ ପହିଲେଁ ।

ଏକାଙ୍କିକା ସଂଗ୍ରହ : ବେଘରେ ସଭାରହିବାଁ ପଢ ।

ଅନୁବାଦ : ଗୃନ୍ଧୀ ଦା ଡବ୍‌ବା (ଗଲସୱର୍ଦ୍ଦି କୃତ ସିଲଭର ବାକ୍‌ସ)

ଗୁରଦୟାଲ ସିଂହ ଖୋସଲଙ୍କ ମୁଖ୍ୟ ରୋଚକ ସାମଗ୍ରୀ ରହିଛି ନାଗରିକ ଜୀବନର ସମସ୍ୟା ଓ ବିଷମତାରେ ଏବଂ ତାଙ୍କ କଳାର ମୂଳ ତୀକ୍ଷ୍ଣ ବ୍ୟଙ୍ଗରେ ଉଜ୍ଜୀବିତ ହୋଇଥାଏ । ମଧ୍ୟମ-ବର୍ଗୀୟ ଗୃହସ୍ଥ ଜୀବନ ଓ ଆଚାର-ବ୍ୟବହାରର ସଂକୀର୍ଣ୍ଣତା ଏବଂ ତା' ପଛରେ ଲୁଚିରହିଥିବା ବିଶେଷତ୍ୱକୁ ଖୋସଲ ପୂର୍ଣ୍ଣ ଦକ୍ଷତାରେ ଉପସ୍ଥାପିତ କରିଛନ୍ତି । ସାମାଜିକ ଏବଂ ରାଜନୀତିକ ସଂସ୍ଥାମାନଙ୍କୁ ହାସ୍ୟ-ବ୍ୟଙ୍ଗଦ୍ୱାରା ନଗ୍ନ କରିବାରେ ଖୋସଲ ସିଦ୍ଧହସ୍ତ । ସେଇଥିପାଇଁ ତାଙ୍କ ନାଟକରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ରସଧାରା ପ୍ରବାହିତ ହେଉଥାଏ ।

ନାଟକ ରଚନା ବ୍ୟତୀତ ରଙ୍ଗମଞ୍ଚ କ୍ଷେତ୍ରରେ ଯୋଗଦାନ କରିବା ଖୋସଲଙ୍କର ଅନ୍ୟତମ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ । ଅବିଭାଜିତ ପଞ୍ଜାବସ୍ଥ ଲାହୋରରେ ଲିଟ୍‌ଲ ଥିଏଟର୍ ଗ୍ରୁପ୍‌ର ସକ୍ରିୟ ସଦସ୍ୟ-ମାନଙ୍କ ମଧ୍ୟରେ ଖୋସଲ ପ୍ରମୁଖ ଥିଲେ । ସ୍ୱାଧୀନତାର ପରେ ସେ ଦିଲ୍ଲୀରେ ପଞ୍ଜାବୀ ଥିଏଟର ଗ୍ରୁପ୍ ସ୍ଥାପନା କରିଥିଲେ, ଯଦ୍ଦ୍ୱାରା ରାଜଧାନୀର ରଙ୍ଗମଞ୍ଚଜଗତରେ ପଞ୍ଜାବୀ ନାଟକକୁ ସମ୍ମାନ ପ୍ରାପ୍ତ ହେଲା । ଚାକିରି ତାଡ଼ନାରେ ଖୋସଲଙ୍କୁ ଯେଉଁ ଯେଉଁ ଜାଗାକୁ ବଦଳି ହୋଇଛି, ପଞ୍ଜାବୀ ଥିଏଟରକୁ ସେ ନିଜ ସାଙ୍ଗରେ ସେଠିକି ନେଇଯାଇଛନ୍ତି । ସମ୍ପ୍ରତି ପଞ୍ଜାବୀ ଥିଏଟର ଗ୍ରୁପ୍ ଦିଲ୍ଲୀକୁ ପୁଣି ଆସିଯିବାପରେ ସେ ନାଟକର ଗତିବିଧି କ୍ଷେତ୍ରରେ ସମନ୍ୱୟ ଆଣିବାପାଇଁ ପ୍ରଯତ୍ନଶୀଳ ।

## 4. ହରଚରଣ ସିଂହ (1914—)

ଜନ୍ମ : 10 ଡିସେମ୍ବର 1914 । ଚକ୍‌କ ନଂ 576, ଜିଲ୍ଲା—ଶେଖୁପୁରା (ପଶ୍ଚିମ ପଞ୍ଜାବ, ପାକିସ୍ତାନ), ପୈତୃକ ଗାଆଁ —ଚକଦାନା (ଜଲନ୍ଧର) ।

ଶିକ୍ଷା : ଏମ୍. ଏ. (ଇତିହାସ, ପଞ୍ଜାବୀ), ଖାଲସା କଲେଜ, ଅମୃତସର, ଏଫ୍. ସି. କଲେଜ ଓ ଦୟାଲ ସିଂହ କଲେଜ, ଲାହୋର, ପି. ଏଚ୍. ଡି. ଦିଲ୍ଲୀ ବିଶ୍ୱବିଦ୍ୟାଳୟ ।

ବ୍ୟବସାୟ : ଅଧ୍ୟାପକ, ସଂପ୍ରତି ପଞ୍ଜାବୀ ବିଶ୍ୱବିଦ୍ୟାଳୟ, ପାତିଆଲାରେ ପଞ୍ଜାବୀ ବିଭାଗର ଅଧ୍ୟକ୍ଷ ।

ପ୍ରକାଶିତ ରଚନା :

ନାଟକ : କମଲାକୁମାରୀ (1937), ରାଜା ପୋରସ (1939), ଦୂର ଦୁରାଡ଼େ ଶହରୋଁ, ଖେଡ଼ଣ ଦେ ଦିନ ଚାର, ଅନଜୋଡ଼, ଦୋଷ, ପୁନିୟା ଦା ଚନ୍ନ, ରତ୍ତୀ ସାଲୁ ଗୋରୀ ଶକ୍ତି, କଞ୍ଚନ ମାଟି, ଇତିହାସ ଜବାବ ମଙ୍ଗଦା ହୈ, କଲ ଅଜ୍ଜ ଅତେ ଭଲକ ।

ଏକାଙ୍କିକା-ସଂଗ୍ରହ : ଜୀବନ ଲୀଲା (1940), ସପ୍ତଋଷି, ପଂଜ ଗୀଟଣ୍ଡା, ପଂଜ ପରଧାନ, ମୁଢ଼କେ ଦୀ ଖୁଶବୋ, ଚମକୌର ଦୀ ଗଢ଼ୀ ।

ହରଚରଣ ସିଂହ ବାସ୍ତବରେ ଈଶ୍ୱର ଚନ୍ଦର ନନ୍ଦାଙ୍କର ପଞ୍ଜାବୀ ନାଟକ ଓ ମଞ୍ଚ-ପରଂପରାର ମୁଖ୍ୟ ଉତ୍ତରାଧିକାରୀ । ତାଙ୍କର ନାଟ୍ୟକୃତିମାନଙ୍କରେ ପ୍ରାରମ୍ଭିକ ପଞ୍ଜାବୀ ନାଟକର ସମାଜବାଦୀ ଓ ମାନବୋତ୍‌ଥାନଭରା ପ୍ରବୃତ୍ତିଦ୍ୱୟ ଉପସ୍ଥିତ ଅଛି । ସେ ଗତ କେତେ ବର୍ଷ ହେଲା ଐତିହାସିକ ବିଷୟ ପ୍ରତି ଆଗ୍ରହ ପ୍ରକାଶ କରିଛନ୍ତି । ସମାଜ-ସଂସ୍କାର ବା ବ୍ୟକ୍ତି କଲ୍ୟାଣ ସମ୍ବନ୍ଧିତ ହରଚରଣ ସିଂହଙ୍କର ପ୍ରାରମ୍ଭିକ କୃତିମାନ ବହୁତ ସରଳ ଓ ସ୍ପଷ୍ଟ । ତାଙ୍କ ନାଟକରେ ଗ୍ରାମ୍ୟ ସଂସ୍କୃତି ପ୍ରତି ଗହନ ମୋହଭାବ ନିହିତ ଅଛି ଏବଂ ନାଗରିକ ଜୀବନ ପ୍ରତି ସନ୍ଦେହ ପ୍ରକାଶ ପାଇଛି ।

ପଞ୍ଜାବୀ ନାଟକରେ ହରଚରଣ ସିଂହଙ୍କର ଭୂମିକା ସର୍ବାଧିକ ସ୍ମରଣୀୟ । ଟେକ୍‌ନିକ୍ ଦୃଷ୍ଟିରୁ ସେ ଗମ୍ଭୀର ଟ୍ରାଜେଡିମାନ ରଚନା କରିଛନ୍ତି । ମାତ୍ର ତାଙ୍କର ଦୃଷ୍ଟି ସାମାଜିକ ବାତାବରଣ ଓ ସମସ୍ୟାମାନ ପ୍ରତି ମଧ୍ୟ କେନ୍ଦ୍ରୀଭୂତ ହୋଇଛି; କେବଳ ଟ୍ରାଜେଡି ଚରିତ୍ରକୁ ସ୍ପଷ୍ଟ କରିବା ଦିଗରେ ନୁହେଁ । ବୋଧହୁଏ ଏହି ସରଳତା ଓ ସାମାଜିକ ପୃଷ୍ଠଭୂମି ହେତୁ ତାଙ୍କର ରଚନାମାନ ଅତ୍ୟଧିକ ଲୋକପ୍ରିୟ ।

ହରଚରଣ ସିଂହ ଏକ ସଫଳ ନାଟ୍ୟକାର ହେବା ସହିତ ଜଣେ ଉତ୍ସାହୀ ନିର୍ଦ୍ଦେଶକ ଓ ପ୍ରଭାବୋତ୍ପାଦକ ଅଭିନେତା ଅଟନ୍ତି । ତାଙ୍କର ପ୍ରତ୍ୟେକ ନାଟକକୁ ମଞ୍ଚରେ ସଫଳତାପୂର୍ବକ ଉପସ୍ଥାପନା କରାଯାଇପାରିଛି । ତା'ଛଡ଼ା ମଞ୍ଚଠାରୁ ପୃଥକ୍ ନାଟକର ଅସ୍ତିତ୍ୱକୁ ହରଚରଣ ସିଂହ ସ୍ୱୀକାର ମଧ୍ୟ କରନ୍ତି ନାହିଁ । ଏହାହିଁ ତାଙ୍କ ନାଟ୍ୟକଳାର ଶକ୍ତି ଏବଂ ଏହାହିଁ ତାଙ୍କର ଦୁର୍ବଳତା ।

## 5. ବଳବନ୍ତ ଗାର୍ଗୀ (1916—)

ଜନ୍ମ : 4 ଡିସେମ୍ବର, ଗାଁ—ସେହଣା, ଜିଲା—ଭଟିଣ୍ଡା ।

ଶିକ୍ଷା : ଏମ୍. ଏ. (ରାଜ-ନୀତିବିଜ୍ଞାନ ଏବଂ ଇଂରାଜୀ ସାହିତ୍ୟ), ଏଫ୍. ସି. କଲେଜ, ଲାହୋର ।

ବ୍ୟବସାୟ : ସ୍ୱତନ୍ତ୍ର ଲେଖକ । ନାଟ୍ୟକାର, ନାଟ୍ୟ-ନିର୍ଦ୍ଦେଶକ ତଥା ପତ୍ରକାର । 1964-66ରେ ୟୁନିଭରସିଟି ଅଫ୍ ଓ୍ୱାସିଙ୍ଗଟନ୍, ସିୟାଟନ (ଆମେରିକା)ରେ ଭାରତୀୟ ନାଟକର ପ୍ରାଧ୍ୟାପକ, 1968ରେ ପଞ୍ଜାବ ବିଶ୍ୱବିଦ୍ୟାଳୟରେ ଭାରତୀୟ ଥିଏଟର ବିଭାଗର ଅଧ୍ୟକ୍ଷ ।

ପ୍ରକାଶିତ କୃତି :

ନାଟକ : ଲୋହାକୁଟ (1944), ବିସବେଦାର, କୈଲ ପଥର (1952), ନବାଂମୁଢ଼, ଧୂଣ୍ଣୀ, କଣକ ଦୀ ବଲ୍ଲୀ (1954), ସୋହଣୀ ମହିବାଲ (1958), ଧୂଣୀ ଦୀ ଅଗ୍ଗ (1962), ଗଗନ ମେଁ ଥାଲ (1969) ।

ଏକାଙ୍କିକା-ସଂଗ୍ରହ : କୁଆଁରୀ ଟୀସୀ (1945), ଦୋ ପାସେ (1946), ପତନା ଦୀ ବେଡ଼ି, ଦସବନ୍ଧ, ଦୁଦ୍ଧ ଦୀୟାଂ ଧାର୍ଯାଂ ।

ଆଲୋଚନା ଗ୍ରନ୍ଥ : ରଙ୍ଗମଞ୍ଚ (1961); ଲୋକ-ନାଟକ (1966) ।

ବଲବନ୍ତ ଗାର୍ଗୀ ପଞ୍ଜାବୀର ସର୍ବାଧିକ ପ୍ରତିଷ୍ଠିତ ନାଟକକାର । ସେ କାହାଣୀ, ସାହିତ୍ୟିକ ରେଖାଚିତ୍ର, ପତ୍ରକାରିତା, ନାଟ୍ୟସମୀକ୍ଷା ତଥା ଐତିହାସିକ ଲେଖନ କ୍ଷେତ୍ରରେ ମଧ୍ୟ ପୂର୍ଣ୍ଣ ମାତ୍ରାରେ ସଫଳତା ପ୍ରାପ୍ତ କରିଛନ୍ତି । ମାତ୍ର ପଞ୍ଜାବୀ ସାହିତ୍ୟ-ଜଗତରେ ତାଙ୍କର ମୁଖ୍ୟ ଭୂମିକା ନାଟକକାର ହିସାବରେ ମାନିନିଆଯାଉଛି । ନିଃସନ୍ଦେହରେ ସେ ପଞ୍ଜାବୀରେ ନାଟ୍ୟ-ରଚନାକୁ ଏକ ସ୍ୱାବଲମ୍ବୀ କଳାବିଧି ରୂପେ ପ୍ରମାଣିତ କରିଛନ୍ତି ଏବଂ ଯଥେଷ୍ଟ ସୁଖ୍ୟାତି ମଧ୍ୟ ଲାଭକରିଛନ୍ତି । ମାତ୍ର ବିସଙ୍ଗତି ଏପରି ଘଟିଲା ଯେ ତାଙ୍କୁ ତାଙ୍କର ଆଲୋଚନା ଗ୍ରନ୍ଥ 'ରଙ୍ଗମଞ୍ଚ' ପାଇଁ ସାହିତ୍ୟ ଏକାଡେମୀ ପୁରସ୍କାର ମିଳିଲା—କୌଣସି ନାଟକପାଇଁ ନୁହେଁ ।

ବଲବନ୍ତ ଗାର୍ଗୀ ଏପରି ଜଣେ ନାଟକକାର, ଯିଏ ନାଟ୍ୟ-ରଚନାରେ ଶିଳ୍ପକଳା ପ୍ରତି ଜୋର ଦେଇଛନ୍ତି । ଜଣେ ଜାଗରୂକ କଳାକାର ରୂପେ ସେ ନାଟକୀୟ ଗଠନର ସଂଘର୍ଷକୁ ଅଗ୍ରାଧିକାର ଦେଇଛନ୍ତି । ମାନବୀୟ ସ୍ଥିତିକୁ ଜାଗ୍ରତ କରିବାପାଇଁ ବଲବନ୍ତ ଗାର୍ଗୀ ଏହି ସଂଘର୍ଷର ମାଧ୍ୟମକୁ ପ୍ରୟୋଗ କରନ୍ତି । ତଦ୍ୱାରା ସେ ମାନବୀୟ ବ୍ୟକ୍ତିତ୍ୱକୁ ବିଭିନ୍ନ ସ୍ତରରୁ ଦେଖାଇଛନ୍ତି ଏବଂ ମାନବ ମନର ସନ୍ଦେହ ଦୂର କରିବାକୁ ପ୍ରୟାସ କରିପାରିଛନ୍ତି । ମାନବ ଓ ସମାଜର ସଂଘର୍ଷକୁ ସେ ନିଜ ବିଷୟ କରିଛନ୍ତି—ଏପରିକି ପିଢ଼ିର ସଂଘର୍ଷକୁ ମଧ୍ୟ । ମାତ୍ର ଏମିତି ଗୋଟାଏ ବିଷୟ ଅଛି, ଯାହା ସର୍ବଦା ରଙ୍ଗ ବଦଳାଇ ତାଙ୍କ ନାଟ୍ୟକଳାର କେନ୍ଦ୍ର ହୋଇ ରହିଛି । ତାହା ହେଉଛି ନର-ନାରୀଙ୍କର ପରସ୍ପର ପ୍ରତି ଆକର୍ଷଣ ଏବଂ ସଂଘର୍ଷ । ଏହି ଅନନ୍ତ ରହସ୍ୟମୟ ସମ୍ବନ୍ଧକୁ ବଲବନ୍ତ ଗାର୍ଗୀ ମୁଖ୍ୟ ରୂପରେ ଟ୍ରାଜେଡି ଦୃଷ୍ଟିରେ ଦେଖିଛନ୍ତି ଏବଂ ପ୍ରସ୍ତୁତ କରିଛନ୍ତି । ଏହାଛଡ଼ା ବଲବନ୍ତ ଗାର୍ଗୀ ବସ୍ତୁବାଦୀ ଶୈଳୀରେ ମଧ୍ୟ ନାଟକ ଲେଖିଛନ୍ତି । ରଙ୍ଗମଞ୍ଚରେ ବି ତାହା ଉପସ୍ଥାପିତ ହୋଇଛି । କିନ୍ତୁ ତାଙ୍କ ନାଟ୍ୟକଳାର ବିକାଶରେ ଏଭଳି ରଚନାମାନଙ୍କର ମହତ୍ତ୍ୱ ଅଧିକ ନୁହେଁ ।

ବଲବନ୍ତ ଗାର୍ଗୀଙ୍କ ନାଟ୍ୟକଳାର ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ ଅଂଗ ହେଲା ନାଟକୀୟ ସଂଳାପ ।

ସଂଳାପ ଦ୍ୱାରା ସେ ଏକ ନାଟକୀୟ ଚରିତ୍ରକୁ ଗୋଟିକରୁ ଅନ୍ୟଟିକୁ ଭିନ୍ନ ବ୍ୟକ୍ତିତ୍ୱ ପ୍ରଦାନ କରିବାରେ ସିଦ୍ଧହସ୍ତ । ସଂଳାପର ଭାଷାରେ ସେ ପ୍ରତୀକାତ୍ମକ ଶୈଳୀକୁ ବଡ଼ ଚମତ୍କାର ପ୍ରଣାଳୀରେ ପ୍ରୟୋଗ କରିଛନ୍ତି । ଫଳସ୍ୱରୂପ ସାଧାରଣ କଥାବାର୍ତ୍ତା ମଧ୍ୟ ସାରଗର୍ଭିତ ହୋଇଯାଏ । ନିଜ ପ୍ରାରମ୍ଭିକ ରଚନାମାନଙ୍କରେ ଗାର୍ଗୀଙ୍କ ନାଟକର ଲକ୍ଷ୍ୟ ରୋମାଣ୍ଟିକ ଥିଲା । ସେଥିରେ ଟ୍ରାଜେଡିର ଗୁଣ ମଧ୍ୟ ସ୍ପଷ୍ଟ ଥିଲା । ନିଜର ନୂତନ ରଚନାରେ ବି ସେ ଟ୍ରାଜେଡି ଭାବକୁ ଅଦ୍ଭୁତ ଓ ଗମ୍ଭୀର ଦୃଷ୍ଟିକୋଣରୁ ଉପସ୍ଥାପନ କରିବାର ସଫଳତା ପ୍ରାପ୍ତ ହୋଇଛନ୍ତି ।

**୧. କର୍ତ୍ତାର ସିଂହ ଦୁଗ୍‌ଗଲ** (1917—)

**ଜନ୍ମ** : 1 ମାର୍ଚ୍ଚ **1917**, ଗାଁ—ଧ୍ୟାଲ, ଜିଲ୍ଲା – ରାଓଲପିଣ୍ଡି ।

ଶିକ୍ଷା : ଏମ୍. ଏ. (ଇଂରେଜୀ ସାହିତ୍ୟ) ଏଫ୍. ସି. କଲେଜ, ଲାହୋର ।

ବ୍ୟବସାୟ : 1940 ରୁ 1966 ପର୍ଯ୍ୟନ୍ତ ଅଲ୍ ଇଣ୍ଡିଆ ରେଡିଓର ନିର୍ଦ୍ଦେଶକ ବିଭାଗରେ, **1966**ରୁ ନ୍ୟାସନାଲ ବୁକ୍‌ଟ୍ରଷ୍ଟ ଅଫ୍ ଇଣ୍ଡିଆ, ନୂଆଦିଲ୍ଲୀରେ ସଚିବ ଏବଂ 1971ରେ ନିର୍ଦ୍ଦେଶକ ।

ପ୍ରକାଶିତ ରଚନା :

ନାଟକ : ପୁରାନିୟାଂ ବୋତଲାଂ, ମିଠି ପାଣୀ, କୋହିକନ ।

ଏକାଙ୍କିକା-ସଂଗ୍ରହ : ଇକ ସିଫର ସିଫର (**1941**), ତିନ୍ନ ନାଟକ (1951), ସତ ନାଟକ ।

ଶ୍ରେଷ୍ଠ ପଞ୍ଜାବୀ ଲେଖକମାନଙ୍କ ମଧ୍ୟରେ କର୍ତ୍ତାର ସିଂହ ଦୁଗ୍‌ଗଲ ଅନ୍ୟତମ । ସେ କେବଳ ପଞ୍ଜାବୀ ଭାଷାକୁ ପଶ୍ଚିମୀ ସାହିତ୍ୟର ପ୍ରବୃତ୍ତିମାନଙ୍କ ସହିତ ପରିଚିତ କରାଇନାହାନ୍ତି, ବରଂ ପାଶ୍ଚାତ୍ୟ ସାହିତ୍ୟର ଶିଳ୍ପବିଧିକୁ ପଞ୍ଜାବୀ ସାହିତ୍ୟର ପ୍ରକୃତିର ଅନୁକୂଳ କରି ଏମିତି ଢାଳି-ଦେଇଛନ୍ତି ଯେ ପଞ୍ଜାବୀ ସାହିତ୍ୟ-ପରମ୍ପରାର ତାହା ସ୍ୱାଭାବିକ ଅଙ୍ଗ ହୋଇଯାଇଛି । ଆଧୁନିକ ପଞ୍ଜାବୀ କାହାଣୀର ଜନ୍ମ ହିଁ କର୍ତ୍ତାର ସିଂହ ଦୁଗ୍‌ଗଲଙ୍କ ସୃଷ୍ଟି ସାମ୍ରାଜ୍ୟରେ ହୋଇଛି ।

ପଞ୍ଜାବୀ ଉପନ୍ୟାସକୁ ନାନକ ସିଂହଙ୍କ 'ରସିକ କିନ୍ତୁ ସଂସ୍କାରବାଦୀ କଥା ପ୍ରଣାଳୀ'ରୁ ଅଲଗା କରି ମାନବୀୟ ଚରିତ୍ରର ପରିଚିତ ମାଧ୍ୟମ କରିବାରେ ଦୁଗ୍‌ଗଲଙ୍କ ଭୂମିକା ଉଲ୍ଲେଖନୀୟ । ତାଙ୍କ ଉପନ୍ୟାସ 'ହାଲ ମୁରିଦାଂ ଦାଂରେ' ନିଜର କଳାତ୍ମକତା, ବିସ୍ତୃତ କଥାବସ୍ତୁ ଓ ଶୈଳୀ ବିବିଧତା ବ୍ୟତୀତ ଏକ ବିଶେଷ ରୋଚକ କୃତି ସିଦ୍ଧ ହୋଇଛି । ଏହି କୃତି ଦ୍ୱାରା ପଞ୍ଜାବୀ ଉପନ୍ୟାସ କଳା ଉଚ୍ଚତମ ଶିଖରକୁ ସ୍ପର୍ଶ କରିଛି ଏବଂ ଏହାକୁ ଏକ ଅମର କୃତି ରୂପେ ପ୍ରମାଣିତ କରିଛି । ଦୁଗ୍‌ଗଲଙ୍କୁ ତାଙ୍କର କଥା ସଂଗ୍ରହ 'ଇକ ଛିଟ ଚୂନଣୀ ଦୋ'ପାଇଁ ସାହିତ୍ୟ-ଏକାଡେମୀ ପୁରସ୍କାର ମିଳିଛି ।

ନାଟକ କ୍ଷେତ୍ରରେ କର୍ତ୍ତାର ସିଂହ ଦୁଗ୍‌ଗଲଙ୍କର ବିଶେଷତ୍ୱ ରେଡିଓ ରୂପକରୁ ଜଣାପଡ଼େ । ସଂଳାପକୁ ସୁସଂଗଠିତ, ଭାବପୂର୍ଣ୍ଣ ଓ ଚିତ୍ରାତ୍ମକ କରି ରଙ୍ଗମଞ୍ଚର ଅଭାବକୁ ସେ ନିଜ ନାଟକରେ ପୂର୍ଣ୍ଣ କରିଛନ୍ତି ଏବଂ ଏଭଳି ସେଗୁଡ଼ିକୁ ଗୃହୁସ ଗୁଣରେ ଅଳଂକୃତ କରିବାରେ

ଡୁଗ୍‌ଗଲ ଅଦ୍ୱିତୀୟ । ନିଜର ରୂପାତ୍ମକ ଅଭିବ୍ୟକ୍ତି ହେତୁ ଡୁଗ୍‌ଗଲ ନିଜ ସହଜ ଅଭିବ୍ୟକ୍ତି ଓ ସୂକ୍ଷ୍ମ ଦୃଷ୍ଟି କାରଣରୁ ଯଥାର୍ଥରେ ବିଚ୍ଛିନ୍ନ ଚରିତ୍ରମାନଙ୍କୁ ଆନ୍ତରିକ ସଂଳାପ ମାଧ୍ୟମରେ ଜାଗ୍ରତ କରିଛନ୍ତି । ସେ ନିଜେ କହନ୍ତି—ତାଙ୍କର ପାତ୍ରମାନେ କେବଳମାତ୍ର ଆତ୍ମଚିନ୍ତନ ଦ୍ୱାରା ଗ୍ରସିତ ହୋଇ ଆମ ସାମ୍ନାକୁ ଆସନ୍ତି ନାହିଁ; ବରଂ ବିଭିନ୍ନ ସ୍ତରରେ ପୃଥକ୍-ପୃଥକ୍ ମୁଦ୍ରା ଦ୍ୱାରା ନିଜ ଅନୁଭୂତିକୁ ପ୍ରଖର ଓ ପାରଦର୍ଶୀ କରିଛନ୍ତି ।

## 7. ଅମରୀକ୍ ସିଂହ (1920—)

ଜନ୍ମ : 20 ସେପ୍‌ଟେମ୍ବର, 1920 । ଏବଟାବାଦ (ଉତ୍ତର-ପଶ୍ଚିମ ସୀମାନ୍ତ ଅଞ୍ଚଳ), ପାକିସ୍ତାନ ।

ଶିକ୍ଷା : ପିଏଚ. ଡି. (ଇଂରାଜୀ ସାହିତ୍ୟ), ଲଣ୍ଡନ ବିଶ୍ୱବିଦ୍ୟାଳୟ, ଏମ୍. ଏ. (ଇଂରାଜୀ ସାହିତ୍ୟ), ଗଭର୍ଣ୍ଣମେଣ୍ଟ କଲେଜ, ଲାହୋର ।

ବ୍ୟବସାୟ : 1963 ପର୍ଯ୍ୟନ୍ତ ଅମୃତସର, ସିମଲା ଏବଂ ଦିଲ୍ଲୀର କଲେଜରେ ଅଧ୍ୟାପକ, 1963-65ରେ ଇଂରାଜୀ ସାହିତ୍ୟ ବିଭାଗ, ପଂଜାବୀ ବିଶ୍ୱବିଦ୍ୟାଳୟ, ପାତିଆଲାରେ ପ୍ରଫେସର ଓ ବିଭାଗାଧ୍ୟକ୍ଷ, 1965ରେ ଇଣ୍ଟର ୟୁନିଭରସିଟି ବୋର୍ଡ ଅଫ୍ ଇଣ୍ଡିଆ, ନୂଆ ଦିଲ୍ଲୀରେ ସଚିବ ।

ରଚନାବଳୀ :

ନାଟକ : ପରଛାଇୟାଂ ଦୀ ପକଡ, ରାହାଂ ଦେ ନଖେଡ଼ େଡ, କମ୍ପ ଦା ଧଡ଼ମ୍ପ ।

ଏକାଂକିକା-ସଂଗ୍ରହ : ଜୀବନ ଝଲକାଂ, ଆସାଂ ଦେ ଅମ୍ବାର ।

ଅନୁବାଦ : ନାଗିୟାଂ ଦୀ ସର୍ଗ (ଲେଡି ଗ୍ରେଗରୀ ରଚିତ ଓ୍ୱାର୍କ ହାଉସ୍ ୱାର୍ଡ), ପ୍ରେତ (ଇବ୍‌ସନ୍‌ଙ୍କ ରଚିତ ଘୋଷ୍ଟ) ।

ଅମରୀକ୍ ସିଂହ ଷଷ୍ଠ ଦଶକର ଆରମ୍ଭ ବର୍ଷମାନଙ୍କରେ ନିଜର ସିମଲା ପ୍ରବାସ ଯୋଗୁଁ ନାଟକୀୟ ସରଗରମରେ ବହୁତ ନିବିଡ଼ ଭାବରେ ଭାଗ ନେଲେ । ଲିଟ୍‌ଲ ଥିଏଟର ଗ୍ରୁପ୍ ଏବଂ ଏକ ସ୍ଥାନୀୟ କଲେଜର ଡ୍ରାମାଟିକ ସୋସାଇଟି ଦ୍ୱାରା ସେ ପାଶ୍ଚାତ୍ୟର ପ୍ରସିଦ୍ଧ ଏକାଂକିକା-ଗୁଡ଼ିକୁ ପଂଜାବୀରେ ରୂପାନ୍ତରିତ କରି ରଙ୍ଗମଞ୍ଚରେ ଉପସ୍ଥାପିତ କଲେ । ସେଗୁଡ଼ିକର ସଫଳତା ତାଙ୍କୁ ନାଟକ ଲେଖିବାକୁ ପ୍ରେରଣା ଦେଲା । ପିଲାଦିନରୁ ତାଙ୍କର ନାଟକ ପ୍ରତି ଆଗ୍ରହ ଥିଲା । ଉଚ୍ଚତର ଶିକ୍ଷା ହିଁ ତାଙ୍କର ଏହି ରୁଚିକୁ ତୀବ୍ରତର କଲା ।

ଅମରୀକ ସିଂହ ନିଜ ରଚନାମାନଙ୍କରେ ବିଶିଷ୍ଟ ନାଟକୀୟ ସ୍ଥିତିମାନଙ୍କୁ ସାମିଲ କରନ୍ତି ନାହିଁ । ସେ ସାଧାରଣ ମଣିଷର ଦୈନିକ ଜୀବନର ରଙ୍ଗହୀନ ଓ ଘଟଣାବିହୀନ ଘଟଣାମାନଙ୍କୁ ଏବଂ ପ୍ରସଙ୍ଗମାନଙ୍କୁ ଉପସ୍ଥାପିତ କରି ମାନବୀୟ ଅର୍ଥର ସନ୍ଧାନ ନିଅନ୍ତି । ତୀବ୍ର ସଂଘର୍ଷ, ଶାଣିତ ଶବ୍ଦ ଓ ବଳିଷ୍ଠ ସଂଳାପ ତାଙ୍କ ନାଟକରେ ଦେଖିବାକୁ ମିଳେନାହିଁ । ପରସ୍ପର ସମ୍ବନ୍ଧହୀନ, ସରଳ ଓ ଫିକା ଘଟଣାମାନଙ୍କୁ ସେ ସର୍ବଦା ନିୟୋଜିତ କରି ଚାଲନ୍ତି ଏବଂ ଶେଷରେ

ଆକସ୍ମିକ ବିସ୍ଫୋଟ ଘଟେ, ଯାହା ଏକ ଅପରୂପ ଅବସ୍ଥା ଧାରଣ କରି କାଳ ଓ ସାର୍ଥକତାର ଧାରଣା ଉଦ୍‌ଘାଟନ କରେ ।

8. **ଗୁରଚରଣ ସିଂହ ଜସୂଜା** (1925—)

ଜନ୍ମ : 1 ମେ 1925, ଅମୃତସର ।

ଶିକ୍ଷା : ଏମ୍. ଏ., ଖାଲସା କଲେଜ, ଅମୃତସର ।

କାର୍ଯ୍ୟ : ନିଜର ବ୍ୟବସାୟ ।

ରଚନାବଳୀ :

ନାଟକ : ମକଡ଼ୀ ଦା ଜାଲ, କନ୍ଧା ଦେ ରେତ ଧାୟାଂ, ଅନ୍ଧକାର, ଚଡ଼ିୟା ସୋଧଣ ଧରତୁ ଲୋକାଇ ।

ଏକାଂକିକା-ସଂଗ୍ରହ : ଗୌମୁଖୀ ଶେରମୁଖୀ, ଘର ଦବାରି, ପଛତାବା ।

ଗୀତି ନାଟ୍ୟ : ବିସମାଦ ନାଦ ।

ଗୁରଚରଣ ସିଂହ ଜସୂଜା ପଂଜାବୀ ନାଟକକୁ ନଗରର ମଧ୍ୟବର୍ଗୀୟ ପରିବାରମାନଙ୍କ ଆର୍ଥିକ ସଙ୍କଟ, ମାନସିକ କୁଣ୍ଠା ତଥା ଭାବୁକ ସଂକୀର୍ଣ୍ଣତା ସହ ପରିଚିତ କରାଇଛନ୍ତି । ଏହା ବ୍ୟତୀତ ସେ ସଂସ୍କାରବାଦୀ ବା କ୍ରାନ୍ତିକାରୀ କୁହାଯାଇ ନ ପାରନ୍ତି । ତାଙ୍କ ନାଟକର ପାତ୍ର ଜଣେ ଅନ୍ୟଠାରୁ ପୃଥକ୍ ବ୍ୟକ୍ତିତ୍ୱ ଗ୍ରହଣ କରି ନ ଥାନ୍ତି; ବରଂ ଜଣେ ଅନ୍ୟଜଣକର ବିସ୍ତାର ବା ପୂରକ ହୋଇ ରୂପାୟିତ ହୋଇଥାଆନ୍ତି । ଏହାର କାରଣ ହେଉଛି ମଧ୍ୟବର୍ଗୀୟ ପରିବାରର ଏକରୂପତା ।

ଜସୂଜାଙ୍କ ନାଟ୍ୟଶୈଳୀ ବ୍ୟଙ୍ଗପୂର୍ଣ୍ଣ ଅଟେ । କମେଡି ଓ ଟ୍ରାଜେଡି ତାଙ୍କ କଳା-ଶୈଳୀର ଅଙ୍ଗ ନୁହେଁ ।

9. **କପୂର ସିଂହ ଘୂମଣ** (1927—)

ଜନ୍ମ : 2 ଫେବୃୟାରୀ, 1927 । ଗାଁ—ଦଲଚକେ, ଜିଲ୍ଲା—ସିଆଲ୍‌କୋଟ୍ । (ପଶ୍ଚିମ ପଂଜାବ, ପାକିସ୍ତାନ) ।

ଶିକ୍ଷା : ଏମ୍. ଏ. (ପଂଜାବୀ) ।

କାର୍ଯ୍ୟ : ସହାୟକ ନିର୍ଦ୍ଦେଶକ, ଭାଷା ବିଭାଗ ପଂଜାବ, ପାଟିଆଲା ।

ରଚନାବଳୀ :

ନାଟକ : ପୁତଲୀ ଘର, ଜୀଉଁ ଦୀ ଲାଶ, ଜିଂଦଗୀ ତୋଂ ଦୂର, ବୁଝାରତ୍, ଅତୀତ ଦେ ପରଛାଂବେଁ ।

ଏକାଂକିକା-ସଂଗ୍ରହ : ଜୈଲଦାର, ରଙ୍ଗ ଦେ ରଙ୍ଗ, କବ ତେ କବିତା, ଦୋ ଜୋଡ଼ାଂ ଦୋ ମୂରତାଂ, ଝୁଂଗଲ ମାୟା, କଚ ଦେ ଗଜରେ ।

ମୁଖରିତ ଆଦର୍ଶବାଦ, ଲୋକପ୍ରିୟ ବିଷୟବସ୍ତୁ ଓ ସରଳ ସ୍ପଷ୍ଟ ନାଟ୍ୟଶୈଳୀ କପୂର ସିଂହ

ଘୁମ୍ମଣଙ୍କ ରଚନାର ଅଙ୍ଗ, ଯାହାକୁ ସେ ଈଶ୍ୱର ଚନ୍ଦର ନନ୍ଦା ତଥା ହରିଚରଣ ସିଂହଙ୍କ ଲୋକପ୍ରିୟ ମଞ୍ଚ-ନାଟକର ପରମ୍ପରାରୁ ଗ୍ରହଣ କରି ନେଇ ଉପସ୍ଥାପନ କରିଛନ୍ତି । ସେଇଥିପାଇଁ ଆଜି ଘୁମ୍ମଣଙ୍କ ନାଟକ ସବୁସ୍ଥାନରେ, ବିଶେଷ କରି ସ୍କୁଲ-କଲେଜମାନଙ୍କରେ ସହର୍ଷ ଅଭିନୀତ ହେଉଛି । ଗତ ପନ୍ଦର ବର୍ଷରୁ ସେ ପାଠଆଲାରେ ସଫଳତା ସହ ନାଟକ ମଞ୍ଚସ୍ଥ କରି ଏକ ପରମ୍ପରା ବଞ୍ଚାଇ ରଖିଛନ୍ତି । ଏହି ପରମ୍ପରା ପଂଜାବୀ ପରମ୍ପରାର ଅନୁକୂଳ । ଭାରତ ଓ ପାଶ୍ଚାତ୍ୟ ଦେଶର କ୍ଲାସିକାଲ ନାଟ୍ୟକାର ତଥା ପଂଜାବୀ ନାଟ୍ୟକାରଙ୍କ କୃତମାନଙ୍କର ମଞ୍ଚ ଉପସ୍ଥାପନାଗତ ପ୍ରାପ୍ତ ଅନୁଭୂତରୁ ଯେଉଁ ବ୍ୟାପକ, ସାର୍ଥକ ନାଟ୍ୟଶୈଳୀର ପୃଷ୍ଠତା ଆଗକୁ ଆସେ, ତାହାକୁ ପଂଜାବୀ ନାଟକ ଓ ରଙ୍ଗମଞ୍ଚ କପୂର ସିଂହ ଘୁମ୍ମଣଙ୍କ ବ୍ୟତୀତ ଅନ୍ୟ କାହାଠାରୁ ପାଇପାରିନଥାନ୍ତା ।

ଯଦିଓ କପୂର ସିଂହ ଘୁମ୍ମଣ ଅନେକ ସାମାଜିକ ବିଷୟକୁ ନିଜ ନାଟକରେ ଲିପିବଦ୍ଧ କରିଛନ୍ତି, ତଥାପି ବ୍ୟକ୍ତିଗତ ଚେତନାହିଁ ସେଥିରୁ ମୁଖ୍ୟ ହୋଇ ଆଗକୁ ଆସିଛି । କପୂର ସିଂହ ଘୁମ୍ମଣ ମୂଳତଃ ଆଦର୍ଶବାଦୀ ଦୃଷ୍ଟିକୁ ଅଗ୍ରାଧିକାର ଦେଇଛନ୍ତି । କଳାକାରକୁ ବିଶିଷ୍ଟ ବ୍ୟକ୍ତି ରୂପରେ ଉପସ୍ଥାପିତ କରି ତାହାର ଆକାଂକ୍ଷାମାନଙ୍କୁ ଓ ମାନସିକ ତଥା ଭାବନାତ୍ମକ ଆବଶ୍ୟକତାମାନଙ୍କୁ ସାଧାରଣ ଲୋକର ଆକାଂକ୍ଷା ଓ ଇଚ୍ଛା ତୁଳନାରେ ଅଧିକ ମହତ୍ତ୍ୱ ଦେଇଛନ୍ତି ।

କପୂର ସିଂହ ଘୁମ୍ମଣଙ୍କର ବିଶେଷତ୍ୱ ତୀକ୍ଷ୍ଣ ତୀବ୍ର ସଂଳାପ ଓ ଘଟଣାର ସୁତୀବ୍ର କ୍ରମିକ ବିକାଶରେ ନିହିତ ।

## 10. ହରଶରନ ସିଂହ (1929—)

ଜନ୍ମ : 10 ଫେବୃୟାରୀ, 1929 । ଗୁଜ୍ଜରଖାନ, ଜିଲା— ରାଓଲପିଣ୍ଡି (ପଶ୍ଚିମ ପଂଜାବ, ପାକିସ୍ତାନ ।)

ଶିକ୍ଷା : ଏମ୍. ଏ. (ପଂଜାବୀ) ।

କାର୍ଯ୍ୟ : ସଂପାଦକ, (ପଂଜାବୀ), ଶିକ୍ଷା ବିଭାଗ, ପଂଜାବ, ଚଣ୍ଡୀଗଡ଼ ।

ରଚନାବଳୀ :

ନାଟକ : ଜିଗରା, ଉଦାସ ଲୋକ, ଫୁଲ କୁମଲ ଗୟା, ଅପରାଧୀ ।

ଏକାଂକିକା-ସଂଗ୍ରହ : ଜୋଡ ତୋଁ ଜୋଡ ଜଗେ, ତରେଡ଼୍, ମେରେ ଆଠ ଏକାଂକିକା ।

ଗୁରଚରଣ ସିଂହ ଜସୂଜାଙ୍କ ଭଳି ହରଶରନ ସିଂହ ମଧ୍ୟ ମଧ୍ୟବର୍ଗୀୟ ପରିବାରର ନାଟ୍ୟକାର ଅଟନ୍ତି । ସହରୀ ମଧ୍ୟବର୍ଗର ଆର୍ଥିକ ଅଭାବ ଓ ତହିଁରୁ ଉତ୍ପନ୍ନ ହେଉଥିବା ମାନସିକ ଓ ଭାବାତ୍ମକ ଦ୍ୱନ୍ଦ୍ୱକୁ ସେ ମଧ୍ୟ ଗୁରଚରଣ ସିଂହ ଜସୂଜାଙ୍କ ଭଳି ଚମତ୍କାର ରୂପେ ଉପସ୍ଥାପିତ କରିଛନ୍ତି । ମାତ୍ର ଲଘୁ ମାନବର ନୀରସ ଓ ଜଟିଳ ପରିସ୍ଥିତିକୁ ଅତିକ୍ରମ କରି

କୌଣସି ଅର୍ଥ ସନ୍ଧାନ କରିବା ହେଉଛି ତାଙ୍କର ବିଶେଷତ୍ୱ । ଏହି ଅର୍ଥର ସନ୍ଧାନ ଓ ଟ୍ରାଜେଡି ଚେତନା ମୂଳରେ ଆର୍ଥିକ ଅଭାବ ଲୁଚିରହିଛି । ହରିଶରଣ ସିଂହଙ୍କର ପାତ୍ର ନିଜ ପରମ୍ପରାଗତ ନିଷ୍ଠାରୁ ଦୂର ଜୀବନସାଗରରେ ନିରୁଦ୍ଦିଷ୍ଟ, ଲହରୀ ମଥାନର ଫେନରାଶି ଭଳି ଦୃଷ୍ଟିପଥାରୂଢ଼ ହୁଅନ୍ତି । ମାନବୀୟ ସଂବେଦନା, ପୀଡ଼ା ଓ ସହନଶୀଳତା ହିଁ ତାଙ୍କ ପାତ୍ରଙ୍କୁ ଜୀବନ୍ତ କରିଛି ।